*With best compliments from :-*



# Mr. B. KEJRIWAL

E-1 MAHARANI BAGH
NEW DELHI 110065

GRAM :
Destiny

PHONES
631752
634167

Digitized by srujanika@gmail.com

ବିଦ୍ରୋହୀ ହୁଅନ୍ତୁ, ସଂସ୍କାରକ ହୁଅନ୍ତୁ, ସ୍ୱପ୍ନଦ୍ରଷ୍ଟା ହୁଅନ୍ତୁ, ଦାର୍ଶନିକ ହୁଅନ୍ତୁ ବା ପ୍ରଗତିକ ହୁଅନ୍ତୁ, ସାହିତ୍ୟିକ ମନେ ରଖିବେ ଯେ, ସେ ଆନନ୍ଦ ଓ ସୌନ୍ଦର୍ଯ୍ୟର ମାନସ ପୁତ୍ର, ସୌନ୍ଦର୍ଯ୍ୟ ହିଁ ଆନନ୍ଦ ଦାନ କରେ । ଧନ, ପଦ; ସମ୍ମାନରୁ ଏକ ବିକୃତ ସୁଖ ମିଳିପାରେ କିନ୍ତୁ ଆନନ୍ଦ ମିଳେନା ନିଶ୍ଚୟ । ଆନନ୍ଦ ଆଧ୍ୟାତ୍ମିକ. ସୁଖ ବାହ୍ୟ ସୌନ୍ଦର୍ଯ୍ୟ ଅର୍ଥାତ୍ ଭିତର, ଭିତର, ଚିନ୍ତାର, ଅନୁଭୂତର ଆଦର୍ଶ । ସୌନ୍ଦର୍ଯ୍ୟ ଏହି ଆନନ୍ଦର ବାହକ । ଯାହା ସୁନ୍ଦର ତାହାହିଁ ସତ୍ୟ ଅର୍ଥାତ୍ ସ୍ଥାୟୀ ।

ମାୟାଧର ମାନସିଂହ

କାହ୍ନୁଚରଣ ପଣ୍ଡମା : ପ୍ରକାଶକ, ଏକାମ୍ର ଷ୍ଟୋର୍ସ ୨୦୯୭, ଗମେଶ୍ୱର ପାଟଣା,
ଭୁବନେଶ୍ୱର : ପ୍ରକାଶ କାଳ, ଡିସେମ୍ବର ୧୯୮୩ : ମୁଦ୍ରଣ, ରଜ୍ ପ୍ରିଣ୍ଟର୍ସ ଓ
ପବ୍ଲିଶର୍ସ, ଗମେଶ୍ୱର ପାଟଣା, ଭୁବନେଶ୍ୱର, ନଉ ଅର୍ଟ ପ୍ରେସ୍, ବାପୁଜୀନଗର,
ଭୁବନେଶ୍ୱର : ମୂଲ୍ୟ, ପନ୍ଦର ଟଙ୍କା ମାତ୍ର

Digitized by srujanika@gmail.com

# ସ୍ୱାଗତିକା

ଏଇ ସାରସ୍ୱତ ସନ୍ଧ୍ୟା
ଏଇ ସାରସ୍ୱତ ସନ୍ଧ୍ୟା···ଏଇ ସାରସ୍ୱତ ସନ୍ଧ୍ୟା
ବନ୍ଦେ ଜନନୀ ମୂର୍ତ୍ତି ଉତ୍କଳ-
ଭାରତୀ ଚିରବନ୍ଦ୍ୟା ॥ ୦ ॥
ବୁଧ-କଳହଂସ-କେଳିସର-ସନ୍ତରଣପଟୁ କୂଳକୁଞ୍ଜ··· କୁଞ୍ଜ ହେ
ଶୁଭ ଦରଶନ ଆଶେ ସମାଗତ ଅଗଣିତ ଗୁଣମୁଗ୍ଧ····ମୁଗ୍ଧ ହେ
କାଣ୍ଡସ୍ୱ ଗରବ
ମାନ ଗହ୍ୱରବ-
ବରଷନେ ତବ ଅବଦାନ ପାଇଁ ଏ ଜାତି ମସୃଣ ଲୁବ୍ଧ···ଲୁବ୍ଧ ହେ ।

ଅଭିନନ୍ଦିତ ଅଭିବନ୍ଦିତ ଶ୍ରେଷ୍ଠ ଅତିଥି ହେ
ଶ୍ରେଷ୍ଠ ତୁମର ସୃଷ୍ଟି ପାଇଁ କି ସ୍ୱାଗତଗୀତ ହେ
କୋଟି କଣ୍ଠରୁ ଉଠେ
କଳକଲ୍ଲୋଳିନୀ ଛୁଟେ
ମାଗେ ଶୁଭାଶିଷ ଉତ୍ତର ସ୍ୱରୂପ
କୃତ-ଅଞ୍ଜଳି ପୁଟେ ।

ଗରବେ-ଫୁଲାଇ ଛାତି
ବଧାଇ ଜଣାଏ ଜାତି
ଶାଶ୍ୱତ ତବ ସୃଷ୍ଟିବିଭବ ଏଇ ଉତ୍କଳ ଭୂମେ
ଦୀର୍ଘାୟୁ ହୁଅ କଥାର ଶିଳ୍ପୀ
କାହ୍ନୁଚରଣ ତୁମେ···
କାହ୍ନୁଚରଣ ତୁମେ···
କାହ୍ନୁଚରଣ ତୁମେ···
ତୁମେ····
ତୁମେ···
ତୁ·· ମେ ।



ନରହରି ଉପାଧ୍ୟାୟ



Digitized by srujanika@gmail.com

# କାହ୍ନୁଚରଣଙ୍କ ବଂଶଲତା

ଜନ୍ମସ୍ଥାନ—ନାଗବାଲ, କଟକ ଜିଲ୍ଲା

ସାବର୍ଣ୍ଣି ଗୋତ୍ର




Digitized by srujanika@gmail.com

# କାହ୍ନୁଚରଣଙ୍କ ପୁସ୍ତକାବଳୀ

| ପୁସ୍ତକର ନାମ | ରଚନା କାଳ | ପ୍ରଥମ ପ୍ରକାଶ |
|---|---|---|
| ଉତ୍ସର୍ଗେ ବ୍ୟସନ | ୧୯୨୩-୨୪ | ପାଣ୍ଡୁଲିପି ହଜିଲା |
| ଭଆସ୍ତ | ୧୯୨୪-୨୭ | ୧୯୬୩ |
| ବାଲିରଜା | ୧୯୨୭-୨୯ | ୧୯୩୧-୩୨ |
| ଅରୁଣା | ୧୯୨୮-୨୯ | ପାଣ୍ଡୁଲିପି ହଜିଲା |
| ପଳାତକ | ୧୯୨୯-୩୦ | ୧୯୩୦ |
| ନଷ୍ଟଦ୍ଧି | ୧୯୩୦-୩୧ | ୧୯୩୨ |
| ମାନସୀ (କାବ୍ୟ) | ୧୯୩୧ | ୧୯୩୨ |
| ସ୍ୱପ୍ନ ନା ସତ୍ୟ | ୧୯୩୨ | ୧୯୩୩ |
| ଦୁନିଆର ଦାଉ | ୧୯୩୨-୩୩ | ୧୯୩୪ |
| ହା-ଅନ୍ନ | ୧୯୩୩-୩୪ | ୧୯୩୫ |
| ଓଲଟପାଲଟ | ୧୯୩୪ | ୧୯୩୭ |
| ପରକ୍ଷସ୍ଥା | ୧୯୩୫ | ୧୯୩୮ |
| ପରଚସ୍ତ | ୧୯୩୬ | ପାଣ୍ଡୁଲିପି ହଜିଲା |
| ହଉଣ୍ଡ୍ରୀ | ୧୯୩୮ | ୧୯୩୯ |
| ଅଦେଖା ହାତ | ୧୯୩୯-୪୦ | ୧୯୪୩ |
| ପ୍ରତୀକ୍ଷା | ୧୯୪୧ | ୧୯୪୩ |
| ଭଲ ପାଇବାର ଶେଷ କଥା | ୧୯୪୨ | ୧୯୪୪ |
| ତୁଣ୍ଡବାଇଦ | ୧୯୪୨-୪୩ | ୧୯୪୪ |
| ଏପାରି ସେପାରି | ୧୯୪୪ | ୧୯୪୬ |
| ଶାସ୍ତି | ୧୯୪୫ | ୧୯୪୬ |
| ବନ ଗହନର ତଳେ | ୧୯୪୫ | ୧୯୪୬ |
| ଅନ୍ତରସ୍ଥ | ୧୯୪୬ | ୧୯୪୭ |
| ଅଭିନେତ୍ରୀ | ୧୯୪୬ | ୧୯୪୭ |
| ଭୁଲ ଭୁଲନା | ୧୯୪୭ | ୧୯[illegible]୪ |
| ଝଞ୍ଜା | ୧୯୪୮-୪୯ | ୧୯୫୦ |
| ମିଳନର ଛନ୍ଦ | ୧୯୪୯ | ୧୯୫୧ |
| ଶର୍ବଶ୍ରୀ | ୧୯୫୦-୫୧ | ୧୯୫୨ |

Digitized by srujanika@gmail.com

| ପୁସ୍ତକର ନାମ | ରଚନା କାଳ | ପ୍ରଥମ ପ୍ରକାଶ |
| --- | --- | --- |
| ପଗ୍ଣ | ୧୯୫୨-୫୩ | ୧୯୫୪ |
| କା (୧୯୫୯ରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ) | ୧୯୫୩-୫୪ | ୧୯୫୭ |
| ବଜ୍ରବାହୁ | ୧୯୫୫-୫୬ | ୧୯୫୯ |
| ଢେଉ ଢେଉକା | ୧୯୬୦-୬୧ | ୧୯୬୨ |
| ବଉବଗୁଲି | ୧୯୬୨-୬୩ | ୧୯୬୪ |
| ଇଟଦ୍ବ | ୧୯୬୩-୬୪ | ୧୯୬୭ |
| ଡମପାଖରେ | ୧୯୬୪-୬୬ | ୧୯୬୭ |
| ମୁଁ ମନ୍ଦ ଜାଣେ | ୧୯୬୭ | ୧୯୬୮ |
| ସ୍ବପ୍ନା | ୧୯୬୭-୬୮ | ୧୯୬୮ |
| ଛୁଟିଲେ ଘଣ୍ଟ | ୧୯୬୮ | ୧୯୬୮ |
| ତରଙ୍ଗର ତଳେ | ୧୯୬୮ | ୧୯୬୯ |
| ମନ ଜାଣେ ପାପ | ୧୯୬୮-୬୯ | ୧୯୬୯ |
| ମନମନ୍ଥନ | ୧୯୬୯ | ୧୯୭୦ |
| ଅତି ଗୋପନୀୟ | ୧୯୬୯-୭୦ | ୧୯୭୦ |
| ଅଙ୍ଗନା | ୧୯୭୦ | ୧୯୭୧ |
| ମମତାର ମାୟା | ୧୯୭୧ | ୧୯୭୧ |
| କହ୍ବାକୁ ଲଜ | ୧୯୭୦-୭୧ | ୧୯୭୩ |
| ନବିଁଣଙ୍କ | ୧୯୭୧-୭୨ | ୧୯୭୩ |
| ଅଜ ନୁହେଁ ଆଉ ଦନେ | ୧୯୭୨-୭୩ | ୧୯୭୩ |
| ଷଣ ଷଣକେ ଆନ | ୧୯୭୪-୭୫ | ୧୯୭୫ |
| ମାୟାବର୍ତ୍ତି | ୧୯୭୬-୭୭ | ୧୯୭୮ |
| ସତ୍ୟବତ୍ତ | ୧୯୭୮-୭୯ | ୧୯୮୦ |
| କ୍ଷଣିକା | ୧୯୪୬ | ୧୯୮୦ |
| ଅପା | ୧୯୪୬ | ୧୯୮୦ |
| ନାମଟି ତା'ର ତମା | ୧୯୫୦ | ୧୯୮୦ |
| ତାରକା | ୧୯୮୦ | ୧୯୮୧ |
| ତାପସୀ | ୧୯୮୧ | ୧୯୮୨ |
| ଲକ୍ଷ ଲଖନ | ୧୯୮୨ | ଛପା ହେଉଛି |
| ମେଳଣି ମାଗୁଣୀ | ୧୯୮୩ | ୧୯୮୩ |

Digitized by srujanika@gmail.com

# କାହ୍ନୁ ଚରଣଙ୍କ ଜୀବନ ଦର୍ଶନ ଗୋଟିଏ ପତ୍ରସ୍ଥ

ଜୟପୁର
୨୧-୧୦-୧୯୫୯
ଢ଼ଆମ୍ମ

ଧୂଳିଭାଇ,

ଥରକୁ ଥର ପାଞ୍ଚଥର ବୋହୂର କୋଳକୁ ଆସି ଉଚାଣି ବେଳ ନ ଗଡ଼ୁଣୁ ତମେ ବାହୁଡ଼ି ଯାଉଥିଲ । ୧୯୦୪ ସାଲରେ ଯେତେବେଳେ ଛଅଥର ପାଇଁ ଷଠୀ ବହୁରେଇଁ ତମକୁ ଏ ଦୁନିଆକୁ ପଠାଇଲେ, ବୋଉ ଗୋଟିଏ ଉପାୟ ଫାନ୍ଦ ତୁମକୁ ଅଟକାଇ ରଖିଲା । ଫୁଲନାଡ଼ କଣ ଟେକ ଦେଲା ଚମାରୁଣୀ ବୁଢ଼ୀ ହାତକୁ, ମୋଟେ କଡ଼ାଏ କଉଡ଼ି ନେଇ । ଡ଼ର ଡ଼ର ତମର ନାଆଁ ଦେଲା ଧୂଳିଆ, ଅଖୋଜା ଅଯୋଗ୍ୟ, ବାଟର ଧୂଳି । ଧୂଳି ଯେମିତ ସବୁଦିନେ କଅଁଳା ପିଲା, ପୁଣି ସବୁଠୁ ବଡ଼ ପୋଖତ ବୁଢ଼ା, ତମେ ବି ସେମିତ ପିଲା ଓ ବୁଢ଼ାର ମିଶା ମିଶି ।

ଆସିଲ ତ ମାଟି ଗୋଡ଼ର ଗଞ୍ଜକୁ, ଯେଉଁଠି ମହାନଦୀ ସଙ୍ଗେ ତେଲନଦୀ ମିଶିଛି, ବରଷ ଦୁଇଟି ନ ପୂରୁଣୁ ମୋତେ ପୁଣି ଡ଼ାକି ଆଣିଲ ଦେଶେଟି କଥା କହି, ପ୍ରଲୋଭନ ଦେଖାଇ, ମନ ଭୁଲାଇ-ଏ ଦୁନିଆଁ ବଡ଼ ଭଲ, ସବୁ ସୁଖ, ସବୁ ଆନନ୍ଦ ଏଠି ଠୁଳ ହୋଇଛି, କିଛି ଅଭାବ ନାହିଁ ।

ଅଭାବ ଅସୁବିଧା ଭିତରେ ଘାଣ୍ଟି ଚକଟି ହୋଇ ମୁଣ୍ଡର ବାଳ ପାଚିଲା, ଦାନ୍ତ ହେଲା ହଲର ହଲର, ଆଖିରେ ମାଡ଼ି ଆସିଲା ପରଳ । କାହିଁ ସୁଖ, କାହିଁ ଆନନ୍ଦ ? କେତେ ଭବିଷ୍ୟତ ଅତୀତରେ ଛପିଯାଇଛି ମୁଣ୍ଡ ଲୁଆଁଇ । ରକତ ପାଣି ଫଟାଇ ଦିନଗତ ଅବସ୍ଥା ସଙ୍ଗେ ଯୁଝି ଆସିଁ । ଅଭାବ କ'ଣ ମେଣ୍ଟିଲା, ସୁଖ ଆନନ୍ଦ ମିଳିଲା ? ପାଖ ଘାଖରେ ଦିଓଟି ବନ୍ଧୁ ଦୃରେଇ ଆସିଲେ, ନିଜଗଢ଼ା ବନ୍ଧନରେ ଆପେ ଆପେ ବାନ୍ଧି ହେଲେ ସୁଖ ଆନନ୍ଦର ମୋହରେ ।

ସୁଖ ଆନନ୍ଦ କ'ଣ ଅଛି ଏ ଦୁନିଆଁରେ, ଯେଉଁଠିକି ମତେ ଡ଼ାକି ଆଣିଥିଲ, ଯେଉଁଠି ପ୍ରତି ମୁହୂର୍ତ୍ତରେ ପ୍ରତି ମଣିଷର ଅନ୍ତରେ ବାହାରେ ଛୁଟିଛି ପ୍ରବଳ ତୋଫାନ୍, ଜଳୁଛି ଲହଲହ ନିଆଁ, ଆଉ ସେହି ପ୍ରଳୟ ତାଣ୍ଡବ ମଝିରେ ଝରି ପଡ଼ୁଛି ଦୁଇଧାର ଲୁହ, ସୁଖ ଓ ଶାନ୍ତିର ଦୁର୍ବଳ ସୂଚନା, ଗଙ୍ଗା ଓ ଯମୁନା, ମହାନଦୀ ଓ ତେଲନଦୀ ?

ସେଇ ତୋଫାନର ଗୋଟିଏ ପ୍ରବାହ, ସେଇ ଅନଳର ଗୋଟିଏ କଣିକା ଏଇ 'ଝଞ୍ଜା' ତମର ହାତକୁ ବଢ଼ାଇ ଦେଉଛି ।

ତମର ସାନଭାଇ
କହ୍ନେଇ

Digitized by srujanika@gmail.com

## ପରିକ୍ରମାର ଲେଖକ ଲେଖିକା

ସଚ୍ଚିଦାନନ୍ଦ ରାଉତରାୟ
ଅଧ୍ୟାପକ ଶ୍ରୀଚରଣ ମହାନ୍ତି
ଡଃ. ହେମନ୍ତ କୁମାର ଦାସ
ଅଧ୍ୟାପକ ଗୀରକିଶୋର ମହାନ୍ତି
କୃଷ୍ଣଚନ୍ଦ୍ର ସୁଆର
ବନବିହାରୀ ପଣ୍ଡା
ଅଧ୍ୟାପକ ବିଭୂତି ପଟ୍ଟନାୟକ
ନରହରି ଉପାଧ୍ୟାୟ
ମନୋରଞ୍ଜନ ପ୍ରଧାନ
ଶୈଳେନ୍ଦ୍ର ଲେଙ୍କା
ଅଧ୍ୟାପକ ଭୁବନାନନ୍ଦ ସାହୁ
ଅଧ୍ୟାପିକା ବିଦ୍ୟୁତ୍‌ଲତା ରାୟ
ଆର୍ତ୍ତବନ୍ଧୁ ପ୍ରଧାନ
ଜୟନ୍ତ କୁମାର ପଟ୍ଟନାୟକ
ପରମାନନ୍ଦ ଅଧିକାରୀ
ମୁରାରି ମୋହନ ଜେନା
Dr. Janaki Ballav Mohanty
(Bharadwaj)
ନିର୍ମଳ ଚନ୍ଦ୍ର ପଟ୍ଟନାୟକ

Digitized by srujanika@gmail.com

# ଜାହ୍ନୁ ଚରଣଙ୍କ ଆତ୍ମଚେତନାର ଏକ ଝଲକ···

• ୧୯୧୬ ସାଲର କଥା । ମୋ ବୟସ ସେତେବେଳେ ନଅ । ନାଗବାଲି ଚାଟଶାଳୀର ପାଠ ଶେଷକରି ମୁଁ ଓ ମୋର ବଡ଼ଭାଇ ଯଦୁନାଥ ସୋନପୁର ଗଡ଼କୁ ଉଚ୍ଚ ଶିକ୍ଷା ପାଇଁ ଗଲୁଁ । ବାପା ସୂର୍ଯ୍ୟମଣି ମହାନ୍ତି ସେତେବେଳେ ସୋନପୁର ରାଜ୍ୟର ପି.ଡବ୍ଲ୍ୟୁ. ଡ଼. ଓଭରସିଅରୀ । ଶ୍ରେଷ୍ଠ ସୋନପୁର ରାଜ୍ୟର ନିର୍ମାଣ ବିଭାଗର ସେ ଥିଲେ ମୁଖ୍ୟ କର୍ତ୍ତା । ଦରମା ପଚିଶ ଟଙ୍କା । ସେତେବେଳେ ଟଙ୍କାରେ ଷୋଳ ଭାମ୍ଣି ଅର୍ଥାତ୍ ପ୍ରାୟ ଏକ ମହଣ ଚାଉଳ ମିଳୁଥିଲା । ସେହି ଅନୁପାତରେ ଅନ୍ୟାନ୍ୟ ପଦାର୍ଥର ଦର ।

ଗ୍ରାମରେ ରହିଲେ ମୋ ବୋଉ ଦୁର୍ଗାବତୀ ଓ ତାଙ୍କର କୋଳପୋଛା ଝିଅପୁଅ ଓ ଆମର ଗେଲବସର ସାନଭାଇ ଗୋପିନାଥ ।

ସୋନପୁର ଉଚ୍ଚ ଇଂରାଜୀ ବିଦ୍ୟାଳୟର ତଳ ଶ୍ରେଣୀରେ ମୁଁ ଓ ଧୂଳିଭାଇ (ଯଦୁନାଥ) ନାମ ଲେଖାଇଲୁଁ । ଆମଦୁହିଁଙ୍କର ଜନ୍ମସ୍ଥାନ ସେହି ସୋନପୁର ଗଡ଼ । ଧୂଳିଭାଇଙ୍କ ଉପରେ ପାଞ୍ଚୋଟି ପୁଅ ବୋଉ କୋଳକୁ ଆସି ବାହୁଡ଼ି ଯାଇଥିଲେ । ସେଇଥିପାଇଁ ତାଙ୍କର ଡାକନାମ ଧୂଳିଆ ରଖାଯାଇ ଥିଲା । ମୋ ବୋଉ ତାଙ୍କୁ ଜଣେ ଚମାରୁଣୀକୁ ବିକି ଦେଇଥିଲେ ।

ମୁଁ ଜନମିଥିଲି ଜନ୍ମାଷ୍ଟମୀ ଦିନ । ବୋଉ ମୋତେ କୌଣସି ଘାଲୁଣୀକୁ ବିକି କରି ନଥିଲେ । ତେବେ ପିଲାଦିନେ ମୋତେ କହ୍ନେଇ ସାମଲ ପିଙ୍କା ଦଲାଲ କହି ମୋ ଅପା ଓ ଅନ୍ୟମାନେ ଚଡ଼ାଉଥିଲେ । ଶୁଣିଛି, କହ୍ନେଇ ସାମଲ ନାମରେ ଜଣେ ସଚ୍ଚୋଟ ପାଣ ଆମ ଗ୍ରାମରେ ଥିଲେ । ପଞ୍ଚାୟତ ସଭାକୁ ସେ ନିଶାପ କରିବାକୁ ଡ଼କା ହେଉ ଥିଲେ । ସେ ବୁଢ଼ା ଲୋକ । ଲମ୍ବପିକା ଟାଣନ୍ତି । କଦମ୍ବଦାଣ୍ଡରେ ଧୂଳି ଉପରେ ଦୂରେଇ ବସି ସବୁ ମନକଣ୍ଡି ଦେଇ ଶୁଣନ୍ତି ଓ ମସୁଧା ଦିଅନ୍ତି ।

'ପିଙ୍କା ଦଲାଲ'ର ଅର୍ଥ ମୁଁ ଅଦ୍ୟାପି ବୁଝିନାହିଁ । ପିଲାଦିନେ ପାଣ କହ୍ନେଇ ସାମଲଙ୍କ ସଙ୍ଗେ ମତେ ସମାନ କରୁଥିଲେ ବୋଲି ମୁଁ ଚିଡୁଥିଲି ଓ କାନ୍ଦୁଥିଲି । ଆଜି ମୁଁ ସେହି ଅଜଣା ମହାତ୍ମାଙ୍କ କଥା ସ୍ମରଣ କରୁଛି । ମନରେ ଗର୍ବ ଓ ଆନନ୍ଦ ଆସୁଛି । ସେହି ମହାତ୍ମାଙ୍କର ପଦଧୂଳି ନାଗବାଲି ଗ୍ରାମର ଧୂଳିକଣାରେ ମିଶିଥିବ । କଦମ୍ବଦାଣ୍ଡରେ ଆମେ ତଳ ଉପର ଦୁଇଭାଇ ଗଡ଼ା ଗଡ଼ି ହେଲାବେଳେ ସେଇ ଧୂଳିକଣା ଅବଶ୍ୟ ମୋର ମୁଣ୍ଡରେ ଲାଗିଥିବ । ·

Digitized by srujanika@gmail.com

ଧୂଳଭାଇ ଚମାରୁଣୀଙ୍କର ପୋଷ୍ୟ ପୁତ୍ର ଓ ମୁଁ ପାଣ କହ୍ନେଇ ସାମଲଙ୍କର ନାମାନ୍ତର ।

୧୯୧୫—୧୬ ରେ ଉତ୍ତର ଓଡ଼ିଶାର ଗଡ଼ଜାତ ମାନଙ୍କରେ ଅନାବୃଷ୍ଟି ହେଲା । ଦୁର୍ଭିକ୍ଷ ପଡ଼ିଲା । ସୋନପୁର ରାଜ୍ୟରେ ବୋଧହୁଏ ବର୍ଷା ହୋଇଥିଲା, କାରଣ ସେ ରାଜ୍ୟରେ ଦୁର୍ଭିକ୍ଷ ପଡ଼ି ନଥିଲା ପରା ! ସେତେବେଳେ ସୋନପୁରର ମହାରାଜା ଥିଲେ ସାର ଶ୍ରୀ ବୀରମିତ୍ରୋଦୟ ସିଂହଦେବ । କେ. ସି. ଏସ. ଆଇ ଧର୍ମନିଧି । କେଜାଣି ବା ତାଙ୍କର ଦୂରଦୃଷ୍ଟି ପାଇଁ ସୋନପୁର ରାଜ୍ୟର ପ୍ରଜାମାନେ ଦୁର୍ଭିକ୍ଷର ଦାଉରୁ ରକ୍ଷା ପାଇଥିଲେ ।

ମନେ ଅଛି । ଆଖପାଖ ଗଡଜାତମାନଙ୍କରୁ ସହସ୍ର ସହସ୍ର ବୁଭୁକ୍ଷୁ ନରନାରୀ, ବାଳକ ବାଳିକା ଆସି ଗ୍ରେଟ ସୋନପୁର ସହରରେ ରୁଣ୍ଡ ହେଲେ । ଦିନୁଦିନ କାଙ୍ଗାଳ କଙ୍କାଳଙ୍କର ସଂଖ୍ୟା ବଢିବାକୁ ଲାଗିଲା । ବାଟ ଘାଟ ଗଛମୂଳ ସବୁଠି କେବଳ କଙ୍ଗାଳ । କିଏ କେତେ ଭିକ୍ଷା ଦେବ ? ସମସ୍ତେ ତ କ୍ଷୁଧାରେ ଛଟପଟ ହେଉଛନ୍ତି । ଅତି ଧାର୍ମିକ, ଅତି ଉଦାର ବୋଲି ଯେଉଁମାନଙ୍କର ନାମ ଡାକୁଥିଲା, ସେମାନଙ୍କ ଦ୍ୱାରରୁ ମଧ୍ୟ ନାସ୍ତି ବାଣୀ ଶୁଣି କଙ୍ଗାଳମାନେ ଫେରିଲେ ।

ମହାରାଜା ସାର ଶ୍ରୀ ବୀରମିତ୍ରୋଦୟଙ୍କର ଆଦେଶରେ ତେଲନଦୀ କୂଳରେ ସୁବର୍ଣ୍ଣମେରୁ ମହାଦେବଙ୍କ ପାଖ ପଡ଼ିଆମାନଙ୍କରେ ଅନ୍ନଛତ୍ର ଖୋଲା ହେଲା । ଅସ୍ଥାୟୀ ଘରମାନ ତୋଳା ହେଲା । ଦିନକୁ ଥରେ ଅନ୍ନ ବିତରଣ କରାଗଲା । ବୋଧ ହୁଏ ଅନ୍ନବ୍ୟଞ୍ଜନ ଯଥେଷ୍ଟ ନଥିଲା । ବାପାଙ୍କ ସଙ୍ଗେ ଅନେକ ଥରଯାଇ ସେହି ଭୟାବହ ଦୃଶ୍ୟ ଦେଖିଛି । ହାଡ଼ମାଳ ଦିରଲିଙ୍ଗିଳା ଦେହ, କୋରଡ଼ ଆଖି, ଫୁର୍ ଫୁର୍ ବାଳ, ଟଳମଳ ଗୋଡ଼, ଆଉ ମୁଠିଏ ଦିଅ ବୋଲି କ୍ଷୀଣ କରୁଣ କୋଳାହଳ । ବାଟଘାଟରେ ମୁହଁଚିହ୍ନା ଅଜଣା କଙ୍ଗାଳମାନଙ୍କର ମଲାଦେହ ।

କିପରି ବର୍ଣ୍ଣିବି ସେ କରୁଣ ଓ ଭୟଙ୍କର ଦୃଶ୍ୟ । ଅନୁଭବ କରିପାରୁଛି । ଆଖି ଆଗରେ ସବୁ ଦିଶିଯାଉଛି । ଲେଖିବାର ଭାଷା ମୋତେ ଜଣା ନାହିଁ । ମନେ ପଡ଼ୁଛି ସେକାଳର ସୋନପୁର— ଗୋଟିଏ ପାଖରେ ମହାନଦୀ, ଆରପାଖରେ ତେଲନଦୀ । ସମଲେଶ୍ୱରୀ, ସୁରେଶ୍ୱରୀ, ମହାବୀର ଓ ସୁବର୍ଣ୍ଣମେରୁ ପ୍ରଭୃତି ଦେବୀ ଓ ଦେବମାନେ ପୂଜିତ ହେଉଛନ୍ତି । ମନେ ପଡ଼ୁଛି, ବାପ ସାଗର ଓ ପାଣି ନାଗର ବନ୍ଧର, ପୋଖରୀ ଆଡ଼, ନରକଙ୍କାଳର ସଢ଼ାପଚା ଗନ୍ଧ କ୍ଷତବିକ୍ଷତ ଦେହ !

୧୯୧୮ ସାଲରେ ବାପା ଚାକିରିରୁ ଇସ୍ତଫା ଦେଲେ । ଆମେ ସ୍ୱର୍ଣ୍ଣପୁର ଛାଡ଼ିଲୁଁ । ଅବଶ୍ୟ ପୁଣି କେତେ ବର୍ଷ ପରେ ବାପା ପୁଣି ସୋନପୁରରେ ନବ ନିଯୁକ୍ତ

Digitized by srujanika@gmail.com

ଯାଇ ସେଠାକୁ ଗଲେ । ମୋର ଜନ୍ମସ୍ଥାନ ସୋନପୁରକୁ ଅଦ୍ୟାବଧି ମୁଁ ଆଉ ଥରେ ଯାଇପାରିନାହିଁ । ୪୩ ବର୍ଷ ବିତିଗଲାଣି । ପିଲାଦିନେ ଦୁର୍ଭିକ୍ଷର ଯେଉଁ କରାଳ ଦୃଶ୍ୟ ମୁଁ ଦେଖିଥିଲି ସେ ଦୃଶ୍ୟ ଝାପ୍‌ସା ହୋଇ ଏବେ ମଧ୍ୟ ମୋ ଆଖି ଆଗରେ ଦିଶିଯାଉଛି ।

୧୯୩୩ ସାଲରେ କଟକର ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟରଙ୍କ ଅଫିସରେ ମୁଁ କିରାଣୀ ହୋଇ କାମ କରୁଥିଲି । ସମୟ ମିଳିଲେ ପୁରୁଣା ନଥିପତ୍ର ପଢ଼ିବାକୁ ଚେଷ୍ଟାକରେ । ଦିନେ ପୁରୁଣା ନଥିପତ୍ର ଭିତରେ ଖଣ୍ଡିଏ ହାତଲେଖା ଇଂରେଜୀ ପତ୍ର ଦେଖିଲି । ୧୮୬୭ ସାଲରେ ସେ ପତ୍ରଟିକୁ ବାଲେଶ୍ୱର ଜିଲାର ତତ୍‌କାଳୀନ ଗୋରା ଜିଲା କଲେକ୍ଟର ସେ ସମୟର ବନ୍ଧବାଡ଼ ଇଲାକାର ସୁପରିଣ୍ଟେଣ୍ଡେଣ୍ଟଙ୍କ ପାଖକୁ ଲେଖିଥିଲେ । ସେ ସମୟରେ ଓଡ଼ିଶା ଡିଭିଜନର କମିସନର ସାହେବ ବନ୍ଧବାଡ଼ର ସୁପରିଣ୍ଟେଣ୍ଡେଣ୍ଟ ଥିଲେ । ବାଲେଶ୍ୱର କଲେକ୍ଟର ତାଙ୍କର ସେହି ପତ୍ରରେ ଦୁର୍ଭିକ୍ଷର କରାଳ ଚିତ୍ର ବର୍ଣ୍ଣନା କରିଥିଲେ । ରିଲିଫ୍ କାର୍ଯ୍ୟ ସକାଶେ ବନ୍ଧବାଡ଼ର କାମ ଅତି ଶୀଘ୍ର କରାଇବାକୁ ପ୍ରସ୍ତାବ ଦେଇଥିଲେ । ଅନ୍ନଛତ୍ର ଗୁଡ଼ିକରେ କିପରି କ'ଣ ବ୍ୟବସ୍ଥା କରିବାକୁ ହେବ ତାହାର ସୂଚନା ଦେଇ ଥିଲେ । କେବଳ ସେହି ପତ୍ରଟିକୁ ନୁହେଁ ସମଗ୍ର ନଥିଟିକୁ ପଢ଼ିଲି । ଦେହ ଓ ମନ ଥରି ଉଠିଲା । ଅଜଣାତରେ ଆଖିରୁ ଲୁହ ଝରିଲା । ଦୁର୍ଭିକ୍ଷର ଦୃଶ୍ୟ ପୁଣି ମୋ ଆଖି ଆଗରେ ଠିଆହେଲା ।

କମିସନରଙ୍କ ଅଫିସକୁ ଗଲି । ସେତେବେଳେ ତାଙ୍କର ପି.ଏ.ଥିଲେ ରାୟବାହାଦୁର ଉମାଚରଣ ଦାସ । ବାଲେଶ୍ୱର କଲେକ୍ଟରଙ୍କ ପତ୍ରର କେତେକ ଘଟଣା ମୋ ମୁହଁରୁ ଶୁଣି ରେକର୍ଡ ରୁମରେ ବସି ପୁରୁଣା ନଥିପତ୍ର ପଢ଼ିବାକୁ ସେ ମୋତେ ଅନୁମତି ଦେଲେ । କେତେଦିନ ମୁଁ ପଢ଼ିଲି ଓ ନୋଟ୍‌କଲି ମୋର ମନେନାହିଁ । ଫ୍ୟାମିନ କମିସନଙ୍କର ରିପୋର୍ଟ (ସା.୧୮୬୬ରୁ୧୮୬୮) ତିନୋଟି ବଡ଼ ବହି । ସେହି ବହି ତିନୋଟି ପଢ଼ିଲି ନୋଟକଲି, ୧୯୧୫।୧୬ର ଦୃଶ୍ୟ ସତେକି ପ୍ରତିପୃଷ୍ଠାରେ ପ୍ରତିଫଳିତ ହୋଇଥିଲା ।

ଯାହା ମୁଁ ଅନୁଭବ କରିଥିଲି, ଯାହା ମୋର ସ୍ନାୟୁ ଥରାଇଥିଲା, ରକ୍ତ ତତାଇ ଥିଲା, ଆଖିରେ ଲୁହ ଆଣିଥିଲା, ମୋତେ ଉନ୍ନିଦ୍ର ଓ ଛଟପଟ କରିଥିଲା ତାହାକୁ ମୁଁ ମୋର ସେ କାଳର ଭାଷାରେ ରୂପ ଦେବାକୁ ଚେଷ୍ଟା କରିଥିଲି । ମୋ ଭିତରର କେଉଁ ଅଜଣା ପ୍ରେରଣା ମୋ କଲମକୁ ଆଗକୁ ଠେଲିଥିଲା, "ହା—ଅନ୍ନ" ଲେଖାଇଥିଲା ।

କାହ୍ନୁଚରଣ

Digitized by srujanika@gmail.com

D. O. No. PS/CA/64/1 (6)/451

S. C. Roy,
Chief Administrator

GOVT. OF INDIA
MINISTRY OF REHABILITATION
DANDAKARANYA PROJECT
KORAPUT (Orissa)
Dated the 3 Sept. 64

My Dear Shri Mohanty,

By the time we returned from Delhi you had already left.

2. I write to thank you for the excellent service you have rendered to the Project in these years. Your excellent grasp of the work of the Land Office, your capacity for meticulous detail and your methodical presentation of facts were always matters for high appreciation and pleasant surprise. Alongwith these, we shall remember, perhaps even to a greater degree, your benign smile, pleasantness of character & the fatherly treatment you gave to your staff.

3. I trust your wife's health is improving. You have our best wishes in your well-earned rest and some of us envy you that where as retirement is a punishment for some, for you it will mean uninterrupted leisure to pursue your beloved Muse of literature. We shall look forward to your attainment of even greater heights in this field hereafter and I cherish the hope that when ever you come this side, you will not fail to look us up.

God bless you,

Yours Sincerely
Sd/ S. C. Roy

Shri K. C Mohanty, B. A., OAS (1)
Rajabagicha, Cuttack-1 (Orissa)

---

କଟକରୁ କିରାଣୀ ଜୀବନ ଆରଂଭ କରି ଦଣ୍ଡକାରଣ୍ୟରେ ପ୍ରଥମ ଶ୍ରେଣୀ ରେଭେନ୍ୟୁ ଅଫିସରଭାବେ ଅବସର ନେବା ଭିତରେ, ତାଙ୍କର କର୍ମକୁଶଳତା ଓ ମାନବିକତାର ପ୍ରତୀକ ଭାବେ କେବଳ ଉପରିସ୍ଥ ଅଫିସରଙ୍କର ପ୍ରଶଂସାଭାଜନ ହୋଇନଥିଲେ, ଅଧସ୍ତନ କର୍ମଚାରୀଙ୍କ ସହ ଭାଇବିରାଦର ହୋଇଥିବା, ଏ ଚିଠିରେ ପ୍ରତିଫଳିତ ।

Digitized by srujanika@gmail.com

# ବିଶେଷ ସାକ୍ଷାତକାର

( ଔପନ୍ୟାସିକ ଶ୍ରୀ କାହ୍ନୁଚରଣ ମହାନ୍ତିଙ୍କ ସହ ଏହି ବିଶେଷ ସାକ୍ଷାତକାରରେ ଶ୍ରୀ କମଳଲୋଚନ ମହାନ୍ତି ଓ ନାଟ୍ୟକାର ଶ୍ରୀ ବିନ ବିହାରୀ ପଣ୍ଡା )



**କମଳ ଲୋଚନ—** ବିଗତ ଅର୍ଦ୍ଧ ଶତାବ୍ଦୀରୁ ଅଧିକ କାଳ ଆପଣ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ଜାତି ଆପଣଙ୍କୁ କ'ଣ ଦେଇ ସମ୍ମାନ କରିବ ତାହା ଭାଷାରେ ପ୍ରକାଶ କରି ପାରୁନାହିଁ । ତେବେ ଏକାମ୍ର ଥିଏଟର ବିଗତ ୫ବର୍ଷ ଧରି ଓଡ଼ିଶାର ସ୍ୱନାମଧନ୍ୟ ସାହିତ୍ୟିକ-ମାନଙ୍କର 'ପରିକ୍ରମା' ପ୍ରକାଶ କରି ଆସୁଛି । କିନ୍ତୁ ଆପଣଙ୍କ ରଚନା ଯେ ମହାସମୁଦ୍ର । ତାର ସମୀକ୍ଷା କରିବା କଷ୍ଟକର ! ଆପଣ ବର୍ତ୍ତମାନ ଯାହା ରଖି ଯାଉଛନ୍ତି ତାହା ଆମ ଭବିଷ୍ୟତ ବଂଶଧରମାନଙ୍କର କାଳ କାଳକୁ ଗବେଷଣାର ବିଷୟବସ୍ତୁ ହୋଇ ରହିବ । ମୁଁ ଜାଣିଛି ଆପଣଙ୍କ ବାପା ଜଣେ ସୁଦକ୍ଷ ଇଂଜିନିୟର ଥିଲେ । ସୋନପୁରଠାରେ ଆପଣଙ୍କର ଜନ୍ମ ହୋଇଛି । ଆମକୁ ଆଜି ଆପଣ ନିଜ ବିଷୟରେ କିଛି କହନ୍ତୁ ।

**କାହ୍ନୁଚରଣ—** ମୋର ଜନ୍ମ ୧୯୦୭ ମସିହା ଜନ୍ମାଷ୍ଟମୀ ଦିନ । ମୋ ବଡ଼ଭାଇ ଯଦୁନାଥ ମହାନ୍ତି ମଧ୍ୟ ଏଇଠାରେ ଜନ୍ମ ହୋଇଥିଲେ । ବାପା ପ୍ରକୃତରେ ଇଂଜିନିୟର ନଥିଲେ । ସେ ଇଂଜିନିୟରିଂ ସୁପର

Digitized by srujanika@gmail.com

ଖଇଜର ଖବେ କାର୍ଯ୍ୟ କରୁଥିଲେ । କାରଣ ସେତେବେଳେ ଏଇ ପଦବୀ ଥିଲା । ମତେ ଦେଢ଼ ବର୍ଷରୁ କମ୍ ହୋଇଥାଏ, ବାପା ଚାକିରୀରୁ ଇସ୍ତଫା ଦେଲେ ।

**କମଳ ଲୋଚନ**— ଇସ୍ତଫା ଦେବାର କାରଣ ?

**କାହ୍ନୁଚରଣ**— କେତେକ ବିଷୟରେ ରାଜ୍ୟର ଦେଓ୍ୱାନଙ୍କ ସହ ବାପାଙ୍କର ମନୋମାଳିନ୍ୟ ହେଲା । ରାଜା କହିଲେ ଦେଓ୍ୱାନଙ୍କ ସହ ଏପରି ବ୍ୟବହାର କରିବା ଉଚିତ୍ ହୋଇନାହିଁ । ତାର ପ୍ରତିବାଦରେ ବାପା ଚାକିରୀରୁ ଇସ୍ତଫା ଦେଲେ ।

**କମଳ ଲୋଚନ**— ଆପଣଙ୍କ ଶିକ୍ଷା ?

**କାହ୍ନୁଚରଣ**— ଗାଁ । ନାଗବାଲି ଚାହାଲୀରେ ପଢ଼ୁଥିଲି । ସେତେବେଳେ ଗାଁ । ଗହଳରେ ପ୍ରାଇମେରୀ ଶିକ୍ଷାର ବ୍ୟବସ୍ଥା ମଧ୍ୟ ନଥିଲା ।

**କମଳ ଲୋଚନ**— ଚାଟଶାଳୀ ଶିକ୍ଷା ସାରିଲା ପରେ... ?

**କାହ୍ନୁଚରଣ**— ମୋର ନଅବର୍ଷ ବେଳେ ଗାଁ । ଚାଟଶାଳୀରୁ ପଢ଼ା ସାରି ମୁଁ ଓ ମୋ ବଡ଼ଭାଇ ଯଦୁନାଥ ସୋନପୁର ଗଡ଼କୁ ଉଚ୍ଚ ଶିକ୍ଷା ପାଇଁ ଗଲୁ । ବାପା ପୁଣି ସୋନପୁର ରାଜ୍ୟରେ ପି.ଡବ୍ଲ୍ୟୁ.ଡ଼ି ଓଭରସିଅର ଭାବେ ଚାକିରୀ କଲେ । ବାପା ସୂର୍ଯ୍ୟମଣି ମହାନ୍ତି ତ୍ରେଟ ସୋନପୁର ରାଜ୍ୟର ନିର୍ମାଣ ବିଭାଗର ମୁଖ୍ୟ କର୍ତ୍ତା । ଦରମା ପଚିଶ ଟଙ୍କା । ସେତେବେଳେ ଟଙ୍କାରେ ଷୋଳ ଡାମ୍ବି ଅର୍ଥାତ୍ ପ୍ରାୟ ଏକମହଣ ଚାଉଳ ମିଳୁଥିଲା । ସେହି ଅନୁପାତରେ ଅନ୍ୟାନ୍ୟ ପଦାର୍ଥର ଦର ।

**କମଳ ଲୋଚନ**— ମାଟ୍ରିକ୍ କେଉଁଠୁ ପାଶ୍ କଲେ !

**କାହ୍ନୁଚରଣ**— କଟକ ପି . ଏମ୍ . ଏକାଡେମୀରୁ । ନାଚକାଲିରୁ କଟକ ୬ ମାଇଲ୍ ବାଟ ନଈ ପାରିହୋଇ ସବୁଦିନେ ଆସି କଟକରେ ପଢେ । ସେଇଠୁ ମାଟ୍ରିକ୍ ଶିକ୍ଷା ସମାପ୍ତ କଲି ।

**କମଳ ଲୋଚନ**— ତେବେ ଆପଣଙ୍କ ସାହିତ୍ୟ ସାଧନା କେବେ ଠାରୁ ଆରମ୍ଭ ହୋଇଥିଲା ।

**କାହ୍ନୁଚରଣ**— ସେ ଗୋଟିଏ ମୋ ଜୀବନର ଚିର ସ୍ମରଣୀୟ ଘଟଣା । ବାପା ସୋନପୁରରେ ଥିବାବେଳେ ତ ମୁଁ ମାଇନର କ୍ଲାସରେ ପଢୁଥିଲି । ସେଠାରେ ଅଭୟ ଭୂଷଣ ଚାଟାର୍ଜୀ, ଥିଲେ ସର୍ଜନ । ତାଙ୍କର ପୁଅ ମୋର ଅତ୍ୟନ୍ତ ସାଙ୍ଗଥିଲା । ମୁଁ ପ୍ରାୟ ସବଦା ତାଙ୍କ ଘରେ

Digitized by srujanika@gmail.com

ବସଉଠ କରୁଥିଲି । ତାଂକ ସ୍ତ୍ରୀ ଜଣେ ଅତ୍ୟନ୍ତ ସ୍ନେହପରାୟଣ ମହିଳା ଥିଲେ ଓ ମତେ ଖୁବ୍ ଭଲ ପାଉଥିଲେ । ଥରେ ତାଂକ ସାନପୁଅ ଗୋଟିଏ ବଂଗଳାବହି 'ଜାକ୍ ଏବଂ ବନ୍ ଗାଛ୍' ପଢୁଥିଲା । ମୁଁ ଦେଖିଲି ବଂଗଳା ଅକ୍ଷର ଓ ଓଡ଼ିଆ ଅକ୍ଷର ଭିତରେ ଖୁବ୍ ବେଶୀ ପ୍ରଭେଦ ନାହିଁ । ମୁଁ ବି ଆସ୍ତେ ଆସ୍ତେ ବଂଗଳା ପଢିଲି ।

ବନ ବିହାରୀ— ତେବେ ବଂଗଳା ପଢ଼ାରୁ ଆପଣଙ୍କ ସାହିତ୍ୟ ସାଧନା ଆରମ୍ଭ ହୋଇଛି ।

କାହ୍ନୁଚରଣ— ଆଦୌ ନୁହେଁ । ଅଭୟ ବାବୁଙ୍କ ବଡଝିଅ ହିମାନୀ ଥରେ ଛୁଟିରେ ସୋନପୁର ଆସିଥାନ୍ତି । ସେ କଲିକତା ବେଥୁନ୍ କଲେଜର ଛାତ୍ରୀ । ମତେ ଅଭୟ ବାବୁଙ୍କ ଘରେ ଦେଖି ମୁଁ କିଏ ବୋଲି ପଚାରିଲେ । ମୋ ସାଙ୍ଗ ମୁଁ କାହ୍ନୁଚରଣ ଓ ଓଡ଼ିଆ ପିଲା ବୋଲି କହିବାରୁ ସେ ବଙ୍ଗଳାରେ କହିଲେ 'ଉଡ଼େ ଛେଲେ କି ଭାଲୋ ହତେ ପାରେ ?' ଏ କଥା ମୋ ମନରେ ଖୁବ୍ ଆଘାତଦେଲା ଓ ମୁଁ ତତ୍‌କ୍ଷଣାତ୍ ଠିକ୍ କଲି ଯେ ଆଉ ବଙ୍ଗଳା ପଢିବି ନାହିଁ ।

କମଳ ଲୋଚନ— ତାପରେ ?

କାହ୍ନୁଚରଣ— ଘରକୁ ଆସି ବାପାଙ୍କୁ କହିଲି କଟକରୁ କିଛି ଓଡ଼ିଆ ବହି ମଗାଇବାକୁ । ବାପା ମୋର ଓଡ଼ିଆ ବହି ପଢିବା ଆଗ୍ରହ ଦେଖି କଟକରୁ ବହି ମଗାଇ ପଠାଇ ଦେଲେ ।

କମଳ ଲୋଚନ— କଟକରେ କ'ଣ ସେତେବେଳେ ଓଡ଼ିଆ ବହି ସବୁ ପ୍ରକାଶିତ ହୋଇଥାଏ ।

କାହ୍ନୁଚରଣ— ଖୁବ୍ ନଗଣ୍ୟ । କଟକର ଦାଶରଥି ବାବୁ ଓ ଆକୁଳୀ ବାବୁ ଇତ୍ୟାଦି ଖୁବ୍ ଅଳ୍ପ କେଇଖଣ୍ଡ ବହି ଛାପି ଥାନ୍ତି ।

କମଳ ଲୋଚନ— କଟକରୁ ବହି ଗଲା ?

କାହ୍ନୁଚରଣ— ମାତ୍ର ଦି ଖଣ୍ଡି ବହି ଅନେକ ଦିନ ପରେ ପାଇଲି । ଖଣ୍ଡେ 'ବୁଢ଼ାବର' ଉପନ୍ୟାସ କାହାଣୀ ଓ ଖଣ୍ଡେ 'ଦମାଲୁ ଚରିତ' କାବ୍ୟ ।

ବନ ବିହାରୀ— ଏଇ ଦୁଇଟି ପୁସ୍ତକର ଲେଖକ କିଏ ?

କାହ୍ନୁଚରଣ— ତା ଆଜି ମୋର ମନେ ନାହିଁ । ତେବେ 'ଦମାଲୁ ଚରିତ' ବହି ବହି ଉପରେ ଗୋଟିଏ ପଦ୍ୟ ଲେଖା ଥିଲା, ତା ଆଜି ଯାଏ ବି

Digitized by srujanika@gmail.com

ମୋର ମନେ ଅଛି । ତା ହେଲା :

ଦମାଲୁ ଚରିତ ଅମାଲୁ ପରିଏ

ମାଲୁମ ହେବ ଗୁଣିଲେ

କାର ରସତକ ବର୍ଣ୍ଣିତ ସଠିକ୍

( ଯଥା ) ଗ୍ରାସ ଶେଷେ ପାନଖିଲେ ।

ଏହି ବୃଇଟି ବହି ପଢି କବିତା ଲେଖିବା ପାଇଁ ଆଗ୍ରହ ସୃଷ୍ଟି ହେଲା ଓ ମୁଁ ଜୟଦ୍ରଥ ବଧ ନାମକ କବିତାଟିଏ ଲେଖି ବାପାଙ୍କୁ ଶୁଣାଇଲି । ବାପା ଅତ୍ୟନ୍ତ ଆନନ୍ଦିତ ହେଲେ । ତାଙ୍କର ଓଡ଼ିଆ ପ୍ରୀତି ଖୁବ୍ ଥାଏ । ଆମ ଘରେ ମଧ୍ୟ ଭାଗବତ ଗାଦି ଥାଏ ।

**କମଳ ଲୋଚନ**— ତେବେ ଏହି କବିତାଟି ଲେଖି ସାହିତ୍ୟ ରଚନାର ଯେଉଁ ଉତ୍ସୁକତା ଆପଣଙ୍କ ମନରେ ଅନୁଭବ କଲେ ତାର ଭବିଷ୍ୟତ ପ୍ରକାଶ କିପରି ହେଲା ।

**କାହ୍ନୁଚରଣ**— କଟକ ଏକାଡ଼େମୀ ସ୍କୁଲରେ ପଢୁଥିବା ବେଳେ ସ୍କୁଲରୁ ବାହାରୁଥିବା ସାହିତ୍ୟ ସୋପାନ ନାମକ ସାହିତ୍ୟ ପତ୍ରରେ 'ସ୍ୱର୍ଣ୍ଣପୁର' ନାମକ କବିତାଟିଏ ଲେଖିଥିଲି । ସ୍ୱର୍ଣ୍ଣପୁର ଅର୍ଥ ସୋନ୍‌ପୁର । ଶ୍ରୀ ବାଲକୃଷ୍ଣ ଦାସ ବୋଲି ଜଣେ ଶିକ୍ଷକ ତାର ସମ୍ପାଦକ ଥିଲେ । ସେ ସମୟରେ ମୋର ପ୍ରିୟ ବନ୍ଧୁ ଶ୍ରୀ ରାମକୃଷ୍ଣ ପତିଜା ମୋର ସାହିତ୍ୟ ସୃଷ୍ଟି ପାଇଁ ଅନେକ ପ୍ରେରଣା ଦେଇଥିଲେ । ମୁଁ ମୋର 'ସ୍ୱପ୍ନ ନା ସତ୍ୟ' ଉପନ୍ୟାସ ତାଙ୍କୁ ହିଁ ଉତ୍ସର୍ଗ କରିଛି ।

**କମଳ ଲୋଚନ**— ଉପନ୍ୟାସ ଲେଖା କେବେଠୁଁ ଆରମ୍ଭ କଲେ ।

**କାହ୍ନୁଚରଣ**— କଟକରେ ମାଟ୍ରିକ୍ ସେକେଣ୍ଡକ୍ଲାସ (ବର୍ତ୍ତମାନର ନବମଶ୍ରେଣୀ)ରେ ପଢୁଥିବା ବେଳେ ଥରେ ଗାଁରୁ କଟକ ଆସିବା ରାସ୍ତାରେ ଗୋଟିଏ ମୋ ଘଟଣା ଜୀବନରେ ରେଖାପାତ କରିଥିଲା । ସେହି ଘଟଣାଟିକୁ ଉପନ୍ୟାସ ରୂପ ଦେଇ ଲେଖିଲି 'ଉତ୍ସବେ ବ୍ୟସନ' । ଏହାର ରଚନା କାଳ ୧୯୨୩-୨୪ ମସିହା । କିନ୍ତୁ ଦୁଃଖର କଥା ଏହି ଉପନ୍ୟାସଟି ପ୍ରକାଶ ପାଇ ପାରିଲା ନାହିଁ । ପାଣ୍ଡୁଲିପିଟି ହଜିଗଲା ।

**କମଳ ଲୋଚନ**— ତା'ପର ଉପନ୍ୟାସ କ'ଣ ?

Digitized by srujanika@gmail.com



କାହ୍ନୁଚରଣ--- ମାଟ୍ରିକୁଲେଶନ ପାସ୍ ପରେ ଆଉ ପଢ଼ିବି ନାହିଁ ବୋଲି ଠିକ୍ କଲି ଅର୍ଥ ଅଭାବରୁ । ବାପାଙ୍କ ଗ୍ରହକଷ୍ଟ ନାହିଁ । ଏ ସମୟରେ ଭାଇ ପାଟଣାରୁ ଖବର ଦେଲେ । ଯଦୁଭାଇ ଓ ମୁଁ ପାଟଣା ଗଲୁ । ସେଠି ବିହାର ନ୍ୟାସନାଲ କଲେଜ୍‌ରେ ଇଂଜିନିୟରିଂ ପଢିବାକୁ ଭର୍ତ୍ତି ହେଲି ।

ବନ ବିହାରୀ--- କିନ୍ତୁ ଆପଣ ତ ରେଭେନ୍‌ସା କଲେଜରୁ ବି . ଏ . ପାସ୍ କରିଛନ୍ତି ।

କାହ୍ନୁଚରଣ---ସେ କଥାକୁ ଆସୁଛି । ବିହାର ନ୍ୟାସନାଲ କଲେଜରୁ ଆମ ବସାଘର ୩ ମାଇଲ୍ ଦୂର । ମଝିରେ ଶଗୋଲ୍ ବୋଲି ଗୋଟିଏ ସହର । ସେଠି ସିନ୍‌ହା ଲାଇବ୍ରେରୀ ଗୋଟିଏ ବଡ ଲାଇବ୍ରେରୀ । ସେ ଲାଇ-ବ୍ରେରୀରେ ଥରେ ଗୋଟିଏ ବଡ ବହିରୁ ମୁଁ ଗୋଟିଏ ଶବ୍ଦ ଦେଖିଲି, ତା ହେଲା B A L I । ଏହି ଶବ୍ଦ ପରେ ଲେଖାଥିଲା An Island in the Eastern Coast. ଏଠାରେ Agong ନାମକ ପାହାଡ଼ ଓ କ୍ଲିଂ ଜାତି ଥିବା କଥା ମଧ୍ୟ ପଢିଲି, ସେତେବେଳକୁ କୁନ୍ତଳା କୁମାରୀ ସାବତ ମଧ୍ୟ ଓଡ଼ିଆ ନୌବାଣିଜ୍ୟ ଉପରେ କେତେକ ଲେଖା ଲେଖିଥିଲେ । କ୍ଲିଂ ଜାତି କଳିଙ୍ଗ (ଉତ୍କଳ)ରୁ ଯାଇ ସେଠାରେ ବସତି ସ୍ଥାପନ କରିଥିଲେ ବୋଲି ଏସବୁ ଲେଖାରୁ ପଢିଲି । ଏଇ କାହାଣୀରୁ ଆରମ୍ଭ କଲି ମୋର ଉପନ୍ୟାସ 'ବାଲିରଜା' ।

Digitized by srujanika@gmail.com

ବନ ବିହାରୀ— ବାଲିରଜା କ'ଣ ଆପଣଙ୍କର ପ୍ରଥମ ପ୍ରକାଶିତ ଉପନ୍ୟାସ ।

କାହ୍ନୁଚରଣ— ନାଁ । । ବାଲିରଜାର ରଚନା କାଳ ୧୯୨୬-୨୯ ମଧ୍ୟରେ ହୋଇଥିଲେ ମଧ୍ୟ ମୋର ପ୍ରଥମ ପ୍ରକାଶିତ ଉପନ୍ୟାସ ପଲାତକ । ତା ୧୯୩୦ ମସିହାରେ ପ୍ରକାଶିତ ହୋଇଥିଲା । ବାଲିରଜା ୧୯୩୧-୩୨ ମସିହାରେ ପ୍ରକାଶିତ ହେଲା ।

କମଳଲୋଚନ— ଶିକ୍ଷା କଥା କହୁଥିଲେ ପରା ।

କାହ୍ନୁଚରଣ— ବିହାର ନ୍ୟାସନାଲ କଲେଜରେ ମି: ଟ୍ୟାଲସ୍ ପ୍ରିନ୍ସପାଲ ଥାନ୍ତି । ଭାଗଲପୁରରେ Field camp ପଡ଼ିଲା । ୨୦୦ ଟଙ୍କା ଦରକାର ହେଲା । ମୁଁ କିନ୍ତୁ ୨୦୦ ଟଙ୍କା ଦେଇ ପାରିଲି ନାହିଁ । ଏଣୁ ସ୍କଲରସିପ୍ ପାଇ ପାରିଲି ନାହିଁ ଓ କଲେଜରେ ନପଢି ଘରକୁ ଆସି ରେଭେନ୍‌ସା କଲେଜରେ ପଢିଲି । ପୁଣି ଗାଁରୁ କଟକ । ପ୍ରତିଦିନ ସାତ ମାଇଲ୍ - ସାଇକଲରେ ଯିବା ଆସିବା ।

କମଳଲୋଚନ— କ'ଣ ସବୁଦିନେ ଏମିତି ଯିବା ଆସିବା କରୁଥିଲେ ।

କାହ୍ନୁଚରଣ— ପରେ କଟକରେ ଟ୍ୟୁସନ କଲି । ମହୀଧରପଡ଼ା ଜମିଦାରଙ୍କ ପୁଅକୁ ପଢେଇଲି । ତାଙ୍କ ତେଲେଙ୍ଗା ବଜାର ଘରେ ରହେ ଓ ଖାଏ ।

କମଳଲୋଚନ— ଆପଣଙ୍କ ଭାଇ ତ ଓଭରସିଆର ପାଶ୍ କରିଥିବେ ।

କାହ୍ନୁଚରଣ— ହଁ, ସେ ଫାଷ୍ଟ ହୋଇଥିଲେ । ପରେ ଟ୍ରେନିଂରେ ଯାଇ ଚାକିରି କଲେ । ୬୦ ଟଙ୍କା ଦରମା । ସେଥିରୁ ମତେ ମଧ୍ୟ ଦିଅନ୍ତି ।

କମଳଲୋଚନ— ସେତେବେଳେ ତ ଏତେ ପ୍ରକାଶକ ନଥିଲେ । ଆପଣଙ୍କ ବହି ଛପିବା ଲାଗି ପ୍ରକାଶକ କେଉଁଠୁ ପାଇଲେ ।

କାହ୍ନୁଚରଣ— ସେ କଥା ସତ । କିନ୍ତୁ କଂଗ୍ରେସ କର୍ମୀ ଶ୍ରୀ କୃଷ୍ଣ ଚନ୍ଦ୍ର ପ୍ରଧାନ ମୋର ବହି କେତେ ଖଣ୍ଡ ଛପାଇବା ଲାଗି ବନ୍ଦୋବସ୍ତ କରିଥିଲେ । ବାଲିରଜାର ପ୍ରଥମ ସଂସ୍କରଣ ସମାଜ ପ୍ରେସ୍‌ରେ (ଆଖବର ଖାଁ ଗୁଡ଼ାଖୁ ଦୋକାନ ଗଳି ଭିତରେ ଥାଏ) ଛପା ହୋଇଥିଲା । ଏହାର ସମ୍ପାଦନା କରି ପ୍ରୁଫ୍ ଦେଖୁଥିଲେ ସମାଜର ସମ୍ପାଦକ ଶ୍ରୀ ରାଧାନାଥ ରଥ । ସେ ହୁଏତ ଭୁଲି ଯିବେଣି, ମୁଁ କିନ୍ତୁ ଭୁଲି ନାହିଁ । ତାପରେ ମନ ମୋହନ ପୁସ୍ତକାଳୟରେ ମୋହନ ବାବୁ ମୋର ପ୍ରାୟ ସମସ୍ତ ବହି ଛାପିଲେ ।

ବନବିହାରୀ— ଆପଣଙ୍କ ଉପନ୍ୟାସ ଗୁଡ଼ିକରେ ନାଟକୀୟତା ଏକ ପ୍ରଧାନ ଅଂଗ । କେଉଁ ଉପନ୍ୟାସ ଆପଣଙ୍କର ପ୍ରଥମେ ନାଟକ ହୋଇଥିଲା ।

Digitized by srujanika@gmail.com

କାହ୍ନୁଚରଣ--- ପ୍ରଥମେ 'ଝଙ୍କା' ରେଭେନ୍‌ସା କଲେଜରେ ଅଭିନୀତ ହୋଇଥିଲା । କିଏ ନାଟକକୁ ରୂପାନ୍ତରିତ କରିଥିଲେ ମନେ ନାହିଁ । ତେବେ ସଚ୍ଚିବାବୁଙ୍କ ଝିଅ କ୍ଷଣପ୍ରଭା ଭୂମିକାରେ ଅଭିନୟ କରିଥିବା କଥା ମନେ ଅଛି ।

କମଳ ଲୋଚନ--- ଆପଣଙ୍କ ବଜ୍ରବାହୁ ଚରିତ୍ର ମାନସପଟର ଏକ ଆଦର୍ଶ ସୃଷ୍ଟି । କିନ୍ତୁ ଗୋଟିଏ ସାମନ୍ତବାଦୀ ଚରିତ୍ରରୁ କଂଟ୍ରାକ୍‌ଟରକୁ ରୂପାନ୍ତରିତ ହେବା ଟିକେ ଖାପଛଡ଼ା ମନେ ହୁଏନା କି ?

କାହ୍ନୁଚରଣ--- ପାରିପାର୍ଶ୍ୱିକ ଅବସ୍ଥାରୁ ସ୍ରଷ୍ଟା ସୃଷ୍ଟି କରିଥାଏ । ମୁଁ ସୁନ୍ଦରଗଡ଼ରେ ଏ . ଡ଼ି . ଏମ୍ . ଥିଲି ବେଳେ । ବଣେଇ ସବ୍‌ଡ଼ିଭିଜନ୍‌ରେ ଗୋଟିଏ Irrigation project ର କାମ ଚାଲିଥିଲା, 'କୁଲପୋଶ୍ ପ୍ରୋଜେକ୍ଟ' । ସେଠାରେ ମୋ ଭାଇ ଯଦୁନାଥ ମହାନ୍ତି Executive Engineer ଥିଲେ । ବଣେଇ ବଙ୍ଗଳାରେ ଥିଲି ବେଳେ ସେଠିକା ଅବସ୍ଥା ଦେଖିଛି । ରାଜ୍ୟର ଖବର ନେଇଛି । ରାଜ୍ୟ ଚାଲିଗଲା । 'ଫୁଲଦାନି' ହେଇଠି । ଖାଇବା- ପିଇବା- ମରିବା ଏଇଠି । ବଣେଇ ରଜାଙ୍କ ସାନଭାଇ ଓ ବଡଭାଇଙ୍କ ଚରିତ୍ରରୁ 'ବଜ୍ରବାହୁ' ସୃଷ୍ଟି । ବିଭିନ୍ନ ଘଟଣାବଳୀରୁ ଉପନ୍ୟାସଟି ଲେଖିଛି । ଯଦି ଅପ୍ରାକୃତତା ଥିବ, ତେବେ କହି ପାରିବି ନାହିଁ ।

କମଳ ଲୋଚନ— ନାଁ, ନାଁ, ଅପ୍ରାକୃତତା ଆଦୌ ନୁହେଁ । ୧୯୩୦ ମସିହାରୁ ୧୯୭୪ ମସିହା ପର୍ଯ୍ୟନ୍ତ ଚାକିରି କାଳ, ଏ ଯେଉଁ ଦୀର୍ଘ ୩୪ ବର୍ଷ, ସେଥିରେ ଆପଣ ଓଡ଼ିଶାର ବିଭିନ୍ନ ଅଞ୍ଚଳ ବୁଲି ଯେଉଁସବୁ ଚରିତ୍ର ଗୁଡ଼ିକୁ ଓଡ଼ିଆ ସାହିତ୍ୟ ପରିବାରରେ ଅର୍ପଣ କରିଛନ୍ତି, ସେ ସବୁ ଚରିତ୍ର ଯେଉଁ ମାନବିକତାର ଭାବଧାରା ବିତରଣ କରନ୍ତି, ସେଥିପାଇଁ ମୁଁ ଆଉଥରେ ସମଗ୍ର ଓଡ଼ିଆ ଜାତି ତରଫରୁ ଆପଣଙ୍କୁ ଗଭୀର କୃତଜ୍ଞତା ଜ୍ଞାପନ କରି ସାଦର ପ୍ରଣତି ଜଣାଉଛି ।

କାହ୍ନୁଚରଣ— ମୁଁ ମୟୂରଭଞ୍ଜ, କେନ୍ଦୁଝର, ବାଲେଶ୍ୱର, ବଲାଙ୍ଗୀର ଜିଲ୍ଲା ବ୍ୟତୀତ ଓଡ଼ିଶାର ସବୁ ଜିଲ୍ଲାରେ କାମକରିଛି । ଅବସର ପରେ ମଧ୍ୟ ସାହିତ୍ୟ ଏକାଡ଼େମୀର ସପାଦକ ଥିଲି । ମୋ ଉପନ୍ୟାସ 'କା' କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇବା ବେଳେ ମୁଁ ଭାରତ ସରକାରଙ୍କ ଦଣ୍ଡକାରଣ୍ୟ ପ୍ରୋଜେକ୍ଟରେ କାମ କରୁଥିଲି । Land organisationରେ । ଏଇଟା ପ୍ରାୟ ମୋ ଚାକିରିର ଶେଷ ଭାଗ ।

Digitized by srujanika@gmail.com

ବନବିହାରୀ— ଶୁଣିଛି ଆପଣଙ୍କ 'ତମସାତୀରେ' ଉପନ୍ୟାସର କଥାବସ୍ତୁ ଏଇଠୁ ଆପଣ ନେଇଛନ୍ତି ।

କାହ୍ନୁଚରଣ— ହଁ, ସତ । ବସ୍ତର ରାଜ୍ୟର ଦ ଭାଇଙ୍କ କଳିରୁ ବସ୍ତର ମଧ୍ୟପ୍ରଦେଶକୁ ଗଲା । ବସ୍ତର ପୂର୍ବ ଓଡ଼ିଆ ଜାଗା । ନଈ କୂଳରେ ସହର । ରଜା ପରିବାର ମଧ୍ୟ ଓଡ଼ିଆ । ସେ ସୋନପୁର ରଜାଙ୍କିଅଙ୍କୁ ବାହା ହୋଇଥିଲେ । ୪୦।୫୦ ମାଇଲ ବ୍ୟାପୀ ଓଡ଼ିଆ ଗାଁ । କରଣ ପରିବାର । କ ବ୍ୟାକୁଳ ସେମାନେ ଆମମାନଙ୍କ ସହ ମିଶିବା ଲାଗି ।

କମଲ ଲୋଚନ— ତେବେ ଉପନ୍ୟାସର କଥାବସ୍ତୁ...

କାହ୍ନୁଚରଣ— ରଜା ଦୁଇଭାଇଙ୍କ କଳିଗୋଳରୁ ଗଣ୍ଡଗୋଳ ଲାଗିଲା । 'ତମସାତୀରେ' ସେଇଥିରୁ ଲେଖା— ଏହି ଉପନ୍ୟାସର କଥାବସ୍ତୁ, ଘଟଣା ଓ ସ୍ଥାନ ସବୁ ଏହି ଅଞ୍ଚଳର । ମୋର ନିଜ ଅନୁଭୂତିରୁ ବହୁ ଘଟଣା ମୋର ଉପନ୍ୟାସ ଓ କାହାଣୀରେ ଲେଖିଛି । ଘଟଣା ଥିଲା, ମୁଁ କେବଳ ରଙ୍ଗ ସ୍ପର୍ଶଦେଇ ସଜେଇଛି ମୋର ପାଠକ ପାଠିକାମାନଙ୍କ ପାଇଁ ।

ସାକ୍ଷାତ ପରିକଳନା— ନଗେନ୍ଦ୍ର ମୋହନ ମହାନ୍ତି



# ଅଗ୍ରଲେଖା

ପୁରାଣ ସାହିତ୍ୟ, କାବ୍ୟ କବିତାର ଗଣ୍ଡି ଡେଇଁ ଗଦ୍ୟ ସାହିତ୍ୟ, ବିଶେଷ କରି ଓଡ଼ିଆ ଉପନ୍ୟାସ ସାହିତ୍ୟର ଜୀବନ୍ୟାସ ଦେଲେ ସାରସ୍ୱତ ଫକୀର ମୋହନ ।

ଫକୀର ମୋହନଙ୍କ ବହୁମୁଖୀ ସାହିତ୍ୟ ପ୍ରତିଭା ଉପନ୍ୟାସ ମାଧ୍ୟମରେ ଚମକ ସୃଷ୍ଟି କରିଥିଲେ ହେଁ, ଏହା ବ୍ୟାପକ ହୋଇ ପାରି ନଥିଲା ।

ବିଂଶ ଶତାବ୍ଦୀର ପ୍ରାକ୍ କାଳରେ ସବର୍ଣ୍ଣନମ୍ନ ମଧ୍ୟବିତ୍ତ ପରିବାରରେ ପୁରାଣ ପାଠ ଥିଲା ସାହିତ୍ୟ ଆସର ଭାଗବତଟୁଙ୍ଗୀରେ ଭାଗବତ ପଢ଼ା । ଶିକ୍ଷିତ, ଅର୍ଦ୍ଧ-ଶିକ୍ଷିତ ଲୋକେ, ଗାଁରୁ କଲିକତା ଚଟକଳରେ କାମ କରୁଥିବା ଲୋକେ, ଛୁଟିରେ ଘରକୁ ଆସିଲାବେଳେ ଖଣ୍ଡେଖଣ୍ଡେ ବଙ୍ଗଳା ଉପନ୍ୟାସ ଆଣି, ପାଠୁଆ ଜମିଦାର ମକଦ୍ଦମଙ୍କୁ ଭେଟି ଦେଉଥିଲେ । ଆମ ଘର କଥା ନଜର ଦେଉଛୁ । ମୁଁ ଅପର ପ୍ରାଇମେରୀ ପଢ଼ୁଥାଏ । ଟିକେ ଟିକେ ସାହିତ୍ୟ କ'ଣ ବୁଝିବାକୁ ଆରମ୍ଭ କରିଥାଏ । ବଙ୍ଗଳା ବହି ଦେଖି ଭାବୁଥିଲି ଆମର କ'ଣ ଓଡ଼ିଆ ଭାଷାରେ ଏମିତି ବହି ନାହିଁ । ଥରେ ସାହସ କରି ବାପାଙ୍କୁ ପଚାରିଲି । ସେ କହିଲେ ଆମର ଉପନ୍ୟାସ ବହି ଅଛି । ଫକୀର ମୋହନ ଲେଖିଛନ୍ତି । କୁନ୍ତଳା କୁମାରୀ ଲେଖିଛନ୍ତି । ଚିନ୍ତାମଣି ମହାନ୍ତି ଲେଖିଛନ୍ତି । ମୁଁ ପ୍ରଶ୍ନ କରି ବସିଲି ଓଡ଼ିଆ ଉପନ୍ୟାସ ଅଛି ତ, ତୁମେ ସବୁ ବଙ୍ଗଳାଉପନ୍ୟାସ ପଢୁଛ କାହିଁକି ? ବଙ୍ଗଳା ଉପନ୍ୟାସ ଆଲମାରୀରେ ସାଇତି ରଖୁଛ, ଅଥଚ ଓଡ଼ିଆ ଉପନ୍ୟାସ କାହିଁ ନାହିଁତ ?

ବାପା କହିଥିଲେ ଆମର ତ ବେଶି ଭଲ ଉପନ୍ୟାସ ନାହିଁ, ଓଡ଼ିଆ ଉପନ୍ୟାସ ହାତ ଆଙ୍ଗୁଠିରେ ଗଣି ହୋଇଯିବ । ଦୁଇ ଚାରି ଖଣ୍ଡ ଛାଡ଼ି ଦେଲେ ବଙ୍ଗଳା ଉପନ୍ୟାସ ପରି ଆମ ଉପନ୍ୟାସ ଆଗେଇ ପାରିନ ।

ବାପାଙ୍କ କଥା ସେତେବେଳେ କଳନା କରି ପାରି ନଥିଲି । ମନରେ ଅବ-ଶୋଷ ହେଲା, ଆମର କାହିଁକି ବେଶି ସଂଖ୍ୟାରେ ଉପନ୍ୟାସ ଲେଖା ହେଉ ନାହିଁ । ଗୁଣରେ ବଙ୍ଗଳା ଉପନ୍ୟାସର ସମକକ୍ଷ ହେଉନାହିଁ !

Digitized by srujanika@gmail.com

ମୋର ମନେ ଅଛି, ମୋ ମାମୁଁ ଶ୍ରୀ ସତ୍ୟାନନ୍ଦ ବେହୁରା ଛୁଟିରେ ଆମ ଗାଁକୁ ଆସିଥାନ୍ତି । ବାସନ୍ତୀ, ଦ୍ୱାଦଶୀ, ବାଲ୍ୟସଖା, ପଲାତକ ଓ ତାଙ୍କ ଲିଖିତ ସ୍ମୃତିରପୂଜା ଇତ୍ୟାଦି କେତେ ଖଣ୍ଡି ଉପନ୍ୟାସ ବାପାଙ୍କୁ ଉପହାର ଦେଲେ । ଏତେ ଗୁଡ଼ିଏ ଓଡ଼ିଆ ଉପନ୍ୟାସ ଦେଖି ଗ୍ରନ୍ଥ କୁଣ୍ଡେ ମୋଟ ହୋଇଗଲା । ପ୍ରଥମେ ମାମୁଁଙ୍କ ନାଁ ଛପା ହୋଇଥିବା ଦେଖି ତାଙ୍କ ବହିଟି ପଢିଲି, ତା ପରେ ସଖା ନାମ ଦେଖି ବାଲ୍ୟ-ସଖା ପଢିଲି । କ୍ରମେ କ୍ରମେ ଉପନ୍ୟାସ ପଢିବା ନିଶା ଘୋଟିଲା । ବାଲକୃଷ୍ଣ କରଙ୍କ ଉପନ୍ୟାସ ଲହରୀ ସିରଜ ଓ ସବୁଜ ସାଥି କାଳନ୍ଦୀ, ହରିହର, ବୈକୁଣ୍ଠ, ଅନ୍ନଦା ପ୍ରଭୃତିଙ୍କ ନୂଆ ନୂଆ ଉପନ୍ୟାସ ମନରେ ଚମକ ଜଗାଇଲା ।

ମୋ ସ୍ମୃତିର ଏହି ପୂର୍ବାପର ସମ୍ବନ୍ଧନେଇ କାହ୍ନୁଚରଣଙ୍କ ଉପନ୍ୟାସ ସୃଷ୍ଟିକୁ ବିଧେଇ ଜଣାଉଛି । କାହ୍ନୁଚରଣହିଁ ଓଡ଼ିଆ ଉପନ୍ୟାସର ସର୍ବଶ୍ରେଷ୍ଠ କିନ୍ନାଣି । ତାଙ୍କର ଅବିଶ୍ରାନ୍ତ ଉଦ୍ୟମ ଓ ପ୍ରତିଭା ଫଳରେ ସର୍ବନିମ୍ନ ମଧ୍ୟବିତ୍ତ ପରିବାର ଠାରୁ ଆରମ୍ଭ କରି ସମ୍ଭ୍ରାନ୍ତଶୀଳ ଧନାଢ୍ୟ ପରିବାର ସମସ୍ତଙ୍କ ମନକୁ ଛୁଇଁଲା ଭଳି ବହୁମାଳିଣ ଖଣ୍ଡି ଉପନ୍ୟାସ ରଚନା କରି ଓଡ଼ିଆ ଉପନ୍ୟାସ ସାହିତ୍ୟରେ ସେ ସବୁଜ ଯୁଗ ସୃଷ୍ଟି କରିଛନ୍ତି । ମୋର ମନରୁ କେବଳ ନୁହେଁ, ଓଡ଼ିଆ ପାଠକଙ୍କ ମନରୁ ଆମ ସାହିତ୍ୟରେ ଯେଉଁ ଦୁର୍ଭିକ୍ଷ ଘୋଟିଥିଲା, ତାକୁ ପ୍ରାଚୁର୍ଯ୍ୟ ସମ୍ଭାରରେ ଧନାଢ୍ୟ କରି ତୋଳିଛନ୍ତି ।

ବିଂଶ ଶତାବ୍ଦୀର ଦ୍ୱିତୀୟ ପାଦରେ କାଳନ୍ଦୀ ଚରଣ ପାଣିଗ୍ରାହୀ, ଗୋପୀନାଥ ମହାନ୍ତି, ନିତ୍ୟାନନ୍ଦ ମହାପାତ୍ର, ଚନ୍ଦ୍ରମଣି ଦାସ, ସତ୍ୟାନନ୍ଦ ବେହୁରା, ଲକ୍ଷ୍ମୀଧର ନାୟକ ଓ ଆହୁରି ଅନେକ ଅନେକ ଔପନ୍ୟାସିକ ତାଙ୍କର ସିଦ୍ଧି ଓ ସାଧନା ବଳରେ ଓଡ଼ିଆ ସାରସ୍ୱତ ପୀଠକୁ ଉପନ୍ୟାସ ସମ୍ଭାରରେ ବିଭବଶାଳୀ କରି ବଙ୍ଗ ସାହିତ୍ୟର ଉପନ୍ୟାସ ସଙ୍ଗେ ବହୁ ଭାଗରେ ସମକକ୍ଷ କରାଇ ପାରିଛନ୍ତି । ନିଜ ନିଜର ସ୍ୱକୀୟ ପ୍ରତିଭା ବଳରେ ପାଠକ ପାଠିକାମାନଙ୍କ ମନର ଖୋରାକ ଯୋଗାଇଛନ୍ତି ।

କିନ୍ତୁ କାହ୍ନୁଚରଣଙ୍କ ଉପନ୍ୟାସ ଓଡ଼ିଆ ପାଠକ ଗୋଷ୍ଠୀକୁ କାଉଁରୀ କାଠିର ପରଶ ଦେଇଛି । ସେ ହୋଇ ଉଠିଛନ୍ତି ସର୍ବଜନପ୍ରିୟ ଔପନ୍ୟାସିକ । ଉପନ୍ୟାସର ଶୈଳୀ, ଗ୍ରନ୍ଥନ, ଭାଷା, ପରିବେଶ, ଚରିତ୍ର ଚିତ୍ରଣ, ମନସ୍ତତ୍ତ୍ୱ, ଆମ ଆଗରେ ଦେଖା ଦେଇଥିବା ବିଭିନ୍ନ ସମସ୍ୟାକୁ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରି, ତଥା ସମସ୍ୟାକୁ ମୁକା-ବିଲା କରୁଥିବା ପାତ୍ର ପାତ୍ରୀଙ୍କ ଜରିଆରେ ପାଠକ ସମ୍ମୁଖରେ ସତ୍ୟ, ଶିବ, ସୁନ୍ଦରର ଆଲେଖ୍ୟ ଆଙ୍କି ଦେଇଛନ୍ତି ।

Digitized by srujanika@gmail.com

ମଣିଷର ମଣିଷ ପଣିଆକୁ କେନ୍ଦ୍ର କରି ତାଙ୍କର ସମସ୍ତ ସୃଷ୍ଟି । ବିଗତ ଷାଠିଏ ବର୍ଷକାଳ ନିରବଚ୍ଛିନ୍ନ ଭାବରେ ପରିବେଶ, ଘଟଣାବଳୀ, ପରିବର୍ତ୍ତନ ଲୁହ ବା ଶବର୍ତ୍ତନ ଲୁହ, ତାକୁ ଶାପ ଖୁଆଇ ମଣିଷବାଦର ମାର୍ମିକ ବାଣୀରେ ଭାଙ୍କ ପାଠକଙ୍କୁ ଚେତାଇ ଦେଇ ଆସିଛନ୍ତି ।

ତାଙ୍କର ଓଡ଼ିଆ ପ୍ରାଣ, କଥା କଥାକେ ଓଡ଼ିଆ ସଂସ୍କୃତି, ଭୂଗୋଳ ଇତିହାସର ରଂଗପୂଟ ନେଇ ତାଙ୍କ ଚରିତ୍ରଗୁଡ଼ିକ ଶୁଦ୍ଧସ୍ପୃତ ଭାବରେ ରୂପମନ୍ତ ହୋଇଛନ୍ତି । ତାଙ୍କ ଉପନ୍ୟାସ ପାଠକଲେ ମନେହୁଏ ଯେପରିକି ଚରିତ୍ର ଗୁଡ଼ିକ ଆମରି ଭିତରେ ଚଲପ୍ରଚଳ ହେଉଛନ୍ତି, ଆମକୁ ତାଙ୍କ ସମସ୍ୟାରେ ଅଙ୍ଗାଙ୍ଗୀଭାବେ ଜଡ଼ିତ କରୁଛନ୍ତି । ମଂଚପ୍ରଦୀପ ଆଗରେ ଠିଆ ହୋଇ ସେମାନଙ୍କ ଜୀବନର ସାମାନ୍ୟ କଥନ, ବିଶେଷ କଥନ, ଚରିତ୍ରର ସମାବେଶରେ ପ୍ରମାଣିତ କରିଛନ୍ତି ଯେ, ମଣିଷ ହିଁ ବିଧାତା ସୃଷ୍ଟିରେ ଅମୃତର ସନ୍ତାନ ।

କାହ୍ନୁଚରଣ ତାଙ୍କ କଲମ ମୁନରେ ଦଧିମନ୍ଥନ କରି ପାଠକଙ୍କୁ ସେହି ଅମୃତ ଦାନ କରିଛନ୍ତି ।

ବ୍ରିଟିଶ ଶାସିତ ସୋନପୁର ରାଜ୍ୟରେ ଜନ୍ମ ହୋଇ, ବିଶାଳ ରାଜତନ୍ତ୍ରର ବିଲୋପ ପରେ ତାଙ୍କ ଆଖିରୁ ଲୁହ ଝରିଛି । ସେଇଥିପାଇଁ ସୃଷ୍ଟି "ବଜ୍ରବାହୁ ।"

ଓଡ଼ିଶାର ପ୍ରାଗ ଶିଳ୍ପ ପ୍ରସାରଣରେ ଯେଉଁ ସମସ୍ୟା ଦେଖା ଦେଇଥିଲା ତାର ଇଙ୍ଗିତ 'ଝଞ୍ଜା'ରେ ।

ନଅଙ୍କ ଦୁର୍ଭିକ୍ଷର ଇତିହାସ ତାଙ୍କ ହୃଦୟରେ ଦାରୁଣ ବ୍ୟଥାର ଝଙ୍କାର ତୋଳିଥିଲା । ତାର ଆଲେଖ୍ୟ 'ହା ଅନ୍ନ'— ଏକୁ ଆରେକ ବଳିଆର ।

କାହ୍ନୁଚରଣଙ୍କ ପ୍ରତ୍ୟେକ ଉପନ୍ୟାସ ଦୃଶ୍ୟକାବ୍ୟଧର୍ମୀ । ତେଣୁ ତାଙ୍କର ସମସ୍ତ ସୃଷ୍ଟି ଦେହକୁ ଉତ୍ତାପ ଦିଏ--ମନକୁ ଶୀତଳ କରେ— ଭଲ ମନ୍ଦ ବିଗ୍ଭର କରି ପାଠକକୁ ସାନ୍ତ୍ୱନା ଦିଏ । ଦିଗହରା ମଣିଷକୁ ଦିଗ ଦେଖାଏ ।

ଏପରି ଯୁଗଜନ୍ମା କଥାକାର ଦରଦୀ ସାହିତ୍ୟିକଙ୍କ ବିପୁଳ ସାହିତ୍ୟକୃତିର ପରିକ୍ରମା କରିବା ଦୁଃସାହସ ବ୍ୟତୀତ ଆଉ କ'ଣ !

ଏକାମ୍ର ଥିଏଟର୍ସ ଆଜି ଦେଶବାସୀଙ୍କ ସଂଗେ ସ୍ୱର ମିଳାଇ ୭୯ ବର୍ଷରେ ପଦାର୍ପଣ କରୁଥିବା ଏଯୁଗର ଓଡ଼ିଆ ସାହିତ୍ୟର ଅମୂଲ୍ୟ ନିଧି କାହ୍ନୁଚରଣଙ୍କ ଦୀର୍ଘ ଜୀବନ କାମନା କରୁଛି । ଯେଉଁ ଅସୀମ ଧୈର୍ଯ୍ୟ ଓ ସାଧନାର ପରାକାଷ୍ଠା ଦେଖାଇ

Digitized by srujanika@gmail.com

ଏହି ବସ୍ତୁସରେ ଏକ ବୃହତ୍ତମ ଉପନ୍ୟାସର ଲେଖା ସାଙ୍ଗକରି, ଚଳିତ ଶାରଦୀୟ ଅବକାଶରେ ଓଡ଼ିଆ ପାଠକଙ୍କୁ ଉପହାର ଦେଇ ଓଡ଼ିଆ ସାହିତ୍ୟକୁ ଗୌରବାନ୍ୱିତ କରିଛନ୍ତି ତା ଅତୁଳନୀୟ ।

ହେ କାଳଜୟୀ, ଔପନ୍ୟାସିକ, ଗାଳ୍ପିକ ! ରାଜନୈତିକ ଅଂଧକାର ଘୋଟି ଆସୁଥିବା ମଣିଷ ସମାଜରେ ଜୀବନର ମୂଲ୍ୟବୋଧ ହରାଇ ବସୁଥିବା ପୃଥିବୀକୁ ଭଗବତ୍ ସତ୍ତା ଉପଲବ୍ଧି କରି ମଣିଷପଣିଆ ଫେରାଇ ଆଣିବାକୁ ଆପଣ ଆଶୀର୍ବାଦର ଅଭୟବାଣୀ ଶୁଣାଉଥାନ୍ତୁ । ଏତିକି ମିନତି ।

ଏହି ଅବସରରେ ଓଡ଼ିଶାର ପ୍ରତିଭାଶୀଳ ଲେଖକ ଲେଖିକା, ଯେଉଁମାନେ ଏହି ଗୁରୁ ଦାୟିତ୍ୱ ଏକାମ୍ର ଧର୍ମ ପାଳନ କରିବାରେ ସହାୟକ ହୋଇଛନ୍ତି, ସେମାନଙ୍କ ନିକଟରେ ଏକାମ୍ର ଧର୍ମ କେବଳ ନୁହେଁ, ଓଡ଼ିଶାର କାହ୍ନୁଚରଣଙ୍କ ଉପନ୍ୟାସର ପ୍ରିୟ ପାଠକ ପାଠିକାମାନେ ଋଣୀ । ଯେଉଁମାନଙ୍କ ଆର୍ଥିକ ସାହାଯ୍ୟରେ ଏକାମ୍ର ଧର୍ମ ବିଗତ ସାତବର୍ଷ ଭିତରେ ମାନସି ସ୍ମରଣିକା, କବିଚନ୍ଦ୍ର ପରିକ୍ରମା, ମହତାବ ପରିକ୍ରମା, ଗନ୍ତାନାୟକ ପରିକ୍ରମା ଓ କାଳନ୍ଦୀଚରଣ ପରିକ୍ରମା ପ୍ରକାଶ କରି ପୂଜ୍ୟଙ୍କ ପୂଜା କରିପାରିଛି, ସେମାନଙ୍କୁ ପରିଶେଷରେ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ।

**କମଳ ଲୋଚନ ମହାନ୍ତି**

Digitized by srujanika@gmail.com

# ମରସନ୍ ସାହେବଙ୍କ ଭୂଗୋଳ

ସତ୍ୟାନନ୍ଦ ବେହୁରା

ମୋର ପ୍ରିୟ ସତୀର୍ଥ ଓ ସୁହୃଦ୍ ଶ୍ରୀ ମିଶ୍ର ଏକ କୃପଣ ଅନୁଦାର ଅପରାହ୍ଣରେ କହିଲେ-ହୁଁ ଃ···ଏଟା, ଏଟା, ସି. ମରସନ୍ ସାହେବଙ୍କ କୃତ ଭୂଗୋଳ । ମୁଁ ମନେ ମନେ କହିଲି—କାହ୍ନୁ ମହାନ୍ତି ଆଲେକ୍‌ଜାଣ୍ଡର୍‌ଡୁମାଙ୍କ ଟ୍ରେଜର ଆଇଲଣ୍ଡ ଆଦି ପଢି ଲେଖି ନଥିବେଯେ······

ବିଖ୍ୟାତ 'ବାଲିରାଜା'ର ପ୍ରଥମ ପ୍ରକାଶନ ପରେ ଏହି ମନ୍ତବ୍ୟ । ଆଜକୁ ତେର ବର୍ଷ, ମାନେ ପଚିଶରୁ ଊର୍ଦ୍ଧ୍ୱ । ସେହି ସମୟରେ ସପ୍ତମ ଶ୍ରେଣୀରେ ମରସନ୍‌ଙ୍କ ମ୍ୟାକମିଲନ୍ କମ୍ପାନୀ ଦ୍ୱାରା ପ୍ରକାଶିତ ଓଡ଼ିଆ ଭୂଗୋଳ ପଢା ଯାଉଥିଲା ।

ମୋର ପ୍ରିୟ ଅଗ୍ରଜ କାହ୍ନୁ ବାବୁଙ୍କ ବନ୍ଧୁତ୍ୱରେ ଏହି ଅଶିଷ୍ଟକର ସମାଲୋଚନାଟି ମତେ ସେଦିନ ଭଲ ଲାଗି ନ ଥିଲା । ତେଣୁ ମୁଁ ତାକୁ ସାଇତି ରଖିଥିଲି । ଠାକୁର ସୁବିଧା ଦେଲେ, ତାକୁ ପ୍ରକାଶ କରିଦେଲି । ଗଙ୍ଗାଧର ଖାଲି ।

ଜଣେ ଆଲୋଚକ 'ସମାଜ'ରେ ପରୋକ୍ଷ ଭାବରେ ମୋ ଅଗ୍ରଜଙ୍କୁ କଥାଛଳରେ କହିଥିଲେ—'ଏତେ ବିରାଟ ଗ୍ରନ୍ଥ,-ଏତେ ଦାମ୍—ଫେଣେଇ ଫେଣେଇ ସେହି କଥାକୁ ବାରମ୍ବାର ଲେଖା ଯାଇଛି—ଏତେ ଦାମ୍ ଦେଇ କିଣିବ କିଏ ?, ପୃଥିବୀ ଦିନକୁ ଦିନ ଗ୍ଲୋବ ହୋଇ ଯାଉଛି ସତ । ଭାରତରେ ପଖାଳ ଖାଇ ଲଣ୍ଡନରେ ଚପଲ ଖାଇ ହେବ । ବଡ଼ ବହି ପଢିବାକୁ ବେଳ କାହିଁ ? ଟ୍ରେନ୍‌ରେ, ବସରେ, ପ୍ଲେନ୍‌ରେ ବସି ପଢିବା ଭଳି ବହି ଲେଖିବା ଉଚିତ୍ ।

Digitized by srujanika@gmail.com

ଶ୍ରୀ ପଣ୍ଡା 'ତମସାଘରେ'କୁ ଆକ୍ଷେପ କରି ଯାହା କହିଥିଲେ। ମୁଁ ପଢ଼ିଲା ବେଳେ ଭାବୁଥିଲି, ଅର୍ଥାତ୍ ମୋର ପ୍ରତକ୍ରିୟା—ଟ୍ରେନ୍ ବସ୍ ଓ ପ୍ଲେନ୍‌ରେ ଏ ଦେଶରେ କେତେ ଲୋକ ଯାନ୍ତି ? କୋଡ଼ିଏ ଟଙ୍କା ଦାମ୍ ଦେଇ କେତେ ଲୋକ ତମସାଘରେ କିଣି ପାରିବେ ? ମୁଁ କିଣି ପାରିବି ନାହିଁ। ମାତ୍ର କହି ପାରିବି-ମୁକ୍ତା କେତେ ଜଣ କିଣନ୍ତି ଆମ ସମାଜରେ ?

କିନ୍ତୁ ମୁକ୍ତା ଅଳଙ୍କାର ବିକା ହେଉଛି ତ ? ରାମଗାଉଁର ସ୍ତ୍ରୀ ତା ବାପ ଘରକୁ ଯିବ। ଭାଇର ବାହାଘର। ତାଙ୍କ ଗାଁ ନିତ୍ୟାନନ୍ଦ ଲେଙ୍କା ଘରୁ ମୁକ୍ତା ହାରଟି ଆଣିଥିଲା ମାଗି। ବାହାଘରରୁ ଫେରି ତାଙ୍କୁ ଫେରାଇ ଦେଲା।

'ତମସା ଘରେ' ଏକ ସାର୍ଥକ ସୃଷ୍ଟି। ଏହାକୁ ମୁଁ ରାଉତରାଣୀଙ୍କ ପରି ଜଣେ ସୁହୃଦ୍‌ଙ୍କଠାରୁ ମାଗି ଆଣି ପଢ଼ି ଥିଲି। ଏଠାରୁ କଟକ ଯାଇ ଅଗ୍ରଜଙ୍କୁ କହିଲି— 'ତମସା ଘରେ' ଏକ ଅଭିନବ ଗଳ୍ପ। ମତେ ଭାରି ଭଲ ଲାଗିଲା। ଭାରତ ବାହାରେ ଏହା ପ୍ରଚାରିତ ହେଲେ ଆମର ସାହିତ୍ୟିକ ମହତ୍ତ୍ୱ ବଢ଼ି ଯାନ୍ତା। ଉ ପି ମାନଙ୍କ ସହିତ କଥା ପ୍ରସଙ୍ଗରେ ମୁଁ ଏହାର ଉଲ୍ଲେଖ କରିଛି। ଫକୀର ମୋହନଙ୍କ ଛମାଣ ଆଠଗୁଣ୍ଠ ଓ ମାମୁଁ ପଢ଼ି ସେତେବେଳର ପାଠକ ମାନେ କଟକ ଅଦାଲତକୁ ଯାଇ ଶୁଣିବାକୁ ଚୂଡ଼ାଗୁଡ଼ କ ବାନ୍ଧି ଆସିଥିଲେ। ଏହି ଉ୍‌ପି (ପୂର୍ବ ବଙ୍ଗରୁ ଆସିଥିବା ହିନ୍ଦୁ ବଙ୍ଗାଳୀ) ସ୍ଥିମିତ ହେବାରେ ବିଳମ୍ବତା କେଉଁଠି ? ହେଲେ; କାହ୍ନୁ ବାବୁ, ବେଶୀ ଫେଣା ହୋଇଛି। ସେହି ଝାଞ୍ଜିରମଙ୍ଗଳା ମୋ ଝିଅ ଘରେ ଯେଉଁ ଆଲୋଚନା ହୋଇଥିଲା, ମନେଥିବ ? ମୁଁ କହିଥିଲି ଗୋଟିଏ ଅନୁଚ୍ଛେଦ ଦେଖାଇ ପଡ଼ାରେ ଏଗାରଟି ବାକ୍ୟ-ଏଥିରେ କେଇ ଏକଇ କଥାକୁ ତିନି ବାକ୍ୟରେ ନ କହି ଏଗାର ବାକ୍ୟ……

ଆପଣ କହିଲେ—ଏହା ଆର୍ଟ-ମୁଁ ଚୁପ୍ ପଡ଼ିଥିଲି।

ଆଜି ଏହା ଶୁଣିସେ ଟିକେ ମୁରୁକି ହସିଥିଲେ। ସେ ମାନସିଂ, ଗୋଦାବରୀଶ ମହାପାତ୍ର, ଗଡ଼ନାୟକଙ୍କ ପରି ହସନ୍ତି ନାହିଁ।

•

Digitized by srujanika@gmail.com

ତମସାଙ୍କରେ ମତେ ଭଲ ଲାଗିଲା—ଏଥିରେ ବିରକ୍ତ ନାହିଁ । ପାଠକର ମନ ବୁଝି ସେ ତଟାପଟ୍ ପ୍ରସଙ୍ଗ ବଦଳାଇ ତାର କ୍ଲାନ୍ତ ବିରକ୍ତି ଓ ଉତ୍କଣ୍ଠା ବଦଳାଇ ନୂତନ ପ୍ରସଙ୍ଗ ଉତ୍ଥାପନ କରି ଦିଅନ୍ତି । ପାର୍ଲି ବକ ଏପରି କରିଥାନ୍ତି । ଲେଖକର ଯନ୍ତ୍ରଣା ପାଠକ ବୁଝେନା, ଲେଖକହିଁ ବୁଝେ । ସକଳ ସଦ୍‌ଗୁଣ ବିଶ୍ୱ 'ତମସାଙ୍କରେ' ଅବତୀର୍ଣ୍ଣ ହୋଇଛନ୍ତି । ଅଥଚ ପଣ୍ଡେ ସହି ନପାରି କଡ଼ା ମନ୍ତବ୍ୟ ଦେଇ ଦେଲେ !!

ଭୂଗୋଳ-ମିଶ୍ରେ ଭୂଗୋଳ କହିଥିଲେ । ମୁଁ ଆଜ ମୋର ଏହି ପରିଣତ ବୟସରେ କହୁଛି—କାହ୍ନୁବାବୁ ଓଡ଼ିଶାର ଭୂଗୋଳ ଲେଖିଛନ୍ତି । ସେ ଭୌଗଳିକ ନ ହୋଇଥିଲେ ଆମକୁ ଓଡ଼ିଆ ବୋଲି ପରିଚୟ କରାଇ ପାରିନଥାନ୍ତେ । ଯେତେବେଳେ ପଢ଼ଶାରେ ବଙ୍କିମ, ଶରତ୍ ଦାଣ୍ଡରେ ଘାଟରେ ଆଲୋଚିତ ହେଉଥିଲେ ସେତେବେଳେ ଓଡ଼ିଶାରେ କିଏ କଣ ପଢୁଥିଲା ? କାହ୍ନୁହିଁ ଆମକୁ ବଞ୍ଚାଇ ଦେଲେ । ଆମେ ବଙ୍ଗଳା ପଢ଼ିବା ଛାଡ଼ିଦେଲୁ ।

ପୁନଶ୍ଚ କାହ୍ନୁଚରଣ ଭୂଗୋଳବିତ୍ ବା ଭୌଗଳିକ ହୋଇ-ଥିବାରୁ ଆମକୁ ବିବିଧ ଚରିତ୍ର, ବହୁବିଧ ଭୌଗଳିକ ବିବରଣୀ ଦେଇ ଆମର ସାଧାରଣ ଜ୍ଞାନ ବଢ଼ାଇ ଦେଇଛନ୍ତି । ମିଶ୍ରସ୍‌ଙ୍କ ଭୂଗୋଳ କାହିଁରେ ରୂପାନ୍ତରିତ ଓ ପରିଣତ ହେଲା, ମିଶ୍ରେ ନିଶ୍ଚୟ ବୁଝି ତାଙ୍କ ବ୍ୟଙ୍ଗ ମନ୍ତବ୍ୟକୁ ସଂଶୋଧନ କଲେ କି ନା ସେ କହିବେ ।

ଅପ୍ରାସଙ୍ଗିକ ହେଲେ ବି ମୁଁ କହିବି—୧୯୬୭ରେ ମୁଁ ଜମିରକୋଟରେ ରହିବାକୁ ଆରମ୍ଭ କରିଥାଏ । ଅଗ୍ରଜ ଆସିଲେ ମୋ ଝିଅ ଘରକୁ । ଆମେ ତିନ୍‌ଘଣ୍ଟା କଥା ହେଲୁ । ମୁଁ ଗୋଟିଆ ପ୍ରଶ୍ନ କରୁଥାଏ । ଅଗ୍ରଜ ମୋର ଗପି ଚାଲିଥାନ୍ତି—ଓଡ଼ିଆ ଓ ଉପାନ୍ତ ଅଞ୍ଚଳର ଭୂଗୋଳ । ମୁଁ ବି ତ ବୁଲିଛି କେତେ ସ୍ଥାନ, କାହିଁ ତାଙ୍କ ପରି ମୋର ଜ୍ଞାନ ଅଛି ? ନା—ମୋଟେ ନାହିଁ । ଶତାଂଶରୁ ପାଞ୍ଚ ନୁହେଁ । ସେ ନିରବଚ୍ଛିନ୍ନ ଭାବରେ ଓଡ଼ିଶାର ଭୂଗୋଳ କହି

Digitized by srujanika@gmail.com

ସ୍କୁଲ୍‌ଥାନ୍ତି । କାହିଁ ବଳାସପୁର, ଫୁଲଝର, କାହିଁ ଚକାକୋଲ ଜଲ୍ଲାର ଓଡ଼ିଆ ଅଧ୍ୟୁଷିତ ଅଞ୍ଚଳ । ମୁଁ ତାଜୁବ୍ ହୋଇଗଲି ।

ପରେ ଏବେ ଶ୍ରୀ ପାଣିଗ୍ରାହୀ ଓ ଶ୍ରୀ ରଥଙ୍କ ଉଦ୍ୟମରେ ଉତ୍କଳ ସମ୍ମିଳନୀ ରମ୍ଭାରେ ବସିଲା । ଖବର କାଗଜରେ ମୁଁ ବିବରଣୀ ପଢ଼ିଲି । ମୁଁ ମନେ ମନେ କହିଲି, ଆଃ — କାହ୍ନୁ ଭାଇଙ୍କି ଏମାନେ ଡାକି ନଥାନ୍ତେ !!

ଓଡ଼ିଆ ଉପନ୍ୟାସର ସ୍ବର୍ଣ୍ଣକାଠି କାହା ହାତରେ ? ମନ୍ମଥ ସାହେବଙ୍କ ଦାୟାଦଙ୍କ ହାତରେ ନିଶ୍ଚୟ ! ଏଥିରେ ପରିତାପର ଉକ୍ତି ଅଛି କି ? ଓଡ଼ିଆ ଉପନ୍ୟାସ କହିଲେ—କାହ୍ନୁଚରଣଙ୍କୁ ବୁଝାଏ । ଏହା ମୋର ବ୍ୟକ୍ତିଗତ ମତ, ସକଳ ମନ୍ତବ୍ୟର ବାହାରେ ତେଣୁ ।

ଯେଉଁମାନେ ତାଙ୍କୁ ଆମ ମନକୁ ପାଇଲାଭଳି ଠିକେ ଶ୍ରଦ୍ଧା, ଜାଣିଶୁଣି ସମ୍ମାନ ଦେଖାଇବାକୁ ଉଦ୍ୟମ କରୁଛନ୍ତି ସେମାନେ ମୋର ନମସ୍ୟ । ଏବେ କାହିଁକି, ଆଗେ କଣ ଥିଲା ନଥିଲା ? ଜଣଙ୍କର ଜୀବଦ୍ଦଶାରେ ତାଙ୍କୁ ତୁଚ୍ଛ ତାଚ୍ଛଲ୍ୟ କରନ୍ତି, ସେ ମରିଗଲେ ତାର ଜୟନ୍ତୀ ଆଡ଼ମ୍ବରରେ ପାଳିତ ହୁଏ । ବାଲ୍‌ଜାକ୍‌ଙ୍କ ମୃତ୍ୟୁ ପରେ ତାଙ୍କୁ ପୃଥିବୀର ଶ୍ରେଷ୍ଠ ସମ୍ମାନ ଦିଆଯାଇଥିଲା । ଫ୍ରାନ୍‌ସର କୌଣସି ସମ୍ରାଟ ଏପରି ସମ୍ମାନ ପାଇ ନାହାନ୍ତି । ତାଙ୍କ ଜୀବନୀ ପର୍ଯ୍ୟାଲୋଚନା କଲେ ତାଙ୍କ ଜୀବଦଶା ଓ ମରଣୋତ୍ତର ଦଶା ମଧ୍ୟରେ ଏହା ପ୍ରମାଣିତ ହୋଇ ପାରିବ । କିମଧିକମ୍ ।

ଉମରକୋଟ
କୋରାପୁଟ
୯ । ୯ । ୮୩

—୦—

Digitized by srujanika@gmail.com

# 'ହା'ଅନ୍ନ'ରେ କାହ୍ନୁଚରଣ-ମାନସ

**ଅଧ୍ୟାପକ ଶ୍ରୀଚରଣ ମହାନ୍ତ**

ଏମ୍.ଏ.ଏମ୍.ଫିଲ୍

ଏକଦା ବହୁ ପାଠକ ସୃଷ୍ଟି କରିଥିବା ଔପନ୍ୟାସିକ ଶ୍ରୀ କାହ୍ନୁ ଚରଣ ମହାନ୍ତିଙ୍କର "ହା'ଅନ୍ନ" ଐତିହାସିକ ପୃଷ୍ଠଭୂମିକାର ଉପନ୍ୟାସ । ଓଡ଼ିଆ ଉପନ୍ୟାସର ଦିଗ୍‌ଦ୍ରଷ୍ଟା ବ୍ୟାସକବି ଫକୀର ମୋହନଙ୍କ ପରେ ଯଦି କିଏ ଉପନ୍ୟାସ ଲେଖାରେ ଓଡ଼ିଆ ପ୍ରାଣରେ ଅଧିକାର ସାବ୍ୟସ୍ତ କରିଥାନ୍ତି, ତେବେ ସେ ହେଉଛନ୍ତି ଔପନ୍ୟାସିକ କାହ୍ନୁଚରଣ । ଗୋଟିଏ ପରିବାରର ଦୁଇଟି ଜ୍ୟୋତି ଯେ ଓଡ଼ିଆ ସାହିତ୍ୟରେ ମାଳିକ ଖଣ୍ଡ ହୋଇ ଦେଖା ଦେବେ ତାହା କେବଳ ଗୋପୀନାଥ ଓ କାହ୍ନୁଚରଣଙ୍କ ପାଖରେ ସମ୍ଭବ ହେଲା । ଜଣେ ବହୁ ପାଠକ ସୃଷ୍ଟି କରିଗଲେ, ଆଉ ଜଣେ ଗଳ୍ପ ଉପନ୍ୟାସ କ୍ଷେତ୍ରରେ ନାନା ପରୀକ୍ଷା କରି ଚାଲିଲେ । ଏଇ ଦୁଇ ଭାଇଙ୍କ ଉପନ୍ୟାସ ସୃଷ୍ଟିର ପୃଷ୍ଠ ଭୂମି ଭାବରେ ସେମାନଙ୍କ ସାମାଜିକ ଅବସ୍ଥାନ ତଥା ପରିବେଶ ସହାୟକ ହୋଇଛି । ଅବସ୍ଥା ଚକ୍ରରେ ଆଦ୍ୟ ଜୀବନରେ ବାପାଙ୍କ ସହିତ ବିଭିନ୍ନ ସ୍ଥାନରେ ଅବସ୍ଥାନ ଓ ପରବର୍ତ୍ତୀ ଜୀବନରେ ନିଜର କର୍ମସ୍ଥଳୀ ଉପରେ ତାଙ୍କର ଅଧିକାଂଶ ଲେଖା ନିର୍ଭର କରିଛି । ଯାହା ଯେଉଁଠି ଶୁଣିଛନ୍ତି, ଦେଖିଛନ୍ତି, ବଣି ବଣି ବିବରଣୀକୁ ନିଜର ଅନ୍ତଃଶ୍ଚେତନା ଶକ୍ତି ମଧ୍ୟରେ ପରିପୂର୍ଣ୍ଣରୂପ ପ୍ରଦାନ କରିଛନ୍ତି । ଲେଖନୀର ଯାଦୁ ସ୍ପର୍ଶରେ ସେ ପରେ ଜନପ୍ରିୟ ଉପନ୍ୟାସ ବା ଗଳ୍ପର ରୂପ ନେଇଛି ।

ଲେଖକଙ୍କର ପ୍ରଦତ୍ତ ସମୟାନୁସାରେ "ହା'ଅନ୍ନ"ର ପରି-ସମାପ୍ତି କଟକ ଅବସ୍ଥାନ କାଳରେ, ତା୧୦-୪-୧୯୩୩ରେ ଘଟିଛି ।

Digitized by srujanika@gmail.com

ଏହା ପ୍ରଥମେ ପ୍ରକାଶ ପାଇଛି ୧୯୩୪-୩୫ ମସିହାରେ । ୧୯୭୭ ମସିହାରେ ଏହାର ଷଷ୍ଠ ସଂସ୍କରଣର ମୁଖବନ୍ଧରେ କାହ୍ନୁଚରଣ "ହା'ଅନ୍ନ"ର ପୃଷ୍ଠଭୂମିରେ ଲେଖିଛନ୍ତି, ଯେ ତାଙ୍କର ହାଅନ୍ନ ଉପନ୍ୟାସ କାଳ୍ପନିକ ନୁହେଁ । ଓଡ଼ିଶାରେ ଘଟିଯାଇଥିବା ନ'ଅଙ୍କ ଦୁର୍ଭିକ୍ଷର ପୃଷ୍ଠଭୂମିରେ ଏହା ରଚନା କରାଯାଇଛି । ଲେଖକ ଅବଶ୍ୟ ନ'ଅଙ୍କ ଦୁର୍ଭିକ୍ଷକୁ ଆଖିରେ ଦେଖିନାହାନ୍ତି; ମାତ୍ର ସେ ଆଖିରେ ଆଉ ଗୋଟିଏ ସେହି ପ୍ରକାର ଦାରୁଣ ଦୁର୍ଭିକ୍ଷର ଚିତ୍ର ଦେଖିଛନ୍ତି । ସନ ୧୯୧୫ ମସିହା କଥା । ଲେଖକ ନଅ ବର୍ଷ ବୟସରେ ତାଙ୍କ ବାପାଙ୍କ ପାଖକୁ ପଢ଼ିବାକୁ ଗଲେ । ବାପା ସୂର୍ଯ୍ୟମଣି ମହାନ୍ତି, ସୋନପୁରରେ, ପି. ଡବ୍ଲୁ. ଡ଼ି. ଓଭରସିଅର ଥାଆନ୍ତି ।

ସନ ୧୯୧୫-୧୭ ମସିହାରେ ଉତ୍ତର ଓଡ଼ିଶାର ଗଡଜାତମାନଙ୍କରେ ଅନାବୃଷ୍ଟି ହେଲା । ଦୁର୍ଭିକ୍ଷ ପଡ଼ିଲା । ସୋନପୁର ରାଜ୍ୟରେ ଦୁର୍ଭିକ୍ଷ ପଡ଼ିନଥିଲା । ଲେଖକ ଲେଖିଛନ୍ତି ତାଙ୍କର ମନେ ଅଛି, ଆଖପାଖ ଗଡଜାତମାନଙ୍କରୁ ସହସ୍ର ସହସ୍ର ବୁଭୁକ୍ଷୁ ନରନାରୀ ବାଳକ ବାଳିକା ଆସି ସ୍ରୋତ ସୋନପୁର ସହରରେ ରୁଣ୍ଡ ହେଲେ । ଦିନକୁ ଦିନ କାଙ୍ଗାଳମାନଙ୍କର ସଂଖ୍ୟା ବଢ଼ିବାକୁ ଲାଗିଲା । ବାଟ ଘାଟ, ଗଛମୂଳ ସବୁଠି କେବଳ କାଙ୍ଗାଳ । କିଏ କେତେ ଭିକ୍ଷା ଦେବ ? ସମସ୍ତେ ତ କ୍ଷୁଧାରେ ଛଟପଟ ହେଉଛନ୍ତି । ଅତି ଧାର୍ମିକ ଅତି ଉଦାର, ବୋଲି ଯେଉଁମାନଙ୍କର ନାମ ଡ଼ାକ ଥିଲା ସେମାନଙ୍କ ଦ୍ୱାରରୁ ନାସ୍ତି ବାଣୀ ଶୁଣି କାଙ୍ଗାଳମାନେ ଫେରିଲେ ।

ସେତେବେଳେ ସୋନପୁରର ମହାରାଜା ସାର୍ ବୀରମିତ୍ରୋଦୟ ସିଂହଦେବ କେ. ସି. ଏସ୍. ଆଇ.ଙ୍କର ଆଦେଶରେ ତେଲ ନଦୀ କୂଳରେ ସୁବର୍ଣ୍ଣମେରୁ ମହାଦେବଙ୍କ ପାଖ ପଡ଼ିଆରେ ଅନ୍ନଛତ୍ର ଖୋଲିହେଲା । ଦିନକୁ ଥରେ ଅନ୍ନ ବିତରଣ କରାଗଲା । ବୋଧହୁଏ ଅନ୍ନବ୍ୟଞ୍ଜନ ଯଥେଷ୍ଟ ନ ଥିଲା । ଲେଖକ ବାପାଙ୍କ ସହିତ ଅନେକ ଥର ସେ ଭୟାବହ ଦୃଶ୍ୟ ଦେଖିଛନ୍ତି । ହାଡ଼ମାଳ, ଉଦ୍ଧଲଙ୍ଗଳା

ଦେହ, କୋରଡ଼ ଆଖି, ଫୁର୍‌ଫୁର୍ ବାଳ, ଝଳମଳ ଖୁଲି, ଆଉ ମୁଠାଏ ଦାଅ ବୋଲି କ୍ଷୀଣ କରୁଣ କୋଳାହଳ । ବାଟରେ ଘାଟରେ ଅସନା କାଙ୍ଗାଳମାନଙ୍କର ମଲାଦେହର କରୁଣ ଭୟଙ୍କର ଦୃଶ୍ୟ ଲେଖକଙ୍କୁ ଅଭିଭୂତ କରି ପକାଇଛୁ, ସେହି ଦୃଶ୍ୟ ଲେଖକଙ୍କ ମନରେ ଗୋଟିଏ ଉପନ୍ୟାସର ସୂପ୍ତ ବୀଜଟିଏ ବସା ବାନ୍ଧି ରହିଥିଲା ।

ସନ ୧୯୩୩ ମସିହାରେ ଲେଖକ କଟକର ସୁପରିନ୍‌ଟେଣ୍ଡିଂ ଇଞ୍ଜିନିଅରଙ୍କ ଅଫିସରେ କିରାଣୀ ଥାଆନ୍ତି । ସମୟେ ସମୟେ ସୁବିଧା ପାଇଲେ ପୁରୁଣା ନଥିପତ୍ର ଖୋଳାଇ ପଢ଼ନ୍ତି । ଦିନେ ପୁରୁଣା ନଥି-ପତ୍ର ଭିତରୁ ଖଣ୍ଡିଏ ଇଂରାଜୀ ହାତଲେଖା ଚିଠି ଦେଖିଲେ । ସନ ୧୮୬୬ ସାଲରେ ସେ ପତ୍ରଟିକୁ ବାଲେଶ୍ୱରର ତତ୍‌କାଳୀନ ଗୋରା କଲେକ୍ଟର ସେ ସମୟର ବନ୍ଧବାଡ଼ ଇଲାକାର ସୁପରିଟେନ୍‌ଡେଣ୍ଟଙ୍କ ପାଖକୁ ଲେଖିଥିଲେ । ସେ ସମୟରେ ଓଡ଼ିଶା ଡିଭିଜନର କମିଶନର ସାହେବ ବନ୍ଧବାଡ଼ର ସୁପରିନ୍‌ଟେଡ଼େଣ୍ଟ ଥିଲେ । ବାଲେଶ୍ୱରର କଲେକ୍ଟର ତାଂକର ସେହି ପତ୍ରରେ ଦୁର୍ଭିକ୍ଷର କରାଳ ଚିତ୍ର ପ୍ରଦାନ କରିଥିଲେ । ରିଲିଫ୍ ସକାଶେ ବନ୍ଧବାଡ଼ର କାମ ଅତି ଶୀଘ୍ର କରାଇବାକୁ ପ୍ରସ୍ତାବ ଦେଇଥିଲେ; ଅନ୍ନଛତ୍ରଗୁଡ଼ିକରେ କିପରି କାର୍ଯ୍ୟ କରିବାକୁ ହେବ ତାର ସୂଚନା ଦେଇଥିଲେ । କେବଳ ସେହି ପତ୍ରଟି ନୁହେଁ, ସମଗ୍ର ନଥିଟିକୁ ଲେଖକ ପଢ଼ିଲେ । ସେଥିରେ ଥିବା ଭୟାବହ ଅବସ୍ଥାର ଚିତ୍ର ପଡ଼ି ଲେଖକଂକର ଦେହ ଓ ମନ ଥରି ଉଠିଲା । ଅଜାଣତରେ ଆଖିରୁ ଲୁହ ଝରି ଗଲା । ସନ ୧୯୧୫-୧୬ ସୋନପୁରରେ ଦେଖିଥିବା ଦୁର୍ଭିକ୍ଷର ଦୃଶ୍ୟ ପୁଣି ଆଖି ଆଗରେ ନାଚି ଉଠିଲା ।

ଏହାପରେ ସେ କମିଶନରଂକ ଅଫିସକୁ ଯାଇ ରାୟ ବାହାଦୁର ଉମାଚରଣ ଦାସଂକ ସାହାଯ୍ୟରେ କେତେକ ପୁରୁଣା ନଥିପତ୍ର ପଢ଼ି ନୋଟ କଲେ । ଖ୍ରୀ ୧୮୬୬ରୁ ୧୮୬୮ ମଧ୍ୟରେ ଫ୍ୟାମିନ କମିଶନରଙ୍କ

Digitized by srujanika@gmail.com

ଛନୋଟି ବଡ଼ ବଡ଼ ବହି ଗ୍ରୁପ ରିପୋର୍ଟ ପଢ଼ି ନୋଟ କରିବାର ସୁଯୋଗ ପାଇଲେ । ଔପନ୍ୟାସିକ ଲେଖିଛନ୍ତି – "୧୯୧୫-୧୬ର ଦୃଶ୍ୟ ସତେକି ପ୍ରତି ପୃଷ୍ଠାରେ ପ୍ରତିଫଳିତ ହୋଇଥିଲା ଯାହା ମୁଁ ଅନୁଭବ କରିଥିଲି, ଯାହା ମୋର ସ୍ନାୟୁ ଥରାଇଥିଲା, ଇକ୍ତ ତତାଇ ଥିଲା, ଆଖିରେ ଲୁହ ଆଣିଥିଲା, ମୋତେ ଉନିଦ୍ର ଓ ଛଟପଟ କରିଥିଲା ତାହାକୁ ମୁଁ ମୋର ସେ କାଳର ଭାଷାରେ ରୂପ ଦେବାକୁ ଚେଷ୍ଟା କରିଥିଲି । ମୋ ଭିତରେ କେଉଁ ଅଜଣା ପ୍ରେରଣା ମୋ କଲମକୁ ଆଗକୁ ଠେଲିଥିଲା । 'ହା'ଅନ୍ନ ଲେଖିଥିଲି ।' (ଅଠେଇଶ ବର୍ଷ ପରେ 'ହା'ଅନ୍ନ' ଷଷ୍ଠ ସଂସ୍କରଣର ମୁଖବନ୍ଧ ପୃ 'ଘ' ୭ମ ସଂସ୍କରଣ ୧୯୭୩, ପ୍ରକାଶକ-ସାଥୀ ପ୍ରକାଶନ କଟକ-୨, ଏହି ଆଲୋଚନାରେ ଯେଉଁ ପୃଷ୍ଠାଙ୍କ ବ୍ୟବହାର କରାଯାଇଛି ଏହି ସଂସ୍କରଣରୁ)

## * ଦୁଇ *

ଦୁର୍ଭିକ୍ଷ ପୃଷ୍ଠଭୂମିକାରେ ଓଡ଼ିଆ ସାହିତ୍ୟରେ ଅନେକ କିଛି ଲେଖା ହୋଇଛି । ବ୍ୟାସକବି ଫକୀରମୋହନ ସେନାପତିଙ୍କର ଆତ୍ମଜୀବନୀ ଚରିତରେ ନ'ଅଙ୍କ ଦୁର୍ଭିକ୍ଷକୁ ଆଖିରେ ଦେଖିବାର ଚିତ୍ର ଦେଇଛନ୍ତି । ଅନନ୍ତ ଦାସଙ୍କ ଆତ୍ମଜୀବନୀ ଓଡ଼ିଶାର ନ'ଅଙ୍କ ଦୁର୍ଭିକ୍ଷ ଉପରେ ଏକ ପ୍ରାମାଣିକ । ଗ୍ରନ୍ଥ ପଦ୍ୟ ଆକାରରେ ଏକ ଦୀର୍ଘ ବିବରଣୀରେ ସେ ନିଜର ବ୍ୟକ୍ତିଗତ ଚିତ୍ର ଦେଇ ଓଡ଼ିଶାର ନ'ଅଙ୍କ ଦୁର୍ଭିକ୍ଷର ଚିତ୍ର ପ୍ରଦାନ କରିଛନ୍ତି । ସେହିପରି କାଳନ୍ଦୀଚରଣ ପାଣିଗ୍ରାହୀଙ୍କର 'ମୁକ୍ତାଗଡ଼ର କ୍ଷୁଧା' (ଉପନ୍ୟାସ) ଡ଼ଃ ମାୟାଧର ମାନସିଂହଂକର ଦୁର୍ଭିକ୍ଷ' ନାଟିକା ମଧ୍ୟ ଆମର ଦୃଷ୍ଟିକୁ ଆସେ । ଏହା ବ୍ୟତୀତ ଦୁର୍ଭିକ୍ଷ ଉପରେ ଅନେକ ଗ୍ଳୋଟ ବଡ଼ ରଚନା ରହିଛି । କିନ୍ତୁ କାହ୍ନୁଚରଣଂକ 'ହା'ଅନ୍ନ' ପାଠକଲେ ପାଠକ ଯେପରି ନିଜକୁ ଭୁଲିଯାଏ, ସେ ଅନୁଭବ କରେ ଯେପରି ନ'ଅଙ୍କ ଦୁର୍ଭିକ୍ଷକୁ ସେ ଆଖିରେ ଦେଖୁଛି । ଦୁର୍ଭିକ୍ଷର ନିଛକ ଚିତ୍ର ପଡ଼ୁ ପଡ଼ୁ

ପାଠକ ଅସ୍ଥିରତା ହୋଇ ନଜେ ବେଳକୁ ବେଳେ ଦୁର୍ଭିକ୍ଷର ପ୍ରତ୍ୟକ୍ଷ ଦ୍ରଷ୍ଟା ହୋଇପଡ଼େ । ଲେଖକଙ୍କର ଖୁଣ୍ଟି ନାଣ୍ଟି ବର୍ଣ୍ଣନା ପାଠକ ଆଗରେ ଗୋଟିଏ ସ୍ପଷ୍ଟ ଛବିର ଦୃଶ୍ୟ ଦେଖାଇ ଦିଏ । ଏହା ଅବଶ୍ୟ ଲେଖକଙ୍କର ବର୍ଣ୍ଣନାଭଙ୍ଗୀର ଯାଦୁକରୀ ଫଳ; ଜଣେ ପାଠକ ପାଇଁ ଏହା ଯଥେଷ୍ଟ; ମାତ୍ର ସମୀକ୍ଷକ ଦୃଷ୍ଟି ଦେଇ ଦେଖିଲେ ଆମେ ଏଥିରେ କାହ୍ନୁଚରଣଙ୍କର ଆଉ ଏକ ରୂପ ଦେଖିବାକୁ ପାଉଁ । ସେହି ରୂପଟି ହେଉଛି କାହ୍ନୁଚରଣଙ୍କର ଅସଲ ମାନସ । ସେତେବେଳେ ଆମେ ଦେଖୁଁ ଗଳ୍ପର କଥାବସ୍ତୁ କ୍ରମେ ନିଷ୍ପ୍ରଭ ହୋଇ ଲେଖକଙ୍କର ଆଉ ଗୋଟିଏ ରୂପ ଆମ ଆଗରେ ଦେଖାଦିଏ ।

## ତିନି

ସମଗ୍ର 'ହାଅନ୍ନ' ଉପନ୍ୟାସକୁ ସୂକ୍ଷ୍ମ ଭାବରେ ନିରୀକ୍ଷଣ କଲେ ଜଣାଯାଏ, କାହ୍ନୁଚରଣ କେବଳ ଗୋଟିଏ ଦୁର୍ଭିକ୍ଷ ଚିତ୍ର ଦେଇ ନାହାନ୍ତି; ଗୋଟିଏ ଐତିହାସିକ ଜାତିର ପ୍ରାଣର ବେଦନା ଉପସ୍ଥାପନ କରିଛନ୍ତି । ଲେଖକଙ୍କର ଜାତିପାଇଁ, ଦେଶପାଇଁ ପ୍ରାଣର ହାହାକାର ଛବି ଦେଇଛନ୍ତି । ପ୍ରକାରାନ୍ତରେ ଏ ବୀର ଜାତିର ଅବନତିର କାରଣ, ଖୋଜିବେଳ; ପୁରୁଷୋତ୍ତମର ଉତ୍ତର ବଂଶଧରର 'ହାଅନ୍ନ'ର ଗାଥା ବଖାଣି ବସିଛନ୍ତି ।

ବନ୍ୟା, ବାତ୍ୟା, ମରୁଡ଼ି ଭଳି ପ୍ରାକୃତିକ ଦୁର୍ବିପାକ ଓଡ଼ିଆ ଜାତିର ଚିର ସହଚର । କେତେକେତେ ବିପଦରେ ଓଡ଼ିଆ ନିଜକୁ ସମ୍ଭାଳି ନେଇ ଆସିଛି । ଖ୍ରୀ ୧୮୬୬ ଆଗରୁ ସେ ପ୍ରକାର ଅନେକ ପ୍ରାକୃତିକ ବିପର୍ଯ୍ୟୟର ପ୍ରମାଣ ମଧ୍ୟ ରହିଛି; ମାତ୍ର ଖ୍ରୀ ୧୮୬୬ ମସିହାର ନଅଙ୍କ ଦୁର୍ଭିକ୍ଷ ଏପରି ଭୟାବହ ହେବାର କାରଣ କ'ଣ ? କାରଣ ସ୍ୱରୂପ ସେ ଦେଖାଇଛନ୍ତି ଗୋଟିଏ ଗୌରବୋଜ୍ଜ୍ୱଳ ଐତିହାସିକ ଜାତିର ପତନର ବିବିଧ କାରଣ ମଧ୍ୟରେ ସେ ଚୈତନ୍ୟଙ୍କର ପ୍ରବର୍ତ୍ତିତ ବୈଷ୍ଣବ ଧର୍ମକୁ ଦାୟୀ କରିଛନ୍ତି । ଏ ଜାତିର କ୍ଲୀବତ୍ୱ

Digitized by srujanika@gmail.com

ବିଷୟରେ ଗୋଟିଏ ଟିପ୍‌ପଣୀ ଦେବାକୁ ଯାଇ ମରହଟ୍ଟା ବର୍ଗୀ ଆକ୍ରମଣ କଥା ଉଲ୍ଲେଖ କରନ୍ତି । "ମରହଟ୍ଟା ବର୍ଗୀ ଆସିଲ ପରି ! ଖ୍ରୀ ୧୮୦୦ ସାଲ ପୂର୍ବର କଥା । ବର୍ଗୀ ଆସିଲ ! ଓ ହୋ କି ଉତ୍ତେଜନା, କି ଭୟ, କି ଚହଳ ! ଗାଁରେ ଆତଙ୍କ ପଡ଼ିଯାଏ । ଧନ, ଜନ, ଜୀବନ ରଖିବାକୁ ଲୋକେ ତତ୍ପର ହୋଇ ଉଠନ୍ତି । ନୋହିଲେ ସର୍ବନାଶ । ବର୍ଗୀ ଆସିବେ, ବଳାତ୍କାରରେ ଘରେ ପଶି ବାସନ-କୁସନ, ଟଙ୍କାସୁନା ଯାହା ପାଇବେ ସବୁ ବୋହି ନେବେ । ଘରେ, ପାଚିଲ ଧାନ କିଆରିରେ ନିଆଁ ଲଗାଇ ଦେବେ । ସୁନ୍ଦରୀ ବୋହୂ, ଝିଅ ଦେଖିଲେ ନେଇଯିବେ । ବାଧା ଦେବାକୁ ବସିଲେ ପ୍ରାଣ ଯାଏ । ବାଧା ଦେବ କି'ଏ ? ବାଧା ଦେବାକୁ ଆସିବ କିଏ ? ପ୍ରାଣ ବିକଳରେ ପିଲା ଛୁଆ ଘେନି ପଳାଇବାକୁ ତର ସହେ ନାହିଁ ।"

ଓଡ଼ିଆ ଏତେ ଭୀରୁଜାତି ? ଇତିହାସ କିମ୍ବଦନ୍ତୀରେ ତା'ର ବୀରଗାଥା ସହସ୍ର ମୁଖରେ ଗାନ ହେଉଛି । ସେ ବୀର ଓଡ଼ିଆ ଜାତି, ବର୍ଗୀର ଅତ୍ୟାଚାରରେ ଘର ପର ପଳାଇ ଯାଇ ଆତ୍ମରକ୍ଷା କରିବା ପାଇଁ ବଣ ଜଙ୍ଗଲରେ ଲୁଚୁଛି । ଲେଖକ ଏଠାରେ କହୁଛନ୍ତି । "ବର୍ଗୀ ଆସିଲ ହଠାତ୍ ତା'ର ସମରସ୍ପୃହା, ବୀର ହୃଦୟ କେଉଁ ପଡିଲା କାହିଁକି ? ଖାରବେଳ, ଅନଙ୍ଗ, ପୁରୁଷୋତ୍ତମଙ୍କ ପିଲାଏ ଜୀବନ ଭୟରେ ପଳାଇଯାଇ ଲୁଚିବାର ବ୍ୟବସ୍ଥା କଲେ ।" (ପୃ-୪୨) ଏଥିପାଇଁ ଲେଖକ ଖେଦୋକ୍ତି ପ୍ରକାଶ କରୁଛନ୍ତି ଓ ଦୁଃଖରେ କହୁଛନ୍ତି, "ହୁଏତ ଇତିହାସ ମିଛ, କିମ୍ବଦନ୍ତୀ ମନଗଢା, ନୋହିଲେ ଏ ଜାତିର ସମରସ୍ପୃହା, ବୀର ମନର ପତନର ଅନ୍ୟ କାରଣ ଅଛି; ଯେଉଁଥିପାଇଁ ଓଡ଼ିଆ ଆଜି ଭୀରୁ, ଓଡିଆ କାପୁରୁଷ, ଓଡିଆ ନିଃସ୍ୱ ।" (ପୃ-୪୨) ବୀର ଓଡ଼ିଆ ଆଜି ଭୀରୁ ଓଡିଆରେ ପରିଣତ ହେବାର କାରଣ ସ୍ୱରୂପ ଲେଖକ ବର୍ଣ୍ଣନା କରିଛନ୍ତି—"କି ଦୁର୍ଯୋଗରେ ସେ ଦିନ ଓଡ଼ିଆର ସ୍ୱାଧୀନ ସମ୍ରାଟ ପ୍ରତାପରୁଦ୍ରଙ୍କର ଦେଖାହେଲା ନିମାଇଁ ସନ୍ନ୍ୟାସୀଙ୍କ ସଙ୍ଗରେ, କି ଅସମୟରେ ଓଡିଆର ବୀର ସେନାପତି ରାମାନନ୍ଦଙ୍କର ମିଳନ ହେଲା ନିମାଇଁ ସନ୍ନ୍ୟାସୀଙ୍କ ସହିତ ଗୋଦାବରୀ

Digitized by srujanika@gmail.com

ଷ୍ଟାଭରେ; ସେହି ବନରୁ ଏ ଜାତିର ସମଭଙ୍ଗ ହାର ହମିକ ହ୍ରାସ ।"
(ପୃ-୪୨)

ଚୈତନ୍ୟଙ୍କର ମତ, ଧର୍ମ, ଓ ଦର୍ଶନ ବୀର ଓଡ଼ଆକୁ କ୍ଳୀବତ୍ଵ ପ୍ରଦାନ କଲା, ସେ ଯାହା ପ୍ରଚାର କଲେ ବୀର ଓଡ଼ିଆର ରକ୍ତ ଶିଥିଳ ହୋଇଗଲା, ଚୈତନ୍ୟ ବଖାଣିଲେ—"ଜୀବନ ଅନିତ୍ୟ । ଧନ ସମ୍ପତ୍ତି ଅଳୀକ । ବାପ, ପୁଅ, ବନ୍ଧୁ, ବାନ୍ଧବ, ସବୁ ମିଛ,, ନିତ୍ୟ, ଶାଶ୍ୱତ ସତ୍ୟ, ଏକା କୃଷ୍ଣ । ମାଳାଧରି ମୁଣ୍ଡରେ ଦେହରେ ଛାପା ମାରି ସୁଖଲାଭ କରିବ । ଶତ୍ରୁକୁ କ୍ଷମାକର । ଭଗବାନ ତୁମକୁ କ୍ଷମା କରିବେ । ଓଡ଼ଆ ସମର ପ୍ରିୟ, ଯାହାର ବାଁ ହାତରେ ମାଳା, ଡାହାଣ ହାତରେ ଖଣ୍ଡା, ସେ ଟୋକା ସନ୍ୟାସୀର ଗାରୁଡ଼ ମନ୍ତ୍ରରେ ଭୁଲିଲା । ନିଜର ବୀରଧର୍ମ ଭୁଲି ସେ ହେଲା ବୈଷ୍ଣବ ।" (ପୃ.-୪୨)
ଧର୍ମ ଗ୍ରହଣ ପରେ ଓଡ଼ଆମାନେ ଯେଉଁ ଧାରଣାର ବଶବର୍ତ୍ତୀ ହେଲେ ସେ କଥା ଲେଖିଛନ୍ତି ଯେ ଓଡ଼ଆ ନୂଆ ଧର୍ମରେ ଦୀକ୍ଷିତ ହୋଇ କ୍ରମେ ତା'ର ସବୁ ହରାଇ ବସିଲା । ପ୍ରଭୁଙ୍କର ପାଦ ପଦ୍ମରେ ଲପ୍ତ ରହି ସେ ଜଗନ୍ନାଥ ମୂର୍ତ୍ତି ପରି ଜଡ଼ ହୋଇ ବସି ବିଚାର କଲେ—"ଜୀବନଟା ଅନିତ୍ୟ; ଦୈହିକ ସୁଖରେ କି ପ୍ରୟୋଜନ ? ଧନ ସମ୍ପତ୍ତି ଅଳୀକ; କି ଲାଭ ମିଳିବ ଅର୍ଜ୍ଜନ କରି ? ସୁଖେ ଦୁଃଖେ ଜୀବନର କେଇଟା ଦିନ ହରି ନାମଗାଇ କଟାଇଦେଲେ ତେଣିକି ସ୍ୱର୍ଗରେ ଅମୃତ ପାଉଣା ହେବ । ବନ୍ଧୁ, ବାନ୍ଧବ, ପିଲା କୁଟୁମ୍ବ ସବୁ ମିଛ । କାହାପାଇଁ ତେବେ ଅକ୍ଳାନ୍ତ ପରିଶ୍ରମ କରି ଧନ ସଞ୍ଚୟ ? କେଇ ଦିନ ବଞ୍ଚିବା, ଶତ୍ରୁ ମିତ୍ର ଧରି ବସିବା ? (ପୃ.-୪୩)

ଇଂରେଜମାନେ ଓଡ଼ିଶା ଅଧିକାର କରିବା ପରେ ପରେ ଓଡ଼ିଶାର ପୂର୍ବ ଦୁଃଖ ଦୂର ହୋଇନି ବରଂ ଅଧିକ ହୋଇଛି । ବର୍ଗୀ ଆକ୍ରମଣରୁ ମଧ୍ୟ ବଳି ଯାଇଛି । ଲେଖକ ସେ ସମୟର ଛବି ଦେବାକୁ ଯାଇ ବର୍ଣ୍ଣନା କରିଛନ୍ତି—"୧୮୦୩ ସାଲର କଥା । ମରହଟ୍ଟାମାନେ ତୃତୀୟ ମରହଟ୍ଟା ସମରରେ ଇଂରେଜମାନଙ୍କ ହାତ ପରାସ୍ତ ହେଲେ । ଗୋଟିଏ ନୂଆ ସରକାର ଓଡ଼ିଶାର ରାଜଗାଦି ମାଡ଼ି ବସିଲା । ଶାସନ

Digitized by srujanika@gmail.com

ପରିବର୍ତ୍ତନ । ଏତେ ବଡ଼ ଗୋଟାଏ ଦେଶରେ କେତେ ବିଶୃଙ୍ଖଳା ଘଟିବାର କଥା । ଏଣେ ଭିତରିର ବିଦ୍ରୋହର ସୂତ୍ରପାତ ହେଉଛି । ନୂଆ ସରକାରଙ୍କ ଉପରେ ଲୋକଙ୍କର ଷୋଳପଣ ବିଶ୍ୱାସ ଆସିନାହିଁ । ରାଜକରିର କୌଣସି ଧରାବନ୍ଧା ନିୟମ ନାହିଁ । ଜମିବାଡର ସତ୍ତ୍ୱ; ଜମି ଜମାର ତାଲିକା କ'ଣ ଅଛି ? କପରି ସୂତ୍ରରେ କର ଧାର୍ଯ୍ୟ ହେବ; ସେ ସମ୍ବନ୍ଧରେ ନୂଆ ସରକାରଙ୍କର କିଛି ଜ୍ଞାନ ନାହିଁ । ସବୁ ନୂଆ କରିବାକୁ ହେବ । ଲୋକଙ୍କର ବିଶ୍ୱାସ ଭାଜନ ହେବାକୁ ହେବ ।" (ପୃ.-୭୩-୭୪) ରାଜତ୍ୱର ପ୍ରଥମ କେତେବର୍ଷ ଇଂରେଜ-ମାନେ ବିଦ୍ରୋହ ଦମନ ସଙ୍ଗେ ସଙ୍ଗେ ବର୍ଷକୁ ବର୍ଷ ବନ୍ଦୋବସ୍ତ କରାଇ କର ଧାର୍ଯ୍ୟ କଲେ । କଚେରି ଅଦାଲତ ବସାଇଲେ । ସରକାରୀ କାମ ଚଳାଇବା ପାଇଁ ବଙ୍ଗ ଦେଶର ଇଂରେଜୀ ଶିକ୍ଷିତ ଲୋକମାନେ ଆସିଲେ । ଏଇଠି ଆରମ୍ଭ ହେଲା ଓଡ଼ିଆର ନୂତନ ଦୁଃଖ । ବର୍ଷକୁ ବର୍ଷ ଜମିଦାରୀର କର ବଢିଲା । ଲୋକଙ୍କ ଆପତ୍ତି ଶୁଣୁଛି କିଏ ? ବୁଝାଇ କହିବାକୁ ଯେଉଁମାନେ ନିଯୁକ୍ତ ହେଲେ, ସେମାନେ ନିଜର ସ୍ୱାର୍ଥ ସାଧନା ପାଇଁ କଳାକୁ ଧଳା ବୁଝାଇଲେ ତିଳକୁ ତାଳ କରି ବୁଝାଇଲେ । "ମରହଟ୍ଟା ଅତ୍ୟାଚ୍ଚରିତ ଓଡ଼ିଆ ଆଶା କରିଥିଲା, ତା'ର ଦୁଃଖଯିବ । କିନ୍ତୁ ଫଳ ହେଲା ଓଲଟା । ତା'ମନର ବେଦନା ପ୍ରାଣର ଆଶା କେହି ବୁଝି ପାରିଲେ ନାହିଁ । ଦୁଃଖ ପରେ ଦୁଃଖ ମାଡ ଆସିଲା, ଆଖିରୁ ଲୁହ ଝରନ୍ତା କ'ଣ ଲହୁ ଝରିଲା ।" (ପୃ.-୭୪)

ଖ୍ରୀ ୧୮୧୪-୧୮୧୫ରେ ଅନାବୃଷ୍ଟି ଫଳରେ ଓଡ଼ିଆ ଜମିଦାର-ମାନେ ରାଜସ୍ୱ ଦେଇ ନ ପାରି ସରକାରଙ୍କ ନିକଟରେ ଆବେଦନ କରିଥିଲେ । କିନ୍ତୁ ସେ ଆବେଦନ ପତ୍ର ଫୋର୍ଟ ଉଇଲମରେ ଚାକିରି କରିଥିବା ବଙ୍ଗାଳୀମାନେ ଚାପିଦେଇ ଓଡିଶାର ଭାଗ୍ୟରେ କଳା ଅନ୍ଧାର ଘୋଟାଇ ଆଣିଲେ । ଲେଖକ ବଡ ବ୍ୟଥିତ ଭାବରେ ସେ ଅବସ୍ଥା ବର୍ଣ୍ଣନା କରିଛନ୍ତି । "ଓଡିଆ ଆକାଶକୁ ଚାହିଁ ରହିଥିଲା ସତୃଷ୍ଣ ନୟନରେ, ଆଶା କରିଥିଲା ତା'ର ଭାଗ୍ୟକୁ ଅମୃତ ବର୍ଷିବ । କିନ୍ତୁ ବର୍ଷିଲା ସତ । ସେ ଚମକ ଚାହିଁଲା । ସବୁ ତା'ର ସରିଛି ।

Digitized by srujanika@gmail.com

ତା'ର ଦ୍ୱାରରୁ ଅପହରଣ କରିଥିଲା, ବହୁ ଶତାବ୍ଦୀ ପୂର୍ବେ ଜଣେ ସ୍ତ୍ରୀଣବେଶୀ ସନ୍ନ୍ୟାସୀ ନିମାଇଁ; ଖଣ୍ଡା ଧାରରେ ନୁହେଁ; ଖୋଳ କରତାଳ ଇଷ୍ଟ ସମ୍ପଦରେ। ସେ ତାହା ଜାଣି ଜାଣି ସହିଲା; ଫଳରେ ସେ ତା'ର ସ୍ୱାଧୀନତା ସମ୍ପଦ ହରାଇ ମୁସଲମାନ ମରହଟ୍ଟାଙ୍କ ଅତ୍ୟାଚାର ସହିଲା ବଡ ଅନିଚ୍ଛାରେ। କିନ୍ତୁ ଭାରତୀୟ ତା'ର କେହି ଛଡ଼ାଇ ନେଇ ନଥିଲେ। ମନେ କରିଥିଲା ସୁଖରେ ରହିବ। ଆହା ବଡ ଦୁର୍ଦ୍ଦଶା। ରାଜତ୍ୱର କୋଡ଼ିଏଟା ବର୍ଷ ନ ଯାଉଣୁ ସେ ତା'ର ଖାଇବା ଗଣ୍ଡାକ ବି ହରାଇ ବସିଲା।" (ପୃ.-୭୫)।

ସନ ୧୯୧୭ ସାଲର ରାଜସ୍ୱ ବାକିରେ ଓଡ଼ିଶାର ଶ୍ରେଷ୍ଠ ବଡ ଅସଂଖ୍ୟ ଜମିଦାରୀ ମାହାଲ କଲିକତା ସହରରେ ନିଲାମ ହୋଇଗଲା। କେହି ଜାଣିପାରିଲେ ନାହିଁ। ଫଳରେ କଲିକତାର ଧନୀ ନିର୍ଦ୍ଧନ, ଯେ ପାରିଲା ଶାଗ ମାଛ ଦରରେ ଜମିଦାରୀମାନ ନିଲାମ ଧରିଲେ। ନିଲାମ ଧରିବା ଲୋକମାନଙ୍କ ମଧ୍ୟରୁ ଅଧିକାଂଶ ହେଉଛନ୍ତି ଫୋର୍ଟ ଉଇଲିୟମରେ ନିଯୁକ୍ତଥିବା କମ୍ପାନୀଙ୍କର ବଙ୍ଗାଳୀ କର୍ମଚାରୀ, କିମ୍ବା ସେମାନଙ୍କର ଭାଇ ବିରାଦର। ଏଥିରେ ଔପନ୍ୟାସିକ ଦୁଃଖରେ ମନ୍ତବ୍ୟ ଦେଇଛନ୍ତି—"କିଏ ସିନା ଖଣ୍ଡା ଦାଉରେ ଦେଶ ଜୟକରି ପ୍ରଭୁ ହୁଏ, ବିଜେତା ହୁଏ, ବଙ୍ଗାଳୀ କିରାଣୀ କଲମ ମୁନରେ ଓଡ଼ିଶା ଜୟ କଲା। ଓଡ଼ିଶାର ପ୍ରଭୁ ଓଡ଼ିଆର ଭାଗ୍ୟବିଧାତା ହୋଇ ବସିଲେ ବଙ୍ଗାଳୀ। ତିନିଶ ବର୍ଷ ପୂର୍ବେ ଚୈତନ୍ୟ ଯେଉଁ ମୂଳଦୁଆ ଦେଇ ଯାଇଥିଲେ ବଙ୍ଗାଳୀ କିରାଣୀ ତା'ରି ଉପରେ ଅଟ୍ଟାଳିକା ଗଢ଼ିଲେ; ଓଡ଼ିଆ ଗଡ ମଲେ।" (ପୃ. ୭୭)

ବଙ୍ଗାଳିମାନେ ଯେ କେବଳ ଚକ୍ରାନ୍ତ କରି ଜମିଦାରୀ ନେଲେ, ସେ କଥା ନୁହେଁ; ସେମାନେ ଦେଶର ସମସ୍ତ ଶାସନ ଭାର, ସରକାରୀ ଆଇନ୍ ଅଦାଲତ ନେଇ ବସିଲେ। ଔପନ୍ୟାସିକଙ୍କ ଭାଷାରେ—
"ଓଡ଼ିଆ ମେଣ୍ଢା, ଓଡ଼ିଆ ପଶୁ, ପାଞ୍ଚଣ ଉଠାଇଲେ ଲଙ୍ଗଳ ଯାକିବେ। ଏଥର କଲମ, ବଲ୍ଲମ, ପ୍ରୟୋଗ କଲେ ମୁସଲମାନ ବହୁଳ ମ୍ୟାଲେ-

Digitized by srujanika@gmail.com

ରିଆ ପ୍ରପୀଡ଼ିତ ବଂଗ ଦେଶର ଗୁଡ଼ ମେଷପଲ ଭିତରେ ସହଜରେ ଉପନିବେଶ ସ୍ଥାପନ କରାଯାଇ ପାରିବ । ମେଦିନୀପୁର ବାଙ୍କୁଡ଼ାତ ହସ୍ତଗତ ହୋଇଛି, ଆଉ କେଉଁଠା ଦେଖାଯାଉ ? (ପୃ. ୭୭)

ମହାତ୍ମା ଟିପ୍ପନୀ ସାହେବ ଏହି ବିଷୟରେ ନାନା ତଥ୍ୟ ପ୍ରକାଶ କରିଥିବାରୁ, ଲେଖକ ବାରମ୍ବାର ତାଙ୍କର ଜୟଗାନ କରିଛନ୍ତି । ଗୋଟିଏ ସ୍ଥାନରେ ସେ ଲେଖିଛନ୍ତି – "ମହାତ୍ମା ଟିପ୍ପନୀ; ତୁମ ଆତ୍ମାର ସଦ୍‌ଗତି ହେଉ ଓ ନର୍ଯ୍ୟାତିତ ଓଡ଼ିଆ ଜାତିପାଇଁ ତୁମ ଗୁଡ଼ କଇଁଚ କଇଁଚ ହୋଇଥିଲା । ଲେଖି ଲେଖି ତୁମର କଲମ ଥରି ଉଠୁଥିଲା । ନଜେ କାନ୍ଦିଲେ । ଓଡ଼ିଆକୁ ଚଇଦନ କନ୍ଦାଇବାକୁ ସତ୍ୟ ପ୍ରକାଶ କରିଗଲେ । କିନ୍ତୁ ଅନ୍ଧ ଓଡ଼ିଆ, ସହଜପ୍ରାଣ, ସରଳ ବିଶ୍ୱାସୀ, ମୁର୍ଖ, ଚୈତନ୍ୟ ଭକ୍ତ ଓଡ଼ିଆର ଆଖି ଫିଟିଲା ନାହିଁ । କେବେ ଫିଟିବ କେଜାଣି"? (ପୃ. ୭୭)

ବଂଗାଳର ଓଡ଼ିଆର ଜମିଦାର ହେଲେ; କିନ୍ତୁ ପ୍ରଜାଏ ଜମିଦାରଙ୍କ ଦେଖା ଦର୍ଶନ ପାଇଲେ ନାହିଁ । ଜମିଦାରଙ୍କ ନାଆଁ ଶୁଣିବା ଛଡ଼ାଏ ପ୍ରଜାଏ ତାଙ୍କ ବିଷୟରେ କିଛି ଜାଣନ୍ତି ନାହିଁ । ହାକ ଲାଭର ହାସ ଗୁହାସ କରିବେ କାହା ଆଗରେ ? ଦୁଃଖ ଜଣାଇବାକୁ ତ ଆଉ କଲିକତା ଧାଇଁଯାଇ ପାରିବେ ନାହିଁ—"ଗଲେବା ଚିହ୍ନୁଛି କିଏ ? ତା'ପରେ ଓଡ଼ିଆ ପଶୁ, ପଶୁର ପୁଣି ଦୁଃଖ କ'ଣ" ନାଏବ ବାବୁ ସର୍ବେସର୍ବା । ସେ ମଧ୍ୟ ବଂଗାଳୀ । ଜମିଦାରଙ୍କର ଯେତେବେଳେ ଯାହା ଦରକାର ମାରିପିଟି ପ୍ରଜାଙ୍କଠାରୁ ଆଦାୟ କରି ସେ ଯାହା ଅକ୍ଲେଶରେ ଯୋଗାଇ ପାରୁଛି; ତେଣୁ ଜମିଦାରଙ୍କର ଗେହ୍ଲା ପୁଅ । ଜମିଦାରଙ୍କୁ ପଗ୍ଭରେ କିଏ ? ନାଏବ ବାବୁଙ୍କ ନାମ ଶୁଣିଲେ ଗର୍ଭିଣୀ ଗାଈ ବାଟ ଛାଡ଼େ ଆଉ କାହା କଥା ପଗ୍ଭରୁଛି କିଏ ?

ଖ୍ରୀ ୧୮୬୬ ସାଲର ଭୟାବହ ଦୁର୍ଭିକ୍ଷ ପାଇଁ ଲେଖକ ବଂଗାଳି ଜମିଦାରଙ୍କ ସହିତ ଅଦୂରଦର୍ଶୀ ଓଡ଼ିଆମାନଙ୍କୁ ଦାୟୀ କରିଛନ୍ତି ।

Digitized by srujanika@gmail.com

କାରଣ ସେମାନେ ଟଙ୍କା ଲୋଭରେ ନଜର ଖାଇବା ଧାନକୁ ବିକିଦେଲେ । ତେଣୁ ଦୁର୍ଭିକ୍ଷର ପ୍ରଥମ ବର୍ଷହିଁ ଖାଦ୍ୟାଭାବ ପଡ଼ିଲା—"ଆଉବର୍ଷ ଏହିଦିନେ ଏହି ବୈଶାଖ ମାସରେ, କୁମୁଟି ମହାଜନମାନେ, ଗାଁ ଗାଁ ଘର ଘର ବୁଲି ଧାନ କିଣିବାକୁ ଲାଗିଲେ । ଆଗରୁ ଭାଉଥିଲା ଟଙ୍କାରେ ପନ୍ଦର ଗୌଣି । ମହାଜନମାନେ ଦଶ ଟଙ୍କାରେ ତିରିଶ ଗୌଣି କରି ଦେଲେ, ଲୋକେ ସୁବିଧା ଦେଖିପାଇ ବଳୁଆ ଲାଗିଲା ପରି ଘର ଦ୍ୱାର ଖାଲି କରି ଧାନ ବୁହା ଲଗାଇଲେ । କମ୍ କଥା । ଅଧିକୁ ଅଧେ, ଏସୁବିଧା କି ଛାଡ଼ିବା କଥା, ଏ ବର୍ଷଟା ଯଦି ଠାକୁର କରନ୍ତି, ଫସଲ ଫଳେ, ତେବେ ଆଉ ଭାବନା କ'ଣ ? ଜ୍ୟେଷ୍ଠ ମାସରେ ବୁଣାବୁଣି । ପୌଷ ସରିକି ଫସଲ ଉଠିବ । ନୂଆଧାନ ଅମଳ ହେବ, ତେଣିକି ନିଶ୍ଚିନ୍ତ । ବହନ ଗଣ୍ଡାକ ଛଡ଼ା ଛଅ ସାତ ମାସ ମାନିଆ ହିସାବ କରି ଧାନ ରଖି ଚାଷୀମାନେ ବଳକା ଧାନ ଛଡ଼ାଇ ଦେଇ ଅଣ୍ଟାରେ ଟଙ୍କା ଖୋସିଲେ । ଗରିବ ଚାଷୀର ଆନନ୍ଦ କହିଲେ ନ ସରେ, ନୂଆ ନୂଆ ଠିକ ଠିକ ସୁନ୍ଦର ଟଙ୍କା କେଡେ ବାଜେଣି । ପ୍ରଲୋଭନ ସମ୍ଭାଳି ରହିବା କି ଗରିବ ଓଡ଼ିଆ ପକ୍ଷରେ ସମ୍ଭବ ?

ପଛ ବୁଦ୍ଧିଆ ଜାତିଭାଇ ମୋର । ମାଡ଼ ଖାଇଲେ କଷ୍ଟ ସହିଲେ ବୁଦ୍ଧି ବାହାରେ । କୁମୁଟି ବେପାରିମାନେ ଶଗଡ଼ କରି ଧାନ ବୁହାଇଲେ । ସମୁଦ୍ର କୂଳରେ ଜାହାଜ ଠିଆ ହୋଇଛି । ଟଙ୍କାରେ କୋଡ଼ିଏ ଗୌଣି ଦରରେ ଧାନ ଦେଇ ନୂଆ ବାଜେଣୀ ଟଙ୍କା ଦେବାକୁ ଆଗ୍ରହର ସହିଁ ରହିଛି ।

ଦେଶର ଯେତେ ଧାନ ଦୁଇମାସ ଧରି ବୁହା ଲାଗିଲା । ସବୁଯାକ ପଶିଲା ଜାହାଜ ରାକ୍ଷସର ପେଟରେ । କେତେ ରାକ୍ଷସ ପୁଣି କଳାର ସମୁଦ୍ର କୂଳର ଧାନ ଗ୍ରାସ କରି ପାଲ ବାନ୍ଧି ଆନନ୍ଦରେ ଡେଣା ଉଡ଼ାଇ ସମୁଦ୍ର ସେପାରିକି ଚାଲିଗଲେ, ତାର କଳନା ନାହିଁ । କୁମୁଟି ବେପାରୀ ଅଣ୍ଟାରେ ଟଙ୍କା ଖୋସି ଘରକୁ ଫେରିଲେ । ଦେଶ ଲୋକଙ୍କ

Digitized by srujanika@gmail.com

ନଷ୍ଟାନ୍ତରେ ଘରଣୀ ମାନଙ୍କ ପାଇଁ ଗହଣା ବରାଦ ହେଲେ; ନୋହିଲେ ଝଙ୍କାରକ କରନ୍ତେ କ'ଣ ? (ପୃ. ୪୬-୪୭)

ଦେଶରେ ଆଉ ଯାହା ଧାନ ଗୃଉଳ ଥିଲା, ଏହି ସମୟରେ ବଂଗ ଦେଶର ମେଦିନୀପୁର ବର୍ଦ୍ଧମାନ ବାଙ୍କୁଡାରେ ଦୁର୍ଭିକ୍ଷ ପଡ଼ିବାର ଆଶଙ୍କା କରି ବଂଗୀୟ ଜମିଦାରମାନେ ସ୍ୱଦେଶକୁ ଗ୍ଲାଣ କଲେ । ମାଗଣାରେ ଅନ୍ନଯୋଗାଇ ବଂଗ ଦେଶରେ ନାମ ନେବା ପାଇଁ ତତ୍ପର ହେଲେ । ଫଳରେ ଓଡ଼ିଆର ସର୍ବନାଶ ହେଲା । ଖାଇବା ବିନା ଲୋକମାନେ ପୋକ ମାଛି ପରି ମରିଗଲେ । ଦେଶୀୟ ଜମିଦାର ମଠର ମହନ୍ତମାନେ ଅନ୍ନଛତ୍ର ଖୋଲିଲେ । ସେମାନେ ବା ଫର୍ଦ୍ଦାରେ କେତେ ? ସରକାରୀ ସାହାଯ୍ୟ ପାଇଁ ଇଂରେଜ ହାକିମମାନେ ବଂଗାଳୀଙ୍କୁ ସାଙ୍ଗରେ ନେଇ ଆସିଲେ । ଲୋକମାନେ ଆପତ୍ତି କଲେ; ମାତ୍ର ତାଙ୍କୁ ଭିନ୍ନ ରଙ୍ଗ ଦେଇ ସେଠାରେ ମଧ୍ୟ ଲୋକଙ୍କ ମୁହଁରେ ଧୂଳି ଦେଲେ ବଂଗାଳୀମାନେ

ଉପରୋକ୍ତ ଆଲୋଚନାରୁ ଆମେ ଔପନ୍ୟାସିକ କାହ୍ନୁଚରଣଙ୍କର ଇତିହାସ, ସଂସ୍କୃତି ସଚେତନତା ଓ ଉତ୍କଳୀୟ ପ୍ରୀତିର ସୁନ୍ଦର ନମୁନା ପାଉ । ଏହା ବ୍ୟତୀତ 'ହାଅନ୍ନ'ରେ କାହ୍ନୁଚରଣଙ୍କର ଆଉ ଗୋଟିଏ ଅସଲ ରୂପ ରହିଛି । ସେ ହେଲା ଯୁକ୍ତିବାଦୀ ଦୃଷ୍ଟିକୋଣ । ଏହି ଉପନ୍ୟାସରେ ସେ ଭାଗ୍ୟ ଭଗବାନ ଓ ଦେବାଦେବୀ ଅପେକ୍ଷା ନିଜର କର୍ମଦକ୍ଷତା ଉପରେ ଅଧିକ ଆସ୍ଥା ଆକ୍ଷେପ କରିଛନ୍ତି । ହାଅନ୍ନ ପୃଷ୍ଠାର କେତକ ଉଦାହରଣ ନେଇ ଆମର ଆଲୋଚନାର ଯୁକ୍ତିକୁ ବଳିଷ୍ଠ କରାଯାଇ ପାରେ ।

ଯେଉଁ ଦିନଠାରୁ ଓଡ଼ିଆର ବୀରତ୍ୱ ଯାଇଛି ସେହିଦିନଠାରୁ ସେ ହୋଇଛି ଭୀରୁ, ଅଥର୍ବ । ନିଜର ବାହୁବଳ ଅପେକ୍ଷା ସେ ଦେବାଦେବୀଙ୍କଠାରେ ଅଧିକ ଆସ୍ଥା ରଖିଛି । ନାନା ଅନ୍ଧ ବିଶ୍ୱାସରେ ତା'ର ଅନ୍ତର ପୂରିଯାଇଛି । କାହ୍ନୁଚରଣ ଲେଖିଛନ୍ତି—'ଗାଁରେ ହଇଜା ଲାଗିଲା × × ଠାକୁରାଣୀ ବିଜେ କଲେ । ଘରେ ଘରେ ଆତଙ୍କ ପଡ଼ିଗଲା × × × ଠାକୁରାଣୀ ଡରରେ ଘରଛାଡ଼ି ପଦାକୁ

Digitized by srujanika@gmail.com

ଗୋଡ କାଟିବାକୁ ସାହାସ ଅଛି କାହାର ? ତଥାପି ଗାଁର ସାହସି ଟୋକା କେତେ ଜଣ ଯଥା କର୍ତ୍ତବ୍ୟ ପ୍ରତିକାର କରିବାକୁ ବାହାରି ପଡ଼ିଲେ । କାଳସି ଲଗିଲ । ଗଛରୁ ପ୍ରେତାଳଆଣି କେତେ ନୂଆ କଥା କହିଲା । ଠାକୁରାଣୀ ମାର୍ଜନା ହେଲା । ଠାକୁରାଣୀ କେତେ ଲେକଙ୍କୁ ସପନେଇ କେତେ ଆଶାର କଥା ଶୁଣାଇଲେ । ନଗର କର୍ତ୍ତନ ହେଲା – ଭଜଶ୍ରୀକୃଷ୍ଣ ଚୈତନ୍ୟ ପ୍ରଭୁନିତ୍ୟାନନ୍ଦ' ବାଣୀରେ ଗାଁ ସାରା ଦୁଲୁକି ଉଠିଲା । ଟୋକାଏ ବୁଢ଼ାଏ ଖୋଳ କରତାଳ ଧରି ତନ୍ମୟ ହୋଇ ତଳ ତଳ ନାଚ ନାଚ ଗୋଡ଼ ଦରଜ କଲେ । ଗାତରେ ଘେରିକାଲି ପେଟରେ ସାହି ସାହି ବୁଲ ଭାଗବତ ପଢା ହେଲା । କୌଣସି ଠାକୁର କି ଠାକୁରାଣୀ ଆସି ହତଭାଗ୍ୟ ମଣିଷର ପିଠିରେ ପଡ଼ିଲେ ନାହିଁ, କି ହଇଜା ବନ୍ଦ ହେଲା ନାହିଁ, ବରଂ ବଢିପାଣି ପରି ବେଳକୁ ବେଳ ମାଡ଼ି ଆସିଲା ।

ସେଇଠୁ ଲେକଙ୍କ ମନରେ ପଶିଲା, ଠାକୁରଗୁଡା ଠକ, ଲଙ୍ଗୁଆ । ମଣିଷର ଭାଗ୍ୟବିଧାତା ମଣିଷ; ଠାକୁର ନୁହେଁ; ଏଇ ମଣିଷ ଯାହା କରିବ ତାହାହିଁ ହେବ । (ପୃ. ୮୦-୮୧)

ଉପନ୍ୟାସର ନାୟକ ଜଗୁ ମୁହଁରେ ଲେଖକ ବାରମ୍ବାର ଏହି ଯୁକ୍ତି ଦେଇଛନ୍ତି ଯେ ଭାଗ୍ୟ ଭଗବାନ ଅପେକ୍ଷା ମଣିଷ ହିଁ ନିଜର ଭାଗ୍ୟ ଗଠନ କରେ । କାଙ୍ଗାଳ "ଜଗୁର ବ୍ୟଥିତ ମନ ବିଦ୍ରୋହ କରି ଉଠିଲା । ଦେବତା ଯଦି ମଣିଷର ସୁଖ ଦୁଃଖ ନ ଦେଖେ ମଣିଷ କାହିଁକି ମନକୁ ଆଣିବ ? ନିଜର ବେଷ୍ଟନୀ ମଧ୍ୟରେ ମଣିଷ ଯାହା ଉପଯୁକ୍ତ ମନେକରେ, ନିଜର ଆନନ୍ଦ ପାଇଁ ସେ ତାହାହିଁ କରେ । ପାପ ପୁଣ୍ୟ ନ୍ୟାୟ ଅନ୍ୟାୟ ପ୍ରଶ୍ନ ତ ଉଠିବାର ନୁହେଁ । ତେବେ ଦେବତା ସାଙ୍ଗରେ ମଣିଷର ସମ୍ପର୍କ କ'ଣ ? ସେ କାହିଁକି ଦେବତା ଉପରେ ନିର୍ଭର କରି ରହିବ ? ଜନ୍ମିଛି, ନିଜର ବୁଦ୍ଧି ନିଜର ଶକ୍ତି ସାମର୍ଥ୍ୟ ନେଇ ସୁଖରେ ବଞ୍ଚି ରହିବାକୁ । କର୍ମପନ୍ଥାର ପ୍ରମାଦ ଦୋଷରୁ ସେ କଷ୍ଟ ପାଇ ମରେ । ତା'ପାଇ ଅନ୍ୟମାନେ କଷ୍ଟ

Digitized by srujanika@gmail.com

ଯାଆନ୍ତୁ; ମରନ୍ତୁ । ସବଳ ଯେ ସେ ଦୁର୍ବଳର ଗୁଣ୍ଡ ଉପରେ ଚାଲେ ସ୍ୱାର୍ଥ ପାଇଁ । ଏହାହିଁ ଯଦି ପ୍ରକୃତିରେ ନିୟମ, କାହିଁକି ପରର ଦୁଃଖ ଦେଖି, ଦୁଃଖରେ ପଡ଼ିଛି ରହିବ ? ବଞ୍ଚି ରହିବାକୁ ଇଚ୍ଛା ଥିଲେ ଏହିପରି କେତେ ଦୁର୍ବଳ ମଣିଷକୁ ଗୋଡ଼ରେ ଦଳି ଦେଇ ଯିବାକୁ ହେବ । ଦୁଃଖ ଅନୁକମ୍ପା ମଣିଷର ଦୁର୍ବଳତା ।" (ପୃ. ୨୨୭) ।

ଅନ୍ୟ ଏକ ପ୍ରସଙ୍ଗରେ ଗଳ୍ପର ନାୟକ ଜଗୁ ପୁଣି କହୁଛି— "ମଣିଷର ଭଲ ମନ୍ଦ ପାପ ପୁଣ୍ୟ, ସୁଖ ଦୁଃଖ ବୁଝିବାକୁ ଦେବତା କେଉଁ ଅଛନ୍ତି କି ? ହୁଏତ ଦେବତା ମିଛ ବିକୃତ ମସ୍ତିଷ୍କ, ଶୁଷ୍କପ୍ରାଣ, ବିଶ୍ଳେଷ୍ଟ ଅନ୍ଧବିଶ୍ୱାସୀ ଦାର୍ଶନିକର କଳ୍ପନାର ବସ୍ତୁ, ଅଥବା ସମାଜ ଧର୍ମର ବିଭୂତାଶ୍ରୁଷା, ଆପାଦଗ୍ରସ୍ତ ଅନୁତପ୍ତ, ଦୁର୍ବଳ ପ୍ରାଣ ମନୁଷ୍ୟର ସାନ୍ତ୍ୱନା ସହଚର । ଦେବତା ମିଛ । ଦେବତା କଳ୍ପନା । ଦେବତା ଯଦି ସତ୍ୟ, ଦେବତା ଯଦି ବାସ୍ତବ, ତେବେ ଦେବତା ଦୁର୍ବୋଧ । ଦେବତାର ମଣିଷ ସଙ୍ଗେ ସମ୍ପର୍କ ନାହିଁ । ମଣିଷ ଦେବତା ଦେବତା ହୋଇ ପାଗଳ କିନ୍ତୁ ଦେବତା କେବେ ମଣିଷ କଥା ଭାବେ ନାହିଁ ।" (ପୃ.-୨୪୭)

ସୂକ୍ଷ୍ମ ଭାବରେ ନିରୀକ୍ଷଣ କଲେ 'ହା'ଅନ୍ନ'ର ନାୟକ 'ଜଗୁହିଁ' ଲେଖକଙ୍କର ପ୍ରତିନିଧି । ଔପନ୍ୟାସିକ ଜଗୁ ଚରିତ୍ରର ଭାବନାରେ ସମଗ୍ର ଜାତିର ଦୋଷ ଦୁର୍ବଳତାକୁ ଉପସ୍ଥାପନ କରିଛନ୍ତି । ଜଗୁର ସବୁ ଥିଲା । ସମଗ୍ର ଗ୍ରାମଟିରେ ଜଗୁର ବାପା ଥିଲେ ଥିଲାବାଲା ଲୋକ । ଜଗୁ ଉଦାର, ସ୍ୱାଭିମାନୀ, ଅନ୍ୟକୁ ସାହାଯ୍ୟ କରିବା ପାଇଁ ସେ ସର୍ବଦା ପ୍ରସ୍ତୁତ; ମାତ୍ର ପରିସ୍ଥିତି ହୋଇଛି ତା'ର ପ୍ରତିକୂଳ । ପରିବେଶ ଓ ପରିସ୍ଥିତି ଯେପରି ଓଡ଼ିଆ ଜାତିର ଅବନତିର କାରଣ ହୋଇଛି, ଜଗୁକୁ ମଧ୍ୟ ସେହିପରି ପରିବେଶ ବାଧାପ୍ରଦାନ କରିଛି । ଜଗୁ ବାପାର ଯାହାଥିଲା ଏପରି ଦଶ ବର୍ଷ ଦୁର୍ଭିକ୍ଷ ପଡ଼ିଥିଲେ ମଧ୍ୟ ତା'ର କୌଣସି କ୍ଷତି ହୋଇ ନଥାନ୍ତା । ଓଡ଼ିଆ ଜାତିର ଯାହାଥିଲା ଏହିପରି ସାଧାରଣ ଦୁର୍ଭିକ୍ଷଟିଏ ତାକୁ ବିପର୍ଯ୍ୟସ୍ତ କରିପାରି ନଥାନ୍ତା । ଜଗୁର ପ୍ରତିବେଶୀମାନଙ୍କର ଆକ୍ରମଣରେ ଜଗୁର ସମ୍ପତ୍ତି ନଷ୍ଟ ହୋଇଗଲା ପରି ଓଡ଼ିଶାର ପ୍ରତିବେଶୀ ରାଷ୍ଟ୍ରର ଚକାନ୍ତ ଯୋଗୁଁ ଓଡ଼ିଆ

Digitized by srujanika@gmail.com

ଜାତି ଚଳଚଞ୍ଚଳ ହୋଇଗଲା । ଔପନ୍ୟାସିକ କେବଳ ନଅଙ୍କ ଦୁର୍ଭିକ୍ଷର ବୀଭତ୍ସ ଦୃଶ୍ୟ ଦେଖାଇବା ପାଇଁ ଦେଶରୁ ସବଂଶ ଜଗୁକୁ ବୁଲାଇ ନେଇଛନ୍ତି । ଜଗୁର ସ୍ୱାଧୀନ ଚେତନା ଯୋଗୁ ସେ ବିଭିନ୍ନ ସ୍ଥାନରେ ଆଶ୍ରାପାଇ ମଧ୍ୟ ରହି ପାରିନି । ଅନ୍ୟ ଜାତିମାନଙ୍କର ଦେଶାନ୍ତରେ ପଡ଼ି ବିଭିନ୍ନ ଦୁର୍ଦ୍ଦିନରେ ଗତି କରି ତଥାପି ଓଡ଼ିଆ ବଞ୍ଚି ରହିଛି । ସେହିପରି ଉପନ୍ୟାସର ନାୟକ ନାନାଦୁର୍ଦ୍ଦିନରେ ପଡ଼ି ମଧ୍ୟ ଉପନ୍ୟାସର ଶେଷ ପର୍ଯ୍ୟନ୍ତ ବଞ୍ଚି ରହିଛି । ଶେଷରେ ଏତିକି କୁହାଯାଇପାରେ ଯେ 'ହା'ଅନ୍ନର ସ୍ୱର କାହ୍ନୁଚରଣଙ୍କର ଅନ୍ତରର ସ୍ୱର, ଓଡ଼ିଆ ଜାତିର 'ହା'ଅନ୍ନର' ଚିତ୍କାର ।



ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ,
ସରକାରୀ ମହାବିଦ୍ୟାଳୟ,
ରାଉରକେଲା

Digitized by srujanika@gmail.com

୧

# କାହ୍ନୁଚରଣଙ୍କ ଉପନ୍ୟାସରେ ନାଟକୀୟତା

ଡକ୍ଟର ହେମନ୍ତ କୁମାର ଦାସ

ଯେଉଁ ବିଶେଷ ଲକ୍ଷଣ, ନାଟକକୁ ସାହିତ୍ୟର ଅନ୍ୟାନ୍ୟ ବିଭାଗଠାରୁ ସ୍ୱତନ୍ତ୍ର ଭାବେ ଚିହ୍ନାଇଦିଏ, ତାକୁ ନାଟକୀୟତା କୁହାଯାଇ ପାରେ । ଦେଖିବାକୁ ଗଲେ ସାହିତ୍ୟର ପ୍ରାୟ ସମସ୍ତ ବିଭାଗରେ ଅର୍ଥାତ କାବ୍ୟ, କବିତା, ଗଳ୍ପ ଉପନ୍ୟାସ ପ୍ରଭୃତିରେ ଊଣା ଅଧିକେ ଏହି ଗୁଣ ରହିଥାଏ । ତେବେ ସେଠାରେ ମୁଖ୍ୟତଃ, ସେଗୁଡିକ ବହିରଂଗକୁ ଆଶ୍ରୟ କରି ରହିଥିବାସ୍ଥଳେ, ନାଟକ ପକ୍ଷରେ ଏହାକୁ ତାହାର ଆତ୍ମା ବୋଲି କୁହାଯାଇପାରେ । ନାଟକ ଏବଂ ଉପନ୍ୟାସ ମଧ୍ୟରେ ଯେଉଁ ସୂକ୍ଷ୍ମ ପାର୍ଥକ୍ୟ ରହିଛି, ତାହା ପରସ୍ପରକୁ ପରସ୍ପରଠାରୁ ବିପରୀତ ମୁଖୀ କରି ଗଢିଛି । ନାଟକରେ ଆମେ ଦେଖୁ, କୌଣସି ବ୍ୟକ୍ତିର ସକ୍ରିୟ ଇଚ୍ଛାର ଦୃଶ୍ୟ ବା ରୂପ ଯାହା ନିଜ ଲକ୍ଷ୍ୟରେ ପହଂଚିବାନିମନ୍ତେ ସତତ ଉଦ୍ୟମଶୀଳ । ଉପନ୍ୟାସର ଉଦ୍ଦେଶ୍ୟ ପରିବେଶ କେଉଁଭାବେ ଏବଂ କେତେ ପରିମାଣରେ ବ୍ୟକ୍ତି ଜୀବନକୁ ପ୍ରଭାବିତ କରିପାରେ, ତାହା ଆଙ୍କି ଦେଖାଇବା । ଗୋଟିଏ କ୍ଷେତ୍ରରେ ବ୍ୟକ୍ତି ସ୍ୱୟଂ କ୍ରିୟାଶୀଳ, ଅନ୍ୟତ୍ର ବ୍ୟକ୍ତି ପ୍ରଭାବିତ ପ୍ରେରିତ । ଏହାହିଁ ପରସ୍ପର ମଧ୍ୟରେ ମୂଳ ପାର୍ଥକ୍ୟ । ଉଭୟର ଗତି କେବଳ ମାତ୍ର ଭିନ୍ନ ନୁହେଁ, ବରଂ ବିପରୀତ । ତେଣୁ ସମାଲୋଚକ ବ୍ରୁନେଟିୟରଙ୍କ ମତରେ ନବେଲ ଉପନ୍ୟାସର ନାଟ୍ୟରୂପ ଆଦୌ ସମ୍ଭବପର ନୁହେଁ । ନାଟକରେ ତାକୁହିଁ ରୂପାନ୍ତରିତ କରାଯାଇପାରେ, ଯେ ମୂଳତଃ ନାଟକ । କୌଣସି ଘଟଣା ମୂଳତଃ ସେଇ ପରିଣାମରେ ନାଟକ ଯେଉଁ ପରିଣାମରେ ତାର ନାୟକ ନିଜେହିଁ ନିଜର ଭାଗ୍ୟ ବିଧାତା ।

Digitized by srujanika@gmail.com

ଓଡ଼ିଆ ଉପନ୍ୟାସର ଶ୍ରେଷ୍ଠ ସ୍ରଷ୍ଟା ପଦ୍ମଶ୍ରୀ କାହ୍ନୁଚରଣ ବିଗତ ଚତୁଃସ୍ତ ଦଶକରୁ ନିୟମିତ ଭାବରେ ଉପନ୍ୟାସ ରଚନା କରି ଆସୁଛନ୍ତି । ଏ ମଧ୍ୟରେ ତାଙ୍କର ରଚନା ଉଭୟ ପରିମାଣ ଏବଂ ଗୁଣରେ ବିପୁଳାକାର ପରିଗ୍ରହ କରିଛି । ସେ ଗୁଡ଼ିକ ମଧ୍ୟରେ ଶାସ୍ତି, ହା'ଅନ୍ନ, ଭୁଣ୍ଡ ବାଇଦ, ଝଞ୍ଜା, ଅଭିନେତ୍ରୀ, କା'; ବଜବାହୁ, ସତ୍ୟବତୀ, ଏବଂ କ୍ଷଣ କ୍ଷଣକେ ଆନ ପ୍ରଭୃତି ଉପନ୍ୟାସଗୁଡ଼ିକ ଉଭୟ ଗଠନ ଏବଂ ବକ୍ତବ୍ୟ ଦୃଷ୍ଟିରୁ ଅନନ୍ୟ ହୋଇରହିଛି । ପ୍ରତ୍ୟେକ ଉପନ୍ୟାସରେ କାହ୍ନୁଚରଣ ଗ୍ରହଣ କରିଛନ୍ତି ଏକ ନୂତନ ସାମାଜିକ ସମସ୍ୟାକୁ ଏବଂ ତାହାର ବିଶ୍ଳେଷଣ ମଧ୍ୟ କରିଛନ୍ତି । ଯାହା ହେଉ, କାହ୍ନୁଚରଣଙ୍କ ଔପନ୍ୟାସିକ ଗୁରୁତ୍ୱ ପ୍ରମାଣ ଆମର ଲକ୍ଷ୍ୟ ନୁହେଁ । ତାଙ୍କର ଉପ-ନ୍ୟାସରେ ନାଟ୍ୟଧର୍ମିତାର ଯେଉଁ ବିଳକ୍ଷ ସ୍ପର୍ଶ ରହିଛି, ସେଥିରୁ କିଛି ଦେଖାଇ ଦେବାହିଁ ଏହି ପ୍ରବନ୍ଧର ଲକ୍ଷ୍ୟ ।

କାହ୍ନୁଚରଣଙ୍କ ଔପନ୍ୟାସିକ ସତ୍ତାମଧ୍ୟରେ ଏକ ନାଟ୍ୟକାରର ଆତ୍ମା ଛପି ରହିଥିବା ଭଳି ସର୍ବଦା ଅନୁଭୂତ ହୋଇଥାଏ । ଚରିତ୍ର କଳ୍ପନା, ଘଟଣା ସଂଯୋଜନ, ପରିବେଶ ସୃଷ୍ଟି, ସଂଳାପରଚନା, ଦ୍ୱନ୍ଦ୍ୱ ସଂଘାତର ପ୍ରୟୋଗ ପ୍ରଭୃତିରୁ ପୂର୍ବୋକ୍ତ ମତର ପୋଷକତା ମଧ୍ୟ ହୋଇଥାଏ । ଚରିତ୍ର କଳ୍ପନା ବିଷୟଟିକୁ ଧରାଯାଉ । ନାଟକର ଚରିତ୍ର ଲକ୍ଷ୍ୟରେ ପହଂଚିବା ନିମନ୍ତେ ସତତ ସଂଗ୍ରାମଶୀଳ ଏବଂ ଏହାର ନାୟକ/ନାୟିକା 'are truly the architects of their destiny.' ଚରିତ୍ର କେଉଁ ଧରଣର ବାଧା ବିରୁଦ୍ଧରେ ସଂଗ୍ରାମ କରୁଛି; ସେଥିରୁ ହିଁ ତାହାର ନାଟକୀୟତା ଜଣାଯାଏ । ବାଧା ଯେଉଁଠାରେ ଅଲଂଘ୍ୟ, ନିୟତି ନିୟନ୍ତ୍ରିତ ସେଇଠାରେ ହିଁ ନିର୍ମଳ ଟ୍ରାଜେଡି । ଏ ଧରଣର ନାଟକରେ ପୁଣି ଘଟଣା ପରମ୍ପରା ସାଧାର-ଣତଃ ଅତ୍ୟନ୍ତ ଭୟଙ୍କର ଏବଂ ଉପସଂହାର ଶୋଚନୀୟ, କାରଣ ଏଠାରେ ନିୟତି ବିରୁଦ୍ଧରେ ମଣିଷ ଯେଉଁ ସଂଗ୍ରାମରେ ପ୍ରବୃତ୍ତ ହୁଏ, ସେହି ସଂଗ୍ରାମ ହିଁ ଶେଷରେ ତାକୁ ପର୍ଯ୍ୟୁଦସ୍ତ କରେ । ଆରିଷ୍ଟୋ-ଫାନସ୍, ୟୁରିପାଇଡସ୍, ସୋଫୋକ୍ଲିସ୍ ପ୍ରଭୃତି ଗ୍ରୀକ୍ ନାଟ୍ୟକାର

Digitized by srujanika@gmail.com

ମାନଙ୍କର ପ୍ରଖ୍ୟାତ ନାଟକ ଏବଂ ସେକସ୍‌ପିୟରଙ୍କର ହାମ୍‌ଲେଟ୍, ରୋମିଓଜୁଲିଏଟ୍, କିଂଲିୟର୍, ଅଥେଲୋ ପ୍ରଭୃତି ଟ୍ରାଜେଡି ଗୁଡ଼ିକରେ ବ୍ୟକ୍ତି ସଂଗ୍ରାମର ଏକ ଦୟୂଶାର୍ଦ୍ଧ ରୂପ ଦର୍ଶକ ଦେଖନ୍ତି ।

କାହ୍ନୁଚରଣଙ୍କର ଅଧିକାଂଶ ଉପନ୍ୟାସ ଏଇ ଧରଣର ସଂଗ୍ରାମୀ ମଣିଷର ଚରିତ୍ରରେ ପରିପୂର୍ଣ୍ଣ । ଶାସ୍ତି ଉପନ୍ୟାସର ନାୟକ ନାୟିକା ସନିଆ ଏବଂ ଧୋବୀକୁ ଉଦାହରଣ ସ୍ୱରୂପ ନିଆଯାଉ । ମଣିଷ ପିଲା ସନିଆ ଜଣେ ସାଧାରଣ ମଣିଷ ହିସାବରେ ବିଧାତାଙ୍କ ଦରବାରରେ ମୁଣ୍ଡଟେକି ଠିଆ ହେବାକୁ ଚାହିଁଥିଲା । ଘରେ ଧନ ନଥିଲା, ଦେହରେ ଏବଂ ମନରେ ପ୍ରଚଣ୍ଡ ବଳଥିଲା । ତାକୁହିଁ ସମ୍ବଳ କରି ସେ ଭାଗ୍ୟ ବିରୁଦ୍ଧରେ ଅଣ୍ଟାଭିଡ଼ିଥିଲା । ପ୍ରଥମେ ତା'ବାଟରେ ଠିଆ ହେଲେ ତା'ର ଜନ୍ମଦାତା ବନେଇ । ତୁଚ୍ଛ ଜାତିଗତ କାରଣରୁ ସେ ଧୋବୀ ସହିତ ତାହାର ବିବାହ ସମ୍ପର୍କକୁ ଭାଂଗିଦେଲେ । ଦୁର୍ଭିକ୍ଷର ପ୍ରବଳ ଝଂଜାରେ ସନିଆ ଭାସିଗଲା ସିନା, ମାତ୍ର ହଜିଗଲା ନାହିଁ । ଅନେକ ଘାଟର ଜଳପିଇ ସେଇ ସଂଗ୍ରାମୀ ମଣିଷ ପିଲାଟି ପୁଣି ଥରେ ନିଜ ଜନ୍ମଭୂମିର ଘାଟରେ ମୁଣ୍ଡଟେକି ଭାସି ଉଠିଲା ଦେହରେ ଛତରଖିଆର ଷ୍ଟାମ୍ପ ମାରି । ଏଥର ପୁଣି ନୂତନ ରୂପରେ ଭାଗ୍ୟବିରୁଦ୍ଧରେ ତା'ର ସଂଗ୍ରାମ ଆରମ୍ଭ ହେଲା । ଜାତିହେଲା, ଜମି କିଣି ଦଶଜଣରେ ଜଣେ ହୋଇ ଠିଆ ହେବା ନିମନ୍ତେ ପ୍ରାଣ-ମୂର୍ଚ୍ଛା ଉଦ୍ୟମ କରି ଚାଲିଲା । ମନ ଆକାଶରେ ଧ୍ରୁବତାରାପରି ତାର ଜଳୁଥିଲା, ଗୋଟିଏ ମାତ୍ର କାମନା । ଯଦି କେବେ ତା'ର ମନର ମଣିଷ ଶୂନ୍ୟ ଗୃହକୁ ପୂର୍ଣ୍ଣ କରିବାକୁ ଆଗେଇ ଆସେ ! ମାତ୍ର ବର୍ଷାଧୂଆ ସେଇ କରାଳ ଝଡ଼ରାତିରେ ଧୋବୀ ପାଖରୁ ଫେରିବା ପରେ ତା'ର ସମସ୍ତ ସ୍ୱପ୍ନ ଭାଂଗିଗଲା । ସେ ଭାବିଲା, ଏଥର ପୁଣି ତା'ର ନିରୁଦ୍ଦେଶ ପଥରେ ଯାତ୍ରା କରିବାର ସମୟ ଆସିଯାଇଛି । କ୍ରୀଡ଼ା ଚପଳ ଶିଶୁ ଯେଉଁଭଳି ନିଜହାତରେ ତା'ର ଅତିପ୍ରିୟ ଖେଳଘରକୁ ଭାଂଗିଦେଇ ପଳାଏ, ଠିକ୍ ସେଇପରି ସନିଆ ନିଜର ରକ୍ତ ଦେଇ ଗଢ଼ା ଅତିପ୍ରିୟ

Digitized by srujanika@gmail.com

ଧନସମ୍ପତ୍ତି ଘରଦ୍ୱାର ଛାଡ଼ିଦେଇ ନିଜର ଛତରଖିଆ ଦଳକୁ ସାଙ୍ଗରେ ନେଇ ଅଂଧାରରେ ମିଳାଇଗଲା । ନିବେଦନ କରିଗଲା; ତୁଚ୍ଛ ଧନସମ୍ପତ୍ତିକୁ ତା'ର ମନର ଦେବତା ନିକଟରେ ।

ସନିଆଁ ଜୀବନରେ ଥିଲା ଗୋଟିଏ ଲକ୍ଷ୍ୟ । ତା'ର ସେଇ ଦୃଢ଼ଇଚ୍ଛା a will striving towards a goal and conscious of the means which it employs- ହିଁ ତାକୁ ଶେଷ ପର୍ଯ୍ୟନ୍ତ ଲକ୍ଷ୍ୟଚ୍ୟୁତ କରିପାରିନାହିଁ । ଏହା ପୁଣି ତା'ର ଚରିତ୍ରକୁ ଗତିମୁଖର କରି, ନାଟକୀୟ କରି ଗଢ଼ିଛି । ସକ୍ରିୟଇଚ୍ଛାର କ୍ରମ ପରିମାଣ କେବଳ ନାଟକରେ ଗତି ସୃଷ୍ଟି କରିପାରେ । ସନିଆଁ ଚରିତ୍ରରେ ଆମୂଳ ଏହାର ସ୍ପର୍ଶ ଦେଖିବାକୁ ମିଳିବ । ବ୍ୟକ୍ତିଗତ ଜୀବନରେ ସନିଆଁର ପତନକୁ ଆମେ ପ୍ରାକୃତିକ ନିୟମତନ୍ତ୍ର କିମ୍ବା ମୋହାନ୍ଧ ଦୁନିଆର ବାସନା କିମ୍ବା ଆଭ୍ୟନ୍ତରୀଣ ନିୟତି ଯାହା କହୁନା କାହିଁକି, ଏ ସବୁହିଁ ତାକୁ ଗତିଶୀଳ କରାଇଛି । ନିୟତିର ଚକ୍ରାନ୍ତରେ ଦୁନିଆର ରାଜଦାଣ୍ଡରୁ ତାକୁ ଶୂନ୍ୟହାତରେ ଫେରିବାକୁ ହୋଇଛି । ସେ ଦେଶର ହାମ୍‌ଲେଟ୍, ମାକ୍‌ବେଥ୍, ରାଜାଲିୟର କିମ୍ବା ଅଥେଲୋ ପ୍ରଭୃତିଙ୍କର ଜୀବନ ଯେଉଁ ନିୟତିର ଷଡ଼ଯନ୍ତ୍ରରେ ପର୍ଯ୍ୟୁଦସ୍ତ ହୋଇଥିଲା, ସନିଆଁର ଜୀବନରେ ତାହାର ବ୍ୟତିକ୍ରମ ଦେଖିବାକୁ ମିଳେ ନାହିଁ । ତ୍ରାସ ଏବଂ କରୁଣା ସୃଷ୍ଟି କରିବା ସେ ଦେଶର ଟ୍ରାଜେଡି ନାଟକର ଏକ ପ୍ରଧାନ ବିଶେଷତ୍ୱ ବୋଲି କୁହାଯାଉଛି । ଟ୍ରାଜେଡ଼ିର ଚରିତ୍ର ଗୁଡ଼ିକ ବିଶେଷ ଭାବରେ ମାନବୀୟ ଗୁଣ ଦୋଷ ସମ୍ପନ୍ନ ସତ୍ତା । ମାନବିକତାର କଷଟୀରେ ସେମାନଙ୍କର ପରୀକ୍ଷା କରାଯାଇଥାଏ । ସେମାନଙ୍କ ଭିତରେ ସମଗ୍ର ମାନବ ଜାତି ଦେଖେ ନିଜକୁ । ତ୍ରାସ ବା ଭୟ ମଣିଷକୁ ଦୁର୍ବଳ କରିଦିଏ, ପରିଣାମରେ ପରିସ୍ଥିତି ତା'ର ନିୟନ୍ତ୍ରଣର ବାହାରକୁ ଚାଲିଯାଏ ଏବଂ ସେ ଦୁଃଖ ପାଏ । ତେବେ ଏଥିରେ କାର୍ଯ୍ୟର ପ୍ରାଧାନ୍ୟ ଶେଷ ପର୍ଯ୍ୟନ୍ତ ରହିଥାଏ । ରୋମିଓ ଜୁଲିଏଟ୍‌ଙ୍କ ପ୍ରେରିତ ସମ୍ବାଦ ପାଇପାରେ ନାହିଁ,

Digitized by srujanika@gmail.com

କିମ୍ବା ଡେସ୍‌ଡମୋନା ନିଜର ରୁମାଲ୍‌ଟିକୁ ସାବଧାନରେ ରଖିପାରେ ନାହିଁ । ପରିଣାମରେ ଉଭୟଙ୍କୁ ତେଣୁ ଦୁଃଖଭୋଗ କରିବାକୁ ପଡ଼େ । ସେକସ୍‌ପିୟର୍‌ଙ୍କ ନାଟକ ସମ୍ପର୍କରେ କୁହାଯାଇଛି, "Chance plays a part. xxx That man may start a course of event but can neither calculate nor control it, is a tragic fact." Shakespearean Tragedy. 1958 P. 9 ନିଷ୍କର୍ଷ ହେଉଛି ପ୍ରତ୍ୟେକ ମଣିଷ ଦୈବହସ୍ତର ଏକ କ୍ରୀଡ଼ନକ ମାତ୍ର । ଟ୍ରାଜିକ୍ ଚରିତ୍ର ତେଣୁ କେଉଁଠି Chance କେଉଁଠି ଅବା Fate ଦ୍ୱାରା ଖେଳଣା ଭଳି ଚାଳିତ ହେଉଥାଏ ।

ସନିଆଁ ଆମୂଳାନ୍ତ ଏକ ଟ୍ରାଜିକ୍‌ଚରିତ୍ର ଏବଂ ଯେ କୌଣସି ଏକ ସଫଳ ଟ୍ରାଜେଡ଼ିର ନାୟକ ସୁଲଭ ସମସ୍ତ ଗୁଣ ଏହାଠାରେ ରହିଛି । ବାରମ୍ବାର ସଫଳତାର ପାନପାତ୍ରଟିକୁ ପୁରୁଷକାର ତା' ହାତରେ ଟେକି ଦେଇଛି, ମାତ୍ର ଥରେ ହେଲେ ସେ ତାକୁ ପାନ କରିପାରି ନାହିଁ । ଥରକୁ ଥର ତାହା ତା' ମୁହଁ ପାଖରୁ ଖସି ପଡ଼ୁଛି । ତେଣୁ ନିୟତି ବିରୁଦ୍ଧରେ ପ୍ରତିବାଦ ଜଣାଇ ସେ ବିଦାୟ ନେଇଛି । ପୁରୋହିତ ପ୍ରହ୍ଲାଦଙ୍କ ଭବିଷ୍ୟତ୍ ବାଣୀ 'ବେଙ୍ଗ କହେ ବେଙ୍ଗୁଲିଲେ ମହି କ୍ଷଣ କ୍ଷଣକେ ଆନ' ହିଁ ତା'ର ଜୀବନରେ ଅତି ଶୋଚନୀୟ ଭାବରେ ସତ୍ୟ ହୋଇଛି । ତା'ର ବ୍ୟର୍ଥ ଜୀବନରେ ବିଫଳ ଦୀର୍ଘଶ୍ୱାସ ସମଗ୍ର ମାନବଜାତିର ଅନ୍ତରକୁ ଥରାଇ ଦେଇଛି । ଧୋବୀ ପାଖରେ ତା'ର ଦୟନୀୟ ଉପସ୍ଥିତି କାରୁଣ୍ୟର ଧାର ବୁହାଇ ଦେଇଛି । ବିଶେଷକରି ତା'ର ଜୀବନ ହେଉଛି ନାଟକୀୟତାର ଏକ ଖୋଲା ପୁସ୍ତକ । ଅନ୍ତତଃ ଘଟଣାବଳୀର ସଂଯୋଜନରୁ ତାହାହିଁ ଦେଖା ଯାଉଛି । ଶାନ୍ତ ସରଳ ଏକ ନିରୁପଦ୍ରବ ଜୀବନବୃତ୍ତ ମଧ୍ୟରୁ ଅନିଶ୍ଚିତତା ମଧ୍ୟରେ ତାହାର ନିମଜ୍ଜନ, ସ୍ମୃତିର ବହଳ ଅନ୍ଧକାର ଗର୍ଭରୁ ଏକଦା ତାହାର ଆତ୍ମ ପ୍ରକାଶ, ବିଧବା ଧୋବୀର ପ୍ରେରଣାରେ ପୁଣି ସ୍ଥିତିଶୀଳତା ନିମନ୍ତେ ସଂଗ୍ରାମ, ଏବଂ ଶେଷରେ ଧୋବୀର ପଦଏ

Digitized by srujanika@gmail.com

ମାତ୍ର କଥାରେ ସର୍ବସ୍ୱ ତ୍ୟାଗ କରି, ସଂସାର ସମୁଦ୍ରରେ ଆତ୍ମ ନିମଜ୍ଜନ—ଏ ସମସ୍ତ ଘଟଣା ରୋମାଞ୍ଚକର, ବିସ୍ମୟ ଏବଂ କରୁଣା ସୃଷ୍ଟିକ୍ଷମ, ଅବିଶ୍ୱାସ ଭାବରେ ବିଶ୍ୱାସଯୋଗ୍ୟ, ଚମତ୍କାରିତାରେ ଅନନ୍ୟ ଏବଂ ତେଣୁ ପ୍ରଚଣ୍ଡ ଭାବରେ ନାଟକୀୟ ।

ନାୟିକା ଧୋବୀ ସୁଦ୍ଧା ନୈବ୍ୟକ୍ତିକ ଚେତନାର ବହିର୍ଭୂତ ନୁହେଁ । ତା'ର ଜୀବନ ମଧ୍ୟ ନାଟକୀୟତା ଶୂନ୍ୟ ନୁହେଁ । ନିୟତିର ଷଡ଼ଯନ୍ତ୍ର, ଦୁର୍ଭିକ୍ଷ ଯାହାର ବାହ୍ୟରୂପ—ତାକୁ ହୃତସର୍ବସ୍ୱ କରି ଶିକ୍ତ ହାତରେ ଗ୍ରାଡ ଦେଇଛି । ସନିଆଁ ଦୂରେଇଯାଇଛି, ସ୍ୱାମୀର ମୃତ୍ୟୁ ହୋଇଛି—ବଂଚିତା ଏକ ସ୍ମୃତି ସର୍ବସ୍ୱ ନାରୀ ଫେରି ଆସିଛି ପିତୃ ଆଳୟକୁ । ଭାଇକୁ ପୁଅ କରୁଛି । ସନିଆକୁ ସାହାଯ୍ୟ କରୁଛି । ଫେରି ଯାଉଛି ସ୍ୱାମୀ ଗୃହକୁ, ଯେଉଁଠୁ ନିରୁପାୟ ଭାବରେ ସନିଆକୁ ଖାଲି ହାତରେ ଫେରାଇ ଦେଇ ଭଙ୍ଗା ମନରେ ପଥରର ଦେବତାଙ୍କ ଚରଣରେ ନିଜକୁ ଲୋଟାଇ ଦେଇ ଆଖି ବୁଜି ପ୍ରାର୍ଥନା କରୁଛି, ତାକୁ ମୂକ, ପଥର, ନୀରବ କରି ଦେବାକୁ । ଭାଗ୍ୟ ହାତରେ ତାକୁ ମଧ୍ୟ ଘୂରି ବୁଲିବାକୁ ହୋଇଛି । ନିଜ ହାତରେ ନିଜର ମୃତ୍ୟୁ ଦେବତାକୁ ଆବାହନ କରି ଆଣି ପ୍ରମାଣ କରି ଦେଇଛି ଯେ, ମଣିଷ ନିଜେହିଁ ନିଜର ସୁଖ ଦୁଃଖର ବିଧାତା । ଧୋବୀକୁ ଘେରି ଯେଉଁ ଅସହାୟ ନିରୁପାୟତାର ଚିତ୍ର ଅଙ୍କିତ ହୋଇଛି, ତାହାହିଁ ତାକୁ ନୈବ୍ୟକ୍ତିକ ଚେତନାର କେନ୍ଦ୍ରବିନ୍ଦୁରେ ସ୍ଥାପନ କରି ଦେଇଛି । ତାର ଚରିତ୍ରରେ ସୁଦ୍ଧା ନାଟକୀୟତାର ଅଭାବ ନାହିଁ ।

ମୋଟା ମୋଟି ଭାବରେ ତେଣୁ କୁହାଯାଇ ପାରେ ଯେ, ଦୁଃସହ ଏକ ମର୍ମବାହୀ ବେଦନା ସମଗ୍ର ଉପନ୍ୟାସର ଅନ୍ତଃସ୍ୱର ମଧ୍ୟରେ ତୀବ୍ର ଗତିରେ କ୍ରିୟାଶୀଳ । ଏହାହିଁ ପୁଣି ଉପନ୍ୟାସର ଚରିତ୍ର, ଘଟଣା ଏବଂ ପରିବେଶକୁ ପ୍ରଭାବିତ କରି ତହିଁରେ ନାଟକୀୟ-ତାର ସ୍ପର୍ଶ ବୋଳି ଦେଇଛି । ଆଭିଜାତ୍ୟର ନକଲି ଅହଂକାର ସ୍ଫୀତ-ଚିତ୍ତେଇ ସୋଇଁ, ମଧୁ ଭୋଇର ନିଷ୍ପାପ ଘରଣୀ ଧୂନି, ଦ୍ୱଣିତ କାମନାର ଦୟନୀୟ ଶିକାର କଇଁ ବାଉଆଣୀ । ସମଷ୍ଟ ଉପନ୍ୟାସର

Digitized by srujanika@gmail.com

ମୁଖ୍ୟ ଚେତନାକୁ ସ୍ପୃଷ୍ଟ କରିଛନ୍ତି, ନାଟକୀୟ କରିଛନ୍ତି; ଏଥିରେ ସନ୍ଦେହ ନାହିଁ ।

ସେଇଭଳି 'ହା ଅନ୍ନ' ଉପନ୍ୟାସର ଜଗୁ ଏବଂ ଜମା । ସବୁ ଥାଇ ମଧ୍ୟ ଜଗୁ ହୋଇଛି ସମ୍ରାଟ ଭିକାରୀ । ସବୁ ହରାଇ ପୁଣି ଜମା ହୋଇଛି ଅନ୍ନପୂର୍ଣ୍ଣା । ସଦାଜାଗ୍ରତ ଏକ ପ୍ରହରୀ ପରି ଜଗୁର ଚିନ୍ତା ଜମାକୁ ଘେରି ରହିଛି । ମାତ୍ର ସେ ହାତ ବଢ଼ାଇ ତାକୁ ଟାଣି ନେଇ ନାହିଁ । ଜାତିଗତ ବ୍ୟବଧାନ ଉଭୟଙ୍କୁ ଉଭୟଙ୍କଠାରୁ ପୃଥକ୍ କରି ରଖିଛି । ମୃତ୍ୟୁ ଶଯ୍ୟାରେ ଜଗୁ ପୁଣି ଭେଟିଛି ଜମାକୁ । ଭାଗ୍ୟ ହିଁ ଏଠାରେ ସବୁଠାରୁ ବଡ଼ ଅଂଶ ଗ୍ରହଣ କରିଛି । କେତେବେଳେ ଜଗୁକୁ ଉପରକୁ ଟେକୁଛି ତ କେତେବେଳେ ପୁଣି ତଳକୁ ମାଡ଼ୁଛି । ତଥାପି ଜଗୁ ସହିଷ୍ଣୁ ଭାବେ ନିଜ ଲକ୍ଷ୍ୟରେ ପହଂଚିବାକୁ ଚେଷ୍ଟା ଚଳାଇ ଯାଉଛି । ଉପନ୍ୟାସଟି ଅବଶ୍ୟ ମିଳନାତ୍ମକ ।

ଭାଗ୍ୟ ବିରୁଦ୍ଧରେ ସଂଗ୍ରାମଶୀଳ ମନୁଷ୍ୟ, ଯେଉଁଠି ବିଜୟର ସମ୍ଭାବନା ଦେଖେ, ତା' ଭିତରର କାମନା କିମ୍ବା ମୋହକୁ ଜୟ କରିବାର ଶକ୍ତି ତଥାପି ତାହାଠାରେ ଥାଏ । ମନେ କରାଯାଉ, ଯେଉଁ ବାଧା ସେ ଅତିକ୍ରମ କରିବାକୁ ଚେଷ୍ଟା କରୁଛି, ସେଇ ବାଧା ସୃଷ୍ଟି ହୋଇଛି, ତା' ନିଜ ଭଳି କୌଣସି ମଣିଷ—ଯେମିତି ମଣିଷର କୁସଂସ୍କାର କିମ୍ବା ସାମାଜିକ କୁପ୍ରଥା ଏବଂ ତାହା ମନୁଷ୍ୟ ସୃଷ୍ଟି ବୋଲି ଲଂଘନୀୟ—ତାହା ସୁଦ୍ଧା ନାଟକୀୟ—ଜଗୁର ସଂଗ୍ରାମ ଏଠାରେ ସାମାଜିକ କୁପ୍ରଥା ବିରୁଦ୍ଧରେ, ବଦ୍ଧମୂଳ ଏକ ସଂସ୍କାର ବିପକ୍ଷରେ । ବିଷୟଟି ଘେମାଣ୍ଟିକ୍ ନାଟକ ପର୍ଯ୍ୟାୟର । ସେଇଭଳି 'ଅଦେଖାହାତ' କିମ୍ବା 'ଭୃଣ ବାଇଦ' ଉପନ୍ୟାସର ବିଷୟ କରାଯାଇପାରେ । ଦ୍ୱନ୍ଦ୍ୱ ଏଠାରେ ପ୍ରଥମ କ୍ଷେତ୍ରରେ ସ୍ଥାପିତ ନିୟତିର ଇଚ୍ଛା ମଧ୍ୟରେ ଏବଂ ଦ୍ୱିତୀୟ କ୍ଷେତ୍ରରେ ଏହା ପୁଣି ରହିଛି ସଚେତନ ଏବଂ ସଂଗ୍ରାମୀ ବ୍ୟକ୍ତିର ଇଚ୍ଛା କିମ୍ବା ସମାଜ ବ୍ୟବସ୍ଥାର ଅନ୍ତଃସ୍ଥଳରେ । 'ଅଦେଖାହାତ'ର ଗୀତା କିମ୍ବା 'ଭୃଣ ବାଇଦ'ର

Digitized by srujanika@gmail.com

ତୁଳସୀ—କାହାର ଲକ୍ଷ୍ୟ ତୀବ୍ର ଇଚ୍ଛା ଶକ୍ତିର ଗତିବେଗ ଦ୍ୱାରା ଶ୍ଳଥ ନୁହେଁ । ତେଣୁ ସେମାନେ ପ୍ରକୃତରେ ଟ୍ରାଜିକ୍ ଚେତନା ବହନ ନକରି, ଟ୍ରାଜି-କମିକ୍ ଚେତନାର ଧାରକ ହୋଇଥିଲେହେଁ ଅନାଟକୀୟ ନୁହନ୍ତି ।

ନାଟକ ଯେହେତୁ ଦୃଶ୍ୟ କାବ୍ୟ ଅର୍ଥାତ୍ ଅଭିନୟ, ନିର୍ଦ୍ଦିଷ୍ଟ ସମୟ ଦ୍ୱାରା ଅଭିନୟ ସୀମାବଦ୍ଧ, ସେଇ କାରଣରୁ ନାଟକର ଗଠନ ସଂହତ ହେବାକୁ ବାଧ୍ୟ । ତେଣୁ ଆବେଗ ହେଉ କିମ୍ବା ଅପ୍ରତ୍ୟାଶିତ ବା ଅଦ୍‌ଭୁତ ଘଟଣା ହେଉ, ବା ସଙ୍କଟଜନକ ପରିସ୍ଥିତି ହେଉ, ସେସବୁକୁ ଦ୍ରୁତଲୟରେ ବିନ୍ୟାସ କରିବାକୁ ହୋଇଥାଏ ଏବଂ ତହିଁରେ ଦର୍ଶକ ଶତ୍ତ ଆକର୍ଷଣ କରିଉଳ ଉପା-ଦାନର ବ୍ୟବସ୍ଥା ମଧ୍ୟ କରିବାକୁ ହୋଇଥାଏ । ତା'ଛଡ଼ା ଦ୍ୱନ୍ଦ୍ୱକୁ 'ଦୃଶ୍ୟ' ରୂପ ପ୍ରଦାନ କରିବାକୁ ହେଲେ, ଦୁଇଶକ୍ତି ଅର୍ଥାତ୍ ବ୍ୟକ୍ତି ଏବଂ ମାନସିକତା ମଧ୍ୟରେ ଯୁଝାମଣାର ପ୍ରତ୍ୟକ୍ଷ ରୂପ ଉପସ୍ଥାପନ କରିବାକୁ ହୋଇଥାଏ । ଉପନ୍ୟାସରେ ଦ୍ୱନ୍ଦ୍ୱ ବର୍ଣ୍ଣିତ, ନାଟକରେ ତାହା କିନ୍ତୁ ପ୍ରତ୍ୟକ୍ଷୀଭୂତ । ଏ ଦୃଷ୍ଟିରୁ କାହ୍ନୁ ଚରଣଙ୍କର 'ଅଭିନେତ୍ରୀ' ଉପନ୍ୟାସଟିକୁ ବିଶ୍ଳେଷଣ କରାଯାଇପାରେ । ଜଣକ ମଧ୍ୟରେ ଅନ୍ୟ ଜଣକ ସତ୍ତାର ଉପସ୍ଥାପନାର ମୂଳ କଳ୍ପନାଟିହିଁ ହେଉଛି ଅତ୍ୟନ୍ତ ନାଟକୀୟ । ବିଧବା ମାୟାକୁ ସୁଖୀ କରିବା ନିମନ୍ତେ ମୃତା ଗ୍ରୟାର ଖୋଳ ମଧ୍ୟରେ ତାହାର ଆତ୍ମଗୋପନ, ସ୍ୱଚ୍ଛନ୍ଦତା ଦୃଷ୍ଟିରୁ ଯାହା ହେଉନା କାହିଁକି, ମଞ୍ଚ ପାଇଁ ଯେ ଏକାନ୍ତ ଉପ-ଯୋଗୀ—ଏ ବିଷୟ ଯେ କେହି ସ୍ୱୀକାର କରିବେ । ଅଭିନେତ୍ରୀ ଉପନ୍ୟାସରେ କାଳର ଯେଉଁ ସୀମା ଗ୍ରହଣ କରାଯାଇଛି; ତାହା ଖୁବ୍ ବେଶୀ ନୁହେଁ । ମାୟାର ବିବାହ ଏବଂ ବିଧୂର ମୃତ୍ୟୁ, ଗ୍ରୟାର ମୃତ୍ୟୁରେ ନୂତନ ମାୟାର ଆତ୍ମପ୍ରକାଶ, ଗଗନ ସହିତ ତାହାର ବିବାହ ଏବଂ ଅନ୍ତର୍ଦ୍ୱନ୍ଦ—ମୋଟାମୋଟି ଏଇ କେତୋଟି ଘଟଣାହିଁ ସଂହତ ରୂପରେ, ଗୋଟିକ ପରେ ଗୋଟିଏ ଦ୍ରୁତ ତାଳରେ, ଗୋଟିଏ ଅନ୍ୟଟିର ସ୍ୱାଭାବିକ ପରିଣତି ରୂପରେହିଁ ବିନ୍ୟସ୍ତ

Digitized by srujanika@gmail.com

ହୋଇଛି । ରୁଗ୍ଣା ରୂପିଣୀ ମାୟାର ଶକ୍ତି ଅନ୍ତର୍ଦ୍ଵନ୍ଦର ଚିତ୍ର ପୁଣି ନାଟକୀୟତାର ବିଶେଷ ଉପାଦାନ ହୋଇଛନ୍ତି । କଥାବସ୍ତୁର ସଂହତ ରୂପ, ଘଟଣା ବିନ୍ୟାସର ଦୃଶ୍ୟ ଲମ୍ବ ଏବଂ ସଙ୍କଟର ପ୍ରତ୍ୟକ୍ଷୀଭୂତ ରୂପ—ପ୍ରଭୃତି ନାଟକୀୟତାର ସମସ୍ତ ଉପକରଣ 'ଅଭିନେତ୍ରୀ' ଉପନ୍ୟାସରେ ବିଦ୍ୟମାନ ବୋଲି ସ୍ୱୀକାର କରାଯାଇପାରେ । ଆବେଦନପୂର୍ଣ୍ଣ ବିଷୟବସ୍ତୁ ନିର୍ବାଚନ ଏବଂ ସରସ ବୃତ୍ତ କଳ୍ପନା ଦ୍ୱାରା ଔପନ୍ୟାସିକ ଏହାର ଦର୍ଶକଚିତ୍ତ ଅନୁରଞ୍ଜନୀ କ୍ଷମତାକୁ ବଢାଇ ଦେଇଛନ୍ତି । ଶିଳ୍ପର ସାର୍ଥକତା ସମଗ୍ରତାରେ ଏବଂ ରସାତ୍ମକତା ହେଉଛି ସମଗ୍ରତାର ଏକ ବିଶେଷ ଉପାଦାନ । ରସାତ୍ମକ କାହାଣୀ କଳ୍ପନା ଶକ୍ତି ନାଟ୍ୟକାର ଏବଂ ଔପନ୍ୟାସିକ ଉଭୟଙ୍କର ସାଧାରଣ ବୈଶିଷ୍ଟ୍ୟ । କରୁଣ ରସର କୂଳ ପ୍ଳାବନୀ ସ୍ରୋତରେ ସମଗ୍ର 'ଅଭିନେତ୍ରୀ' ଉପନ୍ୟାସଟି ନିମଜ୍ଜମାନ । ଶ୍ରବ୍ୟଗୁଣାନ୍ୱିତ କାହାଣୀ ଏଠାରେ ଦୃଶ୍ୟଗୁଣାନ୍ୱିତ ହୋଇ ଉପନ୍ୟାସଟିର ନାଟକୀୟତା ବଢ଼ାଇ ଦେଇଛି । ଉଦାହରଣ ସ୍ୱରୂପ ବିଧୁର ମୃତ୍ୟୁ ପରେ ତା'ର ପରିବାରର ଅବସ୍ଥା ଦୃଶ୍ୟଟିକୁ ଚିନ୍ତା କରାଯାଉ । ଚନ୍ଦ୍ରଭୂଷଣ କଟକରୁ ଫେରିଛନ୍ତି । ଗୋଟାପଣେ କଳା କାଠ ଦେଖାଯାଉଛନ୍ତି । ଆଗରେ ପ୍ରୀତି ଆଉ ଭାଇବୋହୂ ମାୟା । ଚନ୍ଦ୍ରଭୂଷଣ କିଛି କହି ପାରୁନାହାନ୍ତି; କହିବାକୁ ମଧ୍ୟ ହୋଇ ନାହିଁ ତାଙ୍କୁ । ଆକାଶ ଛିଡ଼ି ପଡ଼ୁଛି । ଏହାହିଁ ଶ୍ରବ୍ୟ ଗୁଣାନ୍ୱିତ କାହାଣୀର ଦୃଶ୍ୟ ରୂପ—ଯେତିକି ପ୍ରଭାବଶାଳୀ ସେତିକି ନାଟକୀୟ ।

ରସାତ୍ମକ କାହାଣୀ କହିବା ବୃତ୍ତ ହେଉଛି କେତେକ ଅନ୍ୱୟ-ଯୁକ୍ତ ଘଟଣାର ପରମ୍ପରା । ତାହା ଦୃଶ୍ୟ ହେଉ କିମ୍ବା ଶ୍ରାବ୍ୟ ହେଉ ଆଦିଠାରୁ ଅନ୍ତ ପର୍ଯ୍ୟନ୍ତ ଏଥିରେ କ୍ରମିକତା ରହିବା ଆବଶ୍ୟକ । ଶ୍ରାବ୍ୟ—କାବ୍ୟରେ ଘଟଣାର ସମସ୍ତ ସ୍ତରଗୁଡ଼ିକ ବିନ୍ୟାସ କରିବାର ଅବକାଶ ଥାଏ, ଦୃଶ୍ୟ କାବ୍ୟରେ ତାହା ସମ୍ଭବ ନୁହେଁ । ଏଥିରେ କେବଳ କେତେକ ସାର୍ଥକ ଘଟଣାକୁ ଦେଖାଇ ଦିଆଯାଏ । ତେବେ ନାଟକରେ ମଧ୍ୟ ଘଟଣା ବିନ୍ୟାସରେ ସୁସଂହତି ଏବଂ ବୃତ୍ତ ପରି-କଳ୍ପନାରେ ସୁସଂଗତି ରକ୍ଷା କରିବାକୁ ହୁଏ । ଉପନ୍ୟାସରେ

Digitized by srujanika@gmail.com

ଦେଖିବାକୁ ମିଳେ ଘଟଣାର ବିସ୍ତୃତ ରୂପ, ନାଟକରେ ତାହା ହୋଇ-ଯାଏ ନବୀକୃତ । ଏହି ନବୀକୃତ ,ଘଟଣା ଏବଂ ପରିବେଶକୁ ବାସ୍ତବ, ଜୀବନଧର୍ମୀ ଏବଂ ଯଥାଯଥ କରି ଦେଖାଇବାରେହିଁ ନାଟ୍ୟ-କାରର ଯୋଗ୍ୟତା ପ୍ରମାଣିତ ହୁଏ । ଯେଉଁ ସବୁ ବ୍ୟକ୍ତି ଚରିତ୍ର ହୋଇ ପରିସ୍ଫୁଟିତ କଳ୍ପିତ ହୋଇଛନ୍ତି, ସେଇ ସବୁ ବ୍ୟକ୍ତିମାନଙ୍କର ପ୍ରତ୍ୟକ୍ଷ ଅସ୍ତିତ୍ୱ ଉପସ୍ଥାପନ କରିବା—ଅର୍ଥାତ ସେମାନଙ୍କର ପାରସ୍ପରିକ ଆଚରଣ ଭିତରୁ ଲୋକ-ବ୍ୟବହାରର କ୍ରିୟା-ପ୍ରତିକ୍ରିୟା ରୂପରେ ପରିଣତ କରିବାହିଁ ନାଟ୍ୟକାରର ବାହାଦୁରୀ । ଚରିତ୍ରର ଆଚରଣରେ ଏହି କ୍ରିୟା-ପ୍ରତିକ୍ରିୟାର ଆଦର୍ଶ ଯେତେ ଅଧିକ ବ୍ୟକ୍ତ ହୁଏ, ପରିସ୍ଫୁଟିତ ସେତେ ଅଧିକ ପରିମାଣରେ ଦୃଶ୍ୟଗୁଣ ସମନ୍ୱିତ ହୋଇଯାଏ ।

ଏହି ପରିପ୍ରେକ୍ଷୀରେ ଔପନ୍ୟାସିକଙ୍କର ବିପୁଳକାୟ ଉପନ୍ୟାସ ଝଞ୍ଜାକୁ ବିଶ୍ଳେଷଣ କରାଯାଉ । ଘଟଣାର କ୍ରମିକ ପରମ୍ପରା ଏଥିରେ ଅବ୍ୟାହତ ଏବଂ ବିସ୍ତୃତ ମଧ୍ୟ । ତେବେ ଏହି ବିପୁଳ ବିସ୍ତୃତି ମଧ୍ୟରେ ଯେଉଁ କୃଷ୍ଣ ରୂପଟି ଲୁଚି ରହିଛି, ତାହାହିଁ ସମଗ୍ର ଉପନ୍ୟାସଟିକୁ ନାଟକୀୟତାରେ ଭୂଷିତ କରିଛି । ଘଟଣାର ଯେଉଁ ପରମ୍ପରା ଏଠାରେ ବର୍ଣ୍ଣିତ, ସେ ସମସ୍ତ ଉପଯୁକ୍ତ ପରିବେଶ ସୃଷ୍ଟିକ୍ଷମ, ଜୀବନ ଧର୍ମୀ ଏବଂ ବାସ୍ତବ ମଧ୍ୟ । ଅନ୍ଧ ଭିକାରୀର ଅସହାୟ ପତ୍ନୀ କ୍ଷଣପ୍ରଭା ସ୍ୱାମୀ ଅଭିନନ୍ଦନକୁ ଧରି ଜିଏ ବଂଚିବାର ସ୍ୱପ୍ନ ଦେଖୁଥିଲା, ବ୍ୟର୍ଥ ଏକ ଆଦର୍ଶର ପଛରେ ଧାଇଁ ଧାଇଁ ଶେଷରେ ସେ ଦେଖିଛି ଜୀବନର କଂଶୁକୀ ରୂପକୁ । ମନତାର ବିମୁଖ ହୋଇ ଉଠିଛି । ସହରର ଏକ ଗୃହଚକ୍ରୀ, ମମତା ଘରଟି ଉପରେ । ରଜ୍ସା ଟଣାଳୀ କାଳି ସାମଲର ମଧ୍ୟ ସ୍ୱାଧୀନ ଭାବରେ ବଂଚିବାର ଅଧିକାର ରହିଛି । ମାତ୍ର କ୍ଷଣପ୍ରଭାର ମେଳକ ନାହିଁ । ଆଦର୍ଶବାଦୀ ଅନ୍ଧ ସ୍ୱାମୀ ରକ୍ତ ମାଂସର କଣ୍ଢେଇର ଯାତନା ବୁଝନ୍ତି ନାହିଁ । ବରଂ ପତ୍ନୀକୁ ଦେବୀର ଆସନରେ ବସାଇ ପୂଜା କରନ୍ତି । ତେଣୁ କ୍ଷଣପ୍ରଭା ଫେରି ଯାଇଛି; ତାଳତମାଳ ଦେଶ ତାର ପ୍ରିୟ ଜନ୍ମଭୂମି ପଲ୍ଲୀ ଅଞ୍ଚଳକୁ ।

Digitized by srujanika@gmail.com

କାହାଣୀ ମୋଟାମୋଟି ଏତିକ । ଏହି ଉପନ୍ୟାସରେ ଉଭୟ ଗ୍ରାମ ଏବଂ ନଗର; ପରିବେଶ ରୂପରେ ବ୍ୟବହୃତ ହୋଇଛି । ଚରିତ୍ର ତେଣୁ ଉଭୟ କ୍ଷେତ୍ରର । ପଞ୍ଚୁଶ୍ୱର, ସହଦେବ, ପାର୍ବତୀ, ଇମ୍ଲି, କାଳୁ ପ୍ରଭୃତି ଗ୍ରାମୀଣ ତଥା ଭୁଷାର, ଦୁଷ୍ମନ୍ତ, ଅବନୀ, କ୍ଷଣପ୍ରଭା, ହେମାଙ୍ଗନା, ସୁକାନ୍ତ ପ୍ରଭୃତି ନଗରାଞ୍ଚଳର । ଏଇ ସବୁ ଚରିତ୍ର ସାହାଯ୍ୟରେ ଯେଉଁ ପରିସ୍ଥିତି କଳ୍ପିତ ହୋଇଛି, ସେମାନଙ୍କର କାୟିକ, ମାନସିକ ଏବଂ ବାଚନିକ ଆଚରଣ ବଧି ଲୌକିକ ବ୍ୟବହାରର କ୍ରିୟା ପ୍ରତିକ୍ରିୟା ରୂପରେ ହିଁ ଉପସ୍ଥାପିତ ହୋଇଛି । ସମସ୍ତ ଚରିତ୍ରର ଆଚରଣରେ ଏହି କ୍ରିୟା ପ୍ରତିକ୍ରିୟା ରୂପ ଏତେ ଅଧିକ ସ୍ପଷ୍ଟ ଯେ, ଏହାର ବର୍ଣ୍ଣନାଗୁଡ଼ିକ ଦୃଶ୍ୟଧର୍ମୀାନ୍ବିତ ହୋଇ ଉଠିଛି । ପରିଣାମରେ ଏସବୁ ହୋଇଛି ଯଥାର୍ଥ ଲୋକବୃତ୍ତିର ବର୍ଣ୍ଣ-ବୈଭବରେ ମଣ୍ଡିତ । ଉଦାହରଣ ସ୍ୱରୂପ ଭୁଷାରକାନ୍ତ ଏବଂ କ୍ଷଣପ୍ରଭାର ମାନସିକ ସଂଘର୍ଷର ତୀବ୍ର ରୂପ ଯେଉଁ ଦୃଶ୍ୟଟିରେ ପ୍ରକଟିତ ହୋଇଛି, ଯେଉଁଠି କ୍ଷଣପ୍ରଭାର ପତ୍ନୀତ୍ୱର ସମସ୍ତ ଅହଂକାର ମାଟିରେ ମିଶିଯାଇଛି, ଭୁଷାରକାନ୍ତର ନମସ୍କାରରେ, ସେଇ ପରି-ବେଶଟିକୁ ଚିନ୍ତା କରାଯାଇପାରେ । ଔପନ୍ୟାସିକଙ୍କର ଲେଖନୀ ସତେ ଯେପରି ଏକ କଥା କୁହା ଭୁଳି ହୋଇଯାଇଛି । 'ନାରୀର ଆବେଦନ ବିଫଳ ହୁଏ ନାହିଁ' ଏଇ ଭଳି ଏକ ଚିରକାଳୀନ ଦାର୍ଶନିକ ମନ୍ତବ୍ୟ ସୁଦ୍ଧା କମ୍ ନାଟକୀୟତାର ପରିଚାୟକ ହୋଇ ନାହିଁ । ଶେଷରେ ତେଣୁ କୁହାଯାଇ ପାରେ ଯେ, ଆକାରରେ ବିପୁଳ ହେଲେ ମଧ୍ୟ ବର୍ଣ୍ଣନାଧର୍ମୀ ଏଇ ଉପନ୍ୟାସ, ଘଟଣାର ସମ୍ବନ୍ଧତାରେ, ପରିବେଶ ସୃଷ୍ଟିର ନାଟକୀୟତାରେ ଚରିତ୍ର ଗଠନର ଜୀବନଧର୍ମିତାରେ ନାଟକୀୟତାର ସମସ୍ତ ପରୀକ୍ଷାରେ ସସମ୍ମାନେ ଉତ୍ତୀର୍ଣ୍ଣ ହୋଇଯିବ । 'ଝଂଜା' ଉପନ୍ୟାସର ନାଟ୍ୟରୂପ ତାହାହିଁ ପ୍ରମାଣିତ କରିଛି ।

ଯେଉଁସବୁ ଘଟଣା ବା ପରିସ୍ଥିତି ବୃତ୍ତ ନିର୍ମାଣର ସହାୟକ, ସେ ସବୁ ପ୍ରତ୍ୟେକକୁ ବ୍ୟକ୍ତି ଆଚରଣର ପ୍ରତ୍ୟକ୍ଷ କ୍ରିୟା ପ୍ରତିକ୍ରିୟାର

Digitized by srujanika@gmail.com

ଅପରିହାର୍ଯ୍ୟ ଅଂଗ କରି ପାରିବାଭଳି କାହାଣୀର ଦୃଶ୍ୟ ଧର୍ମିତା ବିଦ୍ୟମାନ । ଫଳରେ ଯେଉଁ ଅଂଶ ଏହି କ୍ରିୟା ପ୍ରତିକ୍ରିୟାର ପ୍ରତ୍ୟକ୍ଷ ରୂପଠାରୁ ଯେତେ ଦୂରବର୍ତ୍ତୀ ହୋଇପଡ଼େ, ସେଇ ଅଂଶ ହୁଏ ସେତେ ଅନାଟକୀୟ । ତେଣୁ କେବଳ ସେହି ଘଟଣାହିଁ ନାଟକୀୟ, ଯାହା ଏହି କ୍ରିୟା ପ୍ରତିକ୍ରିୟାର ଅପରିହାର୍ଯ୍ୟ ଅଂଗ । ଯାହା ନୁହେଁ ତାହା ଯେତେ ଆକସ୍ମିକ କିମ୍ବା ଅଦ୍ଭୁତ ହେଉନା କାହିଁକି ତାକୁ ନାଟକୀୟ କୁହାଯାଇ ପାରିବ ନାହିଁ । କା' ଉପନ୍ୟାସକୁ ଏଇ ପରି-ପ୍ରେକ୍ଷୀରେ ବିଚାର କରାଯାଉ । ନିଜକୁ ବଂଶ ପରମ୍ପରାର କ୍ରମିକଧାରା ମଧ୍ୟରେ କାଳକାଳକୁ ଉଦ୍‌ଜୀବିତ ରଖିବାର ଉଦଗ୍ର କାମନା ମଧ୍ୟରେ ହିଁ ସନ୍ତାନ ଧାରଣର ଝରିଚ୍ଛାସ୍ୱ ପୃଷ୍ଠ ଭୂମିଟି ନିହିତ । ସେଇ ସନ୍ତାନ ପାଇଁ ପତିବ୍ରତା ପତ୍ନୀର ବର୍ତ୍ତମାନରେ ଏହି ଉପନ୍ୟାସର ନାୟକ ସୁନନ୍ଦ ଦ୍ୱିତୀୟ ପତ୍ନୀ ଗ୍ରହଣ କରେ । ଇତି ମଧ୍ୟରେ ତାର ପ୍ରଥମାପତ୍ନୀ ସନ୍ତାନ ଧାରଣ କରି ପରିସ୍ଥିତିକୁ ଜଟିଳ କରିଦିଏ । କା' ଉପନ୍ୟାସ ଦ୍ୱିପତ୍ନୀକ ଏହି ବ୍ୟକ୍ତିର ଜଟିଳ ମାନସିକତାର ଗ୍ରନ୍ଥି ମୋଚନ ନିମନ୍ତେ ଉଦ୍ଦିଷ୍ଟ । ଏଥିରେ ଯେଉଁସବୁ ଘଟଣା ବର୍ଣ୍ଣିତ ହୋଇଛି, ଯଥା—ସୁନନ୍ଦର ବିଧବା ଉଷଣଶୀଳା ଜନନୀଙ୍କର ଏକକ ଜୀବନ ସଂଗ୍ରାମ ବଂଶଧାରାକୁ ସୀମାହୀନ ଭବିଷ୍ୟତ ମଧ୍ୟରେ ଲତେଇ ଯିବାର ଦେଖିବା ନିମନ୍ତେ ତାଙ୍କର ଉଦଗ୍ର ଅଭିଳାଷ, ସୁନଂଦର ଜ୍ଞାତି ଭ୍ରାତାଙ୍କର ସନ୍ତାନ ପ୍ରାଚୁର୍ଯ୍ୟ ଏବଂ ସର୍ବୋପରି ଦ୍ୱିତୀୟ ଦାର ପରିଗ୍ରହ ନିମନ୍ତେ ପତିବ୍ରତା ପତ୍ନୀର ସକରୁଣ ଅନୁରୋଧ—ଏ ସମସ୍ତ ବ୍ୟକ୍ତି ଆଚରଣର ପ୍ରତ୍ୟକ୍ଷ କ୍ରିୟା ପ୍ରତିକ୍ରିୟାର ଅପରିହାର୍ଯ୍ୟ ଅଂଗ ହୋଇ ପଡ଼ନ୍ତି । ତେଣୁ ଏହି ଉପନ୍ୟାସଟିର ଘଟଣା ଏବଂ ପରିବେଶ ଯେ, ସଂପୂର୍ଣ୍ଣ ନାଟକୀୟ ହୋଇ ପାରିଛି, ଏହା ନ କହିଲେ ମଧ୍ୟ ଚଳିବ ।

ସେଇଭଳି ଚରିତ୍ରର ଯଥାର୍ଥ ଆଚରଣ କ୍ରିୟା ପ୍ରତିକ୍ରିୟା ସମନ୍ୱିତ ବୃତ୍ତିର ଅନୁକୂଳ ହୋଇଥିଲେ ତାହା ନାଟକୀୟ ହୁଏ । ବ୍ୟକ୍ତି ବିଶେଷର ପାରସ୍ପରିକ କ୍ରିୟା ପ୍ରତିକ୍ରିୟାର କାୟିକ ମାନସିକ

Digitized by srujanika@gmail.com

ଏବଂ ବାଚନକ ଆଚରଣରୁହିଁ ତାହାକୁ ନାଟକୀୟ କରିଥାଏ । ଚରିତ୍ରର ଆଚରଣରେ ଯେତେବେଳେ ପର୍ଯ୍ୟନ୍ତ ଯଥାର୍ଥ କ୍ରିୟା ପ୍ରତିକ୍ରିୟା ବ୍ୟକ୍ତ ହୋଇଥିବ, ସେତେବେଳେ ପର୍ଯ୍ୟନ୍ତ ତାହା ନାଟକୀୟ । କ୍ରିୟା ସ୍ଥିତି ଧର୍ମୀ କିମ୍ବା ଗତିଧର୍ମୀ ଯାହା ହୋଇନା କାହିଁକି, ଯେତେବେଳେ ପର୍ଯ୍ୟନ୍ତ ତାହା ଯଥାର୍ଥ ପରିସ୍ଥିତିର ଯଥାର୍ଥ କ୍ରିୟା ବା ପ୍ରତିକ୍ରିୟା, ସେତେବେଳେ ପର୍ଯ୍ୟନ୍ତ ତାହା ନାଟକୀୟ । ଏ ଦୃଷ୍ଟିରୁ ବିଗ୍ଭର କଲେ କା' ଉପନ୍ୟାସର ସ୍ୱଗେଷ୍ଟିଯାକ ପ୍ରଧାନ ଚରିତ୍ର—ସୁନନ୍ଦ, ତାର ବିଧବା ଜନନୀ ଏବଂ ଦୁଇପତ୍ନୀ; ମୂଳବୃତ୍ତର ଏକାନ୍ତ ଅନୁକୂଳ । ଏମାନଙ୍କର କାୟିକ, ମାନସିକ ଏବଂ ବାଚନକ ଆଚରଣ ମଧ୍ୟରେ ଏମାନଙ୍କର ପାରସ୍ପରିକ କ୍ରିୟା ପ୍ରତିକ୍ରିୟାର ରୂପଟି ସୁନ୍ଦର ଭାବରେ ପ୍ରତିଫଳିତ । ସୁନନ୍ଦର ଦୁର୍ବଳ ବ୍ୟକ୍ତିତ୍ୱ, ସୁନନ୍ଦ ଜନନୀଙ୍କର ଦୃଢ଼ତା, ଉଭୟ ପତ୍ନୀଙ୍କର ନାରୀ ସୁଲଭ ଗୁଣାବଳୀ; ଏ ସମସ୍ତ ଏକ ସମଗ୍ରତାର ବୃତ୍ତ ମଧ୍ୟରେ, ପାରସ୍ପରିକ ଜଟିଳ ସମ୍ପର୍କର ପୃଷ୍ଠ ଭୂମିରେହିଁ ପରିକଳ୍ପିତ । ତେଣୁ ଏ ସମସ୍ତ ନାଟକୀୟ । ନାଟକର ଇତିବୃତ୍ତି କେତେଗୁଡ଼ିଏ ପରିସ୍ଥିତିର ଏବଂ ପରିସ୍ଥିତି ପୁଣି କେତେକ କ୍ରିୟା ପ୍ରତିକ୍ରିୟାର ସମଷ୍ଟି ମାତ୍ର ହୋଇଥିବାରୁ ଏ ସମସ୍ତର ନାଟକୀୟତା ଉପରେ ନାଟକର ସଫଳତା ବିଶେଷ ପରିମାଣରେ ନିର୍ଭରଶୀଳ । କା' ଉପନ୍ୟାସର ଇତିବୃତ୍ତି, କିମ୍ବା ପରିସ୍ଥିତି, ଦ୍ୱନ୍ଦ୍ୱ ସଂଘାତ ପୂର୍ଣ୍ଣ ହୋଇ ଏକାନ୍ତ ଭାବରେ ନାଟକୀୟ ହୋଇ ପାରିଛି ।

ସଂଳାପକୁ ନାଟକୀୟତାର ପ୍ରଧାନ ଅଂଗ ବୋଲି କୁହାଯାଇ ଥାଏ । ଯେ କୌଣସି କଥୋପକଥନର ଭାଷାକୁ ସଂଳାପର ମର୍ଯ୍ୟାଦା ଦିଆଯାଇ ନପାରେ । ନାଟକର ଭାଷା ଶିଳ୍ପର ଭାଷା । ତେଣୁ ଏହାକୁ ଶିଳ୍ପୋଚିତ ମର୍ଯ୍ୟାଦାରେ ମଣ୍ଡିତ କରିବାକୁ ପଡ଼ିବ । ସୁସଂଳାପ ପାଇଁ କବିତ୍ୱ ଅପରିହାର୍ଯ୍ୟ । ହୁଏତ ଏହି କାରଣରୁହିଁ ଅନେକ ନାଟ୍ୟକାରମାନଙ୍କୁ ପ୍ରକୃତ ନାଟ୍ୟକାରର ମର୍ଯ୍ୟାଦା ଦିଆଯାଇ ନାହିଁ । ତେବେ ସଂଳାପ ପାଇଁ କବିତ୍ୱର ଏକ ନିର୍ଦ୍ଦିଷ୍ଟ ସୀମା ରହିଛି । ଯେଉଁଠି କ୍ରିୟା ଶେଷ ହୁଏ, ସେଇଠାରେହିଁ କବିତ୍ୱ ଶେଷ ହେବା ବାଞ୍ଛନୀୟ । ଏହି କାରଣରୁହିଁ ସେକ୍‌ସପିୟରଙ୍କ ନାଟ୍ୟ

Digitized by srujanika@gmail.com

ସଂଳାପର କବଳ୍ଚ ଅନାଟକୀୟ ହୋଇ ନାହିଁ । ମାତ୍ର ଅନେକ ଆଧୁନିକ ନାଟକରେ କବଳ୍ଚ ପୂର୍ବୋକ୍ତ କ୍ରିୟା ପ୍ରତିକ୍ରିୟାର କକ୍ଷପଥ ଅତିକ୍ରମ କରି ଯାଇଛି, ପରିଣାମରେ ଏଭଳି ସବୁ ସଂଳାପ ନାଟ୍ୟଧର୍ମୀ ହୋଇ ପାରିନାହିଁ । କାହ୍ନୁଚରଣଙ୍କର ଉପନ୍ୟାସଗୁଡ଼ିକ ମୁଖ୍ୟତଃ ସଂଳାପଧର୍ମୀ ଏବଂ କହିବା ବାହୁଲ୍ୟ ଯେ, ସୁପରିକଳ୍ପିତ ଏଭଳି ସବୁ ସଂଳାପ ଏକାନ୍ତ ଭାବରେ ନାଟ୍ୟଧର୍ମୀ । ସଂଳାପ ସାହାଯ୍ୟରେହିଁ ତାଙ୍କ ଉପନ୍ୟାସର ଚରିତ୍ର ନିଜକୁ ବ୍ୟକ୍ତ କରିଛନ୍ତି, ପରିବେଶର ରୂପ ଫୁଟାଯାଇଛି, ଏଭଳି ସଂଳାପ ସାହାଯ୍ୟରେ । ଦ୍ୱନ୍ଦ୍ୱ ସୃଷ୍ଟି କରାଯାଇଛି ମୁଖ୍ୟତଃ ଏହାର ଦ୍ୱାରା । ଘଟଣାର ଅନ୍ତର୍ଗତ ସଂଳାପହିଁ ସୃଷ୍ଟିକରିଛି । ତେଣୁ ଏହା ବିଶ୍ୱାସ କରିବାର ଯଥେଷ୍ଟ କାରଣ ରହିଛି ଯେ, ହାମ୍‌-ଲେଟ୍‌ ଚରିତ୍ରକୁ ବାଦ୍‌ ଦେଇ ଯେଉଁଭଳି ହାମ୍‌ଲେଟ୍‌ ନାଟକର ସ୍ଥିତି କଳ୍ପନା କରାଯାଇ ପାରିବ ନାହିଁ, ଠିକ୍‌ ସେହିଭଳି ସଂଳାପକୁ ବାଦ ଦେଇ କାହ୍ନୁଚରଣଙ୍କ ଉପନ୍ୟାସର ସଫଳତା ବିଚାର କରା-ଯାଇ ପାରିବ ନାହିଁ ।

କାହ୍ନୁଚରଣଙ୍କର ବିପୁଳ ସୃଷ୍ଟିରୁ ସାମାନ୍ୟ କେତେ ଖଣ୍ଡି ମାତ୍ର ଏଠାରେ ଉଦାହରଣ ସ୍ୱରୂପ ଆଲୋଚିତ ହୋଇଛି । କାହ୍ନୁଚରଣ ନାଟ୍ୟକାର ନୁହନ୍ତି, ଅନ୍ତତଃ ସେ କୌଣସି ନାଟକ ରଚନା କରିଥିବାର ଆମକୁ ଜଣା ନାହିଁ । ତେବେ ତାଙ୍କର ପାଠକ-ମାନେ ଅବଶ୍ୟ ସ୍ୱୀକାର କରିବେ ଯେ, ଔପନ୍ୟାସିକଙ୍କର ଅଧିକାଂଶ ଉପନ୍ୟାସରେ ନାଟକୀୟତା ଅତ୍ୟନ୍ତ ସ୍ପଷ୍ଟ ଭାବରେ ବିଦ୍ୟମାନ । ଚରିତ୍ର, କଥାବସ୍ତୁ, ଘଟଣା ଏବଂ ଦୃଶ୍ୟ ପରିକଳ୍ପନା – ପ୍ରତ୍ୟେକ କ୍ଷେତ୍ରରେ କାହ୍ନୁଚରଣଙ୍କର ନାଟ୍ୟସତ୍ତା ସହିତ ପାଠକମାନଙ୍କର ପରିଚୟ ହୋଇଥାଏ । କେତେକ ଉପନ୍ୟାସରେ ତାଙ୍କର ଔପନ୍ୟାସିକ ସତ୍ତା ନାଟ୍ୟସତ୍ତା ନିକଟରେ ମ୍ଳାନ ହୋଇ ଯାଇଛି ମଧ୍ୟ । ଅଭିନେତ୍ରୀ, ତୁଣ୍ଡବାଇଦ, ଅଦେଖାହାତ, ପରିକ୍ରୀୟା; ମିଳନର ଛନ୍ଦ ପ୍ରଭୃତି ଉପନ୍ୟାସର ପାଠକମାନେ ଏହା ଜାଣନ୍ତି । ଅପ୍ରତ୍ୟାଶିତତା, ଆକସ୍ମିକତା, ଚମକପ୍ରଦତା ଏବଂ ଅଦ୍‌ଭୁତତା

Digitized by srujanika@gmail.com

ପ୍ରଭୃତିର ସମାବେଶରେ କାହ୍ନୁଚରଣ ଉପନ୍ୟାସର ଘଟଣା, ଚରିତ୍ର ଏବଂ ପରିବେଶ ସବୁ ହୋଇ ପଡ଼ୁଛି ନାଟକୀୟ । ହୁଏତ ଏହି କାରଣରୁହିଁ ଏ ଦେଶରେ ଯେତେ ଉପନ୍ୟାସର ନାଟ୍ୟରୂପ ଦିଆ-ଯାଇଛି, ତନ୍ମଧ୍ୟରେ କାହ୍ନୁଚରଣଙ୍କର ଉପନ୍ୟାସର ସଂଖ୍ୟା ସର୍ବାଧିକ । ତାଙ୍କର ହା'ଅନ୍ନ, ଶାସ୍ତି, ତୁଣ୍ଡବାଇଦ, କା', ଅଭି-ନେତ୍ରୀ, ଝଞ୍ଜା ପ୍ରଭୃତି ଉପନ୍ୟାସଗୁଡ଼ିକ ଏ ମଧ୍ୟରେ ନାଟକାୟିତ ହୋଇ ସାରିଛି । ନାଟକୀୟତାକୁ ଏହାର କାରଣ ରୂପେ ନିର୍ଦ୍ଦେଶ କରାଯାଇପାରେ । ଉପସଂହାରରେ ଆଉ ଗୋଟିଏ ମାତ୍ର କଥା କହି, ଏ ପ୍ରବନ୍ଧ ଶେଷ କରିବୁଁ । ନବେଲ ଉପନ୍ୟାସର ନାଟ୍ୟରୂପ ସମ୍ଭବ ନୁହେଁ ବୋଲି ଏକ ମତ ଆମେ ପୂର୍ବରୁ ଉଦ୍ଧାର କରିଛୁଁ । କହିବା ବାହୁଲ୍ୟ, ଏହି ମତକୁ ବିଶ୍ୱାସ କରିବାର କୌଣସି କାରଣ ନାହିଁ ।



Digitized by srujanika@gmail.com

# 'ତୁଷାରକାନ୍ତ' କାହ୍ନୁଚରଣଙ୍କ କଳାରାଜ୍ୟର ଏକ କ୍ରାନ୍ତିକାରୀ ବ୍ୟକ୍ତିତ୍ୱ

**ଅଧ୍ୟାପକ ବୀରକିଶୋର ମହାନ୍ତି**

ଆଧୁନିକ ଜନଜୀବନର ସ୍ୱପ୍ନ ଓ ସ୍ୱାକ୍ଷରକୁ ନେଇ ଆଧୁନିକ ଉପନ୍ୟାସ ଜଗତରେ ଶାଶ୍ୱତ ଭାବ-ରଶ୍ମିର ଦୋଳନ ସୃଷ୍ଟି କରିଥିବା ଔପନ୍ୟାସିକ କାହ୍ନୁଚରଣଙ୍କ କଳା ଭଣ୍ଡାରରେ ତୁଷାରକାନ୍ତ ଏକ ସଂରକ୍ଷିତ ଶିଳ୍ପ ସୁଷମା । 'ଝଞ୍ଜା' ଉପନ୍ୟାସର ବନ୍ଧୁର ଚଳ ପଥରେ ନିଷ୍ପାପ ବଚନିକାର ସ୍ୱାଗତିକା ଗାନ କରି ତୁଷାରକାନ୍ତ ମହାନ ଆଦର୍ଶର ଧ୍ୱଜାକୁ ସତେ ଯେପରି ଧାରଣ କରିବାକୁ ସମର୍ଥ । ପକ୍ଷହୀନ ବିହଙ୍ଗ—କକ୍ଷଚ୍ୟୁତ ତାରକାର ନିଭୃତ କୁଞ୍ଜ ବନରେ ଲକ୍ଷ୍ୟ ପଥର ଯାତ୍ରୀ ତୁଷାରକାନ୍ତର ଆଦର୍ଶର କୁହୁତାନ 'ଝଞ୍ଜା' ଉପନ୍ୟାସର ସାର୍ଥକ ଭାବମୁଦ୍ରା ।

ଆଧୁନିକ କଥାଶିଳ୍ପୀ କାହ୍ନୁଚରଣଙ୍କର ଶିଳ୍ପରାଜ୍ୟରେ ବହୁ ଚରିତ୍ରର ସମାବେଶ ଘଟିଥିଲେହେଁ ଅନ୍ଧ ତୁଷାରକାନ୍ତର ଚାରିତ୍ରିକ ମହତ୍ତ୍ୱ 'ଝଞ୍ଜା' ସୃଷ୍ଟି କାନନକାର ପ୍ରକୃତ ସୁବାସ । ଭାଗ୍ୟବାଦୀ ଲେଖକ କାହ୍ନୁଚରଣଙ୍କ ନିପୁଣ ପଦକ୍ଷେପ ଦରିଦ୍ର ଚରିତ୍ର ତୁଷାର-କାନ୍ତ ବ୍ୟକ୍ତିତ୍ୱକୁ ସାର୍ଥକତାର ସୁନେଲି ପାଦପୀଠରେ ପହଞ୍ଚାଇ ପାରିଛି । ଦୁଃଖ, ନୈରାଶ୍ୟ, ଅଶ୍ରୁ—ବିଷାଦର ହାତବୋଳା ଶିଳ୍ପ ପୁରୁଷ ତୁଷାରକାନ୍ତର ଭାଗ୍ୟାକାଶରେ କଳାଧୂମ୍ର ମେଘ ଘୋଟି ଆସିବା ଭିତରେ ରହିଛି ଏ ଉପନ୍ୟାସର ବାସ୍ତବ ସ୍ୱାଦ । ସବ୍‌ଶ୍ରେଷ୍ଠି ତୁଷାରକାନ୍ତ ଜୀବନରେ ଆସେ ପରିବର୍ତ୍ତନ । ଭଲ ପାଇବାର ପାଣ୍ଡୁଲିପି ଭିତରେ ସ୍ମୃତିର ଅକ୍ଷରକୁ ଟୋଳି ଆଣିଲାବେଳେ ଅଶ୍ରୁ-ସଂଗୀତର ସରଣୀ ପାଠକଙ୍କର ତନ୍ତ୍ରୀକୁ ଦୋହଲାଇ ଦେଇଥାଏ ।

Digitized by srujanika@gmail.com

ଭାଗ୍ୟର ନିଷ୍ଠୁର ଦନ୍ତା-ଘାତରେ ଏ ତୁଷାରକାନ୍ତ ସତେ ଯେପରି ଛିନ୍ନଭିନ୍ନ । ତଥାପି ଭଲ ପାଇବା ଟାକୁ ହୃଦୟର ଦୀକ୍ଷା କବଚଭାବେ ଗ୍ରହଣ କରିନେଇ କ୍ଷଣପ୍ରଭାକୁ ଜୀବନର ସାଥୀ ରୂପେ ବାଛିନେବା ହେଉଛି ଆଲୋଚ୍ୟ 'ଝଞ୍ଜା' ଉପନ୍ୟାସର ଅନ୍ତଃରାଗ । ସ୍ୱର୍ଗ ସୁଖର ବହୁ ଦୂରରେ ଏ ଚରିତ୍ରଟି ସ୍ୱର୍ଗ ଭୁବନ ତୋଳିବାର ଆଶା ନେଇ କର୍ତ୍ତବ୍ୟର ପୂଜା ମଣ୍ଡପରେ ଆଦର୍ଶର ଯେଉଁ ଜୟମାଲ୍ୟ ଟେକି ଦେଉଛି ତାହାହିଁ ଝଞ୍ଜା ଉପନ୍ୟାସର ପ୍ରକୃତ ସ୍ୱରୂପ । ସର୍ବସ୍ୱତ୍ୟାଗୀ ତୁଷାରକାନ୍ତ ଭାଗ୍ୟର ବ୍ୟଥା ଲାଭ କରି ବିବର୍ଣ୍ଣ ବସନ୍ତର ଦାଗ ବହନ କରିଛି, ସେ ହୋଇଛି ଅନ୍ଧ । ତଥାପି ଜୀବନର ସଂଗ୍ରାମ ପଥରୁ ଓହରି ଯାଇନି, ଭଲ ପାଇବାର ବଳୟ ଭିତରୁ ପାଦ ଟାଣି ଆଣି ପାରିନି, କ୍ଷଣପ୍ରଭାର ସକଳ ନୈବେଦ୍ୟକୁ ମନଭରି ସେ ଗ୍ରହଣ କରିଛି ସ୍ୱାମୀତ୍ୱର କୃତ୍ରିମ ପିଠି, ତଥାପି ଅଭିମାନିନୀ ନାୟିକା କ୍ଷଣପ୍ରଭାର ମନ-ଗହନର ସ୍ୱାଭିମାନ ମୁଣ୍ଡଟେକି ଉଠିଲାବେଳେ ସେ କିଂକର୍ତ୍ତବ୍ୟ ବିମୂଢ଼ ହୋଇ ପଡ଼ିବାକୁ ବାଧ୍ୟ ହୋଇଛି । ଅପାରଗତାର ହରିକାଠକୁ ଜାବୁଡ଼ି ଧରି ଅନ୍ଧ ତୁଷାରକାନ୍ତ ସ୍ୱାମୀତ୍ୱର ସ୍ୱାଭିମାନକୁ ସାଉଁଟି ଆଣିବା ପାଇଁ ବଦ୍ଧ-ପରିକର ହୋଇ ପାରିଛି ।

ପ୍ରେମିକ ତୁଷାରକାନ୍ତ—ଟିୟୁସନ ମାଷ୍ଟର ତୁଷାରକାନ୍ତ ଓ ସର୍ବୋପରି ଅନ୍ଧ ତୁଷାରକାନ୍ତର ଆଦର୍ଶର ଜୟମାଳା ଆଲୋଚ୍ୟ ଉପନ୍ୟାସର ରକ୍ତ ଲେଖାର ସ୍ୱାକ୍ଷର ।

୪ଟି ପର୍ଯ୍ୟାୟରେ ପାଠକକୁଳ ତୁଷାର ଚରିତ୍ରର ତୁଷାର-ପ୍ରଶାନ୍ତ ଦୀପ୍ତି ଅନୁଭବ କରି ଥାଆନ୍ତି ।

୧—ପ୍ରେମିକ ତୁଷାରକାନ୍ତ, ୨—ସର୍ବସ୍ୱତ୍ୟାଗୀ ତୁଷାରକାନ୍ତ, ୩—ଟିୟୁସନ ମାଷ୍ଟର ତୁଷାରକାନ୍ତ, ୪—ଆଦର୍ଶର ସ୍ଥାପକ ତୁଷାରକାନ୍ତ ।

ଏହି ଚାରୋଟି ଅବସ୍ଥା ଚକ୍ରରେ ଘୂରି ବୁଲୁଥିବା ତୁଷାରକାନ୍ତର ଚାରିତ୍ରିକ ବୈଶିଷ୍ଟ୍ୟକୁ ସ୍ପଷ୍ଟ କରିବାକୁ ଗଲାବେଳେ କବିଙ୍କୁ ସାକ୍ଷୀ ଭାବି କୁହାଯାଇପାରେ—

Digitized by srujanika@gmail.com

ନୟନ୍ତ ଯେ ଲିପି ; ଲେଖିଛୁ କପାଳେ
ଅଙ୍ଗୁଳି ଧୀରେ ଗୁଳି
ତହିଁ କେ କରିବ . ଆନ ଏକ ପଦ
ନୟନୁ ଅଶ୍ରୁ ଢାଳି ?

ଭାଗ୍ୟ ଓ ଭଗବାନଙ୍କର ଅଖଣ୍ଡ ନିର୍ଦ୍ଦେଶକୁ ବେଖାତିର କରିବାକୁ ଜଣେ ମଣିଷ ଆଦୌ ସମର୍ଥ ହୋଇ ପାରନାହିଁ । ଭାଗ୍ୟ-ବୃକ୍ଷର ପୀୟୂଷ ଫଳକୁ ପ୍ରଥମରୁ ଭକ୍ଷଣ କରିଥିବା ତୁଷାରକାନ୍ତ— ପରବର୍ତ୍ତୀ ଜୀବନରେ ସେହି ବୃକ୍ଷ ପ୍ରଦତ୍ତ ବିଷ ଫଳକୁ ଭୁଞ୍ଜିବାକୁ ବାଧ୍ୟ ହୋଇଛନ୍ତି ।

ଔପନ୍ୟାସିକ କାହ୍ନୁଚରଣ ତୁଷାରକାନ୍ତ ମସ୍ତକରେ ବାରମ୍ବାର ଦୁଃଖର ପାହାଡ଼ ଲଦି ଦେବା ପାଇଁ ଚେଷ୍ଟା କରିଛନ୍ତି । ତଥାପି ଆଦର୍ଶ ପଥରେ ଅଟଳ ରହିଥିବା ମଣିଷ ତୁଷାରକାନ୍ତ ଶୃଙ୍ଖଳ ଭାଙ୍ଗି ପରି ଭାଙ୍ଗି ଯାଇନି ବରଂ ଆଦର୍ଶର ପ୍ରୟୋଜନରେ ତା ଶୃଙ୍ଖଳ ଓଠରେ ସେ ବାରମ୍ବାର ସିକ୍ତ କରିବାକୁ ଚାହିଁଛି । ଭକ୍ତ ନଗାଡ଼ ସେ ଆଦର୍ଶର ଯୂପକାଷ୍ଠକୁ ଜାବୁଡ଼ି ଧରିଛି ଅଣନିଃଶ୍ୱାସୀ ହେବା ପର୍ଯ୍ୟନ୍ତ । ପରିବାର ମର୍ଯ୍ୟାଦାକୁ ଅକ୍ଷୁର୍ଣ୍ଣ ରଖିବାକୁ ଯାଇ ଜ୍ୟେଷ୍ଠ ଭଉଣୀ ନିହାରିକା, ରୁଗ୍ଣା ମାତା ସୁକାନ୍ତି ଦେବୀ ଓ ସ୍ତ୍ରୀ କ୍ଷଣପ୍ରଭାର ସମସ୍ତ ଦାୟିତ୍ୱକୁ ସେ ଅକାତରରେ ବରଣ କରି ନେବାକୁ ଶ୍ରେୟଃ ମନେ କରିଛି । ଅଥଚ କିଂକର୍ତ୍ତବ୍ୟବିମୂଢ଼ ହେଲେ ବି ଚିନ୍ତ୍ୟସନ କରି ପରିବାର ବୋଝ ମୁଣ୍ଡେଇବାକୁ ସେ କୁଣ୍ଠିତ ହୋଇନି । ଦୁଃଖର ମଥାଁ ହୁଳାକୁ ଧରି ଦୁନିଆର କଣ୍ଟକ ପଥରେ ବାରମ୍ବାର ବାଟବଣା ହୋଇଛି, ସମାଜକୁ ହାତ ତାଳି ଦେଇ ଶୁଣାଇଛି ଆଦର୍ଶର ଶୁଭ ଶଙ୍ଖ । ଏ ଶଙ୍ଖର ଢେଙ୍କୁର ଭିତରେ ଆଦର୍ଶର ଜୟଜୟକାର ଧ୍ୱନି ବାରମ୍ବାର ପାଠକଙ୍କର ଶୁଣିବାକୁ ପାଉଛନ୍ତି ।

ବନ୍ଧୁ ଦୁଷ୍ମନ୍ତର ସାନ୍ନିଧ୍ୟ ତୁଷାରକାନ୍ତର ମନ କାନନରେ ସୃଷ୍ଟି କରିଛି ଅସଂଖ୍ୟ କୃଷ୍ଣଚୂଡ଼ାର ସୁରଭି ! ଆଦର୍ଶର ଢ଼କରକୁ ଏଡ଼ି ନପାରି ମାନବ ସେବାକୁ ମାଧବ ସେବାଭାବେ ବରିନେଇଥିବା

Digitized by srujanika@gmail.com

ଚରିତ୍ର ଭୂଷାରିକାନ୍ତ ନିକଟରେ ସ୍ତ୍ରୀ କ୍ଷଣପ୍ରଭାର ସକଳ ଅଭିଯୋଗ ଓ ଅଭିମାନ ପାଣି ଫୋଟକା ପରି ଉଭେଇ ଯାଇଛି, ଆଦର୍ଶର ପାଣ୍ଡୁଲିପିକୁ ମୁଖସ୍ତ କରି ସମାଜର ରଙ୍ଗମଞ୍ଚରେ ଅନ୍ଧ ଭୂଷାର ନିପୁଣ ଅଭିନେତା ସାଜିବାକୁ ଚେଷ୍ଟା କରିଛି ।

ଅନ୍ୟ ଏକ ପର୍ଯ୍ୟାୟରେ ପାଠକ ଲକ୍ଷ୍ୟ କରେ ଦରଦୀ ଚରିତ୍ର ଭାବରେ ଭୂଷାରିକାନ୍ତ ଚରିତ୍ରର ବସ୍ତୁ ବେପଥୁ ସଂଗୀତ, ଏହି ସଂଗୀତର ତାଳେ ତାଳେ ମନ୍ଦ୍ରିତ ହୋଇଛି ଭୂଷାରର ନିଷ୍ପାପ ବେଦନା, ବିଷାଦବାଦୀ ଗାୟକ ଭୂଷାରକାନ୍ତର ମନ ଅରଣ୍ୟରେ ଅରଣା ମଇଁଷିର ଚରାବୁଲା । ଅନ୍ଧ ହେଲେବି ସ୍ୱାମୀତ୍ୱର ବିବେକାଠି ଧରି ସେ ଖୋଜି ବସିଛି କ୍ଷଣପ୍ରଭାର ଅଭିମାନଭରା ମୁଦା କୋଠରୀକୁ । ମନର ମାର୍ବଲ ପଥର ଉପରେ ବସି ସେ ତୋଳିଛି ଅସୁମାରି ଆଶାର ସୌଧ ।

'ରଙ୍ଗିଆ' ଅଛି ପରା । ତୁମେ ନ ଗଲେ ଚଳିବନି ? ସୁପ୍ତ ପୁରୁଷତ୍ୱର ଆକୁଳ ଆବେଦନ, ଦରଦୀ ପ୍ରାଣର ବ୍ୟଥିତ ମୂର୍ଚ୍ଛନା— ଭିତରେ ସତେ ଯେପରି ସ୍ପଷ୍ଟ ହୋଇଉଠେ ସ୍ତ୍ରୀ କ୍ଷଣପ୍ରଭାକୁ ଭଲ ପାଇବାର ସ୍ୱର । ଅନ୍ଧ ହେଲେବି ସେ ସ୍ୱାମୀ । ସ୍ତ୍ରୀକୁ ପାଖରେ ବସାଇ ହୃଦ-କୁଞ୍ଜବନରେ ବଧୂ-ନିରୂପମା ସଜେଇବାକୁ ତା'ର ଇଚ୍ଛା ହେବା ସ୍ୱାଭାବିକ ।

ଦୃଷ୍ଟିର ବିପରୀତମୂଳରେ ଅନ୍ଧ ଭୂଷାରିକାନ୍ତର ଆଦର୍ଶର ଉତ୍କ୍ରମ ରେଖା ପାଠକ ପ୍ରାଣରେ ସମ୍ବେଦନାର ବାରିପାତ କରିବାର ସୂଚନା ସତେ ଯେପରି ପ୍ରଦତ୍ତ କରିଥାଏ । ଆଲୋଚ୍ୟ ଝଞ୍ଜା ଉପ-ନ୍ୟାସର ଶ୍ୟାମଳିମା-ପଥରେ ଭୂଷାରିକାନ୍ତ ଆଦର୍ଶର ଉତ୍ତୁଙ୍ଗ ଚଳିକା ସୃଷ୍ଟି କରିବାକୁ ମନ ଭିତରେ ଅତୁଟ ବିଶ୍ୱାସ ନେଇ ଆଗେଇ ଚାଲିଛି । ତଥାପି ସେ ଓହରି ଆସିନି ଆଦର୍ଶର ପୂଜା ମଣ୍ଡପରୁ । ନିଆଁ ଭିତରେ ଖେଳିବା ପାଇଁ ସେ ବାରମ୍ବାର ସ୍ତ୍ରୀ ପ୍ରଭାକୁ ରୁକ୍ଷ ଭାବରେ ପ୍ରବର୍ତ୍ତାଇଛି, କ୍ଷଣପ୍ରଭାର ନାମରେ କୁତ୍ସାର ବିଜ୍ଞାପନ

Digitized by srujanika@gmail.com

ମୁଣ୍ଡ ଟେକି ଉଠିଥିଲେବି, ତୁଷାର ନିଜ ଆଦର୍ଶ ପଥରେ ଅଟଳ ରହି ବାରମ୍ବାର ଆଦର୍ଶକୁ ଜାହିର କରିବାକୁ ଯାଇ ରୁକ୍ଷ ଭାବରେ କହିଛି—'ଦୁନିଆର ଅଜସ୍ର, ନିସ୍ୱାର୍ଥପର, ରୁଗ୍ଣଙ୍କ ପାଇଁ ଯାହା ତମର ପତ୍ନୀତ୍ୱର ଗର୍ବ ଭାଙ୍ଗେ ତ ଭାଙ୍ଗୁ ମୁଁ ଧନ ଚାହେଁ, ଯାହାକୁ ତୁମେ ଅନଳ ବୋଲି କହୁଛ, ତାଆରି ଭିତରେ ପଶି ଅଭିନୟ କରି କି ଯାହାକରି, ତମକୁ ଧନ ଆଣିବାକୁ ହିଁ ହେବ । ତମେ ଧ୍ୱଂସ ହୋଇ-ଯାଅ କ୍ଷତି ନାହିଁ ଆଶ୍ରୟ ପାଇବାକୁ ଆଶା ମୁଖରେ ଧାଇଁ ଆସି ନାସ୍ତି ବାଣୀ ଶୁଣି ଫେରି ଯିବାର ଦୁଃଖ ମୁଁ ସହି ପାରିବି ନାହିଁ ।

ଏହାହିଁ ସତେ ଯେପରି ତୁଷାରକାନ୍ତର ଆତ୍ମନେପଦୀ, ସର୍ବୋପରି କ୍ରାନ୍ତିକାରୀ ବ୍ୟକ୍ତିତ୍ୱର ଶ୍ରେଷ୍ଠ ମାପକାଠି । ପୁରୁଷ ହୋଇ ଆଦର୍ଶର ବେଳାଭୂମିରେ ନାରୀତ୍ୱକୁ ଗୁଡ଼ୁକଙ୍କ ପରି ଫିଙ୍ଗି ଫିଙ୍ଗି ବୁଲୁଥିବା ଅନ୍ଧ ତୁଷାରକାନ୍ତର ଏ ଅଭିବ୍ୟକ୍ତି ମଧ୍ୟରେ ଫୁଟି ଉଠିଛି ଲେଖକିକ ବିଶେଷତ୍ୱ ଓ କାହ୍ନୁଚରଣଙ୍କ ସୃଷ୍ଟି ପ୍ରତିଭାର କ୍ରାନ୍ତିକାରୀ ଦିଗ ।



Digitized by srujanika@gmail.com

# ଔପନ୍ୟାସିକ କାହ୍ନୁଚରଣ

କୃଷ୍ଣଚନ୍ଦ୍ର ସୁଆର

ଆଧୁନିକ ଓଡ଼ିଆ ସାହିତ୍ୟର ବୟୋଜ୍ୟେଷ୍ଠ ଓ ବିଶିଷ୍ଟ ଔପନ୍ୟାସିକ ଭାବରେ ଶ୍ରୀଯୁକ୍ତ କାହ୍ନୁଚରଣ ମହାନ୍ତି ଯଶସ୍ୱୀ ।

ସେ ଜଣେ ମହାନ୍ ସାରସ୍ୱତ ସାଧକ, ଓଡ଼ିଆ ପ୍ରାଣ, ସ୍ରଷ୍ଟା ଓ ବହୁମୁଖୀ ପ୍ରତିଭାର ଅଧିକାରୀ । ତାହାଙ୍କର ଜୀବନବ୍ୟାପୀ ଏକାନ୍ତ ନିଷ୍ଠା ଓ ନିରବଚ୍ଛିନ୍ନ ସାଧନା ଫଳରେ ସାଂପ୍ରତିକ ଓଡ଼ିଆ ଉପନ୍ୟାସ ପରିମାଣାତ୍ମକ ତଥା ଗୁଣାତ୍ମକ ଦୃଷ୍ଟିରୁ ଅଭିବୃଦ୍ଧି ହୋଇ ପାରିଅଛି । ଓଡ଼ିଆ ଉପନ୍ୟାସ ସାହିତ୍ୟ ସହିତ ସେ କାୟାଚ୍ଛାୟା ପ୍ରାୟ ଜଡ଼ିତ ଯେ, 'ଓଡ଼ିଆ ଉପନ୍ୟାସ' କହିଲେ 'କାହ୍ନୁଚରଣ' ଓ କାହ୍ନୁଚରଣ କହିଲେ ଓଡ଼ିଆ ଉପନ୍ୟାସକୁହିଁ ବୁଝାଏ । ଅବଶ୍ୟ ତାଙ୍କ ପୂର୍ବରୁ ଅନେକ ପୂର୍ବସୂରି ଅଛନ୍ତି ତଥାପି ଓଡ଼ିଆ ଉପନ୍ୟାସାକାଶରେ କାହ୍ନୁଚରଣ ଏକ ତୁଙ୍ଗ ଆସନ ଦାବୀ କରନ୍ତି । ଅପର ପକ୍ଷରେ ତାଙ୍କର ଅନେକ ଉପନ୍ୟାସ ତାଙ୍କୁ ଅନ୍ତଃପୁରର ଯୋଷାଠାରୁ ଶ୍ୟାମଳ କେଦାରମାଳାର ଚଷା ପର୍ଯ୍ୟନ୍ତ ଚିହ୍ନାଇଛି । ସାହିତ୍ୟରେ ସେ ଗୋଟିଏ ଉପନ୍ୟାସ ବିଭାଗ ଉପରେ ଲେଖନୀ ଚାଳନା କରିଛନ୍ତି ଓ ବିପୁଳ ଯଶ ଅର୍ଜନ କରିଛନ୍ତି । ତାଙ୍କ ଲେଖନୀକୃତ ନାଟକ, ଗଳ୍ପ ସଂଗ୍ରହ ଓ କବିତା ଅଙ୍ଗୁଳିମେୟ୍ର କେତୋଟି ଯାହାକି ଗଣି ଗଣି ଉପନ୍ୟାସ ନିକଟରେ ନିଷ୍ପ୍ରଭ ମନେ ହୋଇଥାଏ ।

ଏକଦା ଦ୍ୱିତୀୟ ମହାଯୁଦ୍ଧୋତ୍ତର କାଳ ବା ଆମର ସ୍ୱାଧୀନତା ପରବର୍ତ୍ତୀ କାଳ ପରେ ସାରସ୍ୱତ ଜଗତରୁ ଉପନ୍ୟାସର ଯୁଗ ଶେଷ ହୋଇଯିବବୋଲି ଆଶଙ୍କାକରାଯାଉଥିଲା, କିନ୍ତୁ ଆଜି ସେ ଦୁଃସମୟର ଆଶଙ୍କା ଅମୂଳକ ଓ କପୋଳକଳ୍ପିତ ବୋଲି ପ୍ରତିପାଦିତ ହୋଇଛି ।

Digitized by srujanika@gmail.com

ଆମେ ଯଦି ୧୮୫୭ ମସିହାରେ ପ୍ରକାଶିତ ବଙ୍ଗଳାରୁ ଅନୁଦିତ 'ଫୁଲମଣି ଓ କରୁଣାର ବିବରଣ' ଗ୍ରନ୍ଥକୁ ଉପନ୍ୟାସ ରଚନାର ଆଦ୍ୟ ଉନ୍ମେଷ ବୋଲି ଗ୍ରହଣ କରୁ, ତେବେ ଏଇ କେଇ ବର୍ଷ ହେଲା ଆମର ପୁରୁଣା ଉପନ୍ୟାସ ସାହିତ୍ୟ । ତହିଁରୁ ପ୍ରଥମ ଷାଠିଏ ବର୍ଷ ଅର୍ଥାତ୍ ୧୮୫୭ରୁ ୧୯୧୮ ମଧ୍ୟରେ ଆମର ଉପନ୍ୟାସ ସୃଷ୍ଟି ବହୁ ସ୍ୱଳ୍ପ । ଏଇ ଅଙ୍ଗୁଳିମେୟ ମାତ୍ର କେତୋଟି । ମାତ୍ର ପରବର୍ତ୍ତୀ ସମୟ ଅର୍ଥାତ୍ ୧୯୧୯ରୁ ଅଦ୍ୟାବଧି ଉପନ୍ୟାସ କ୍ଷେତ୍ରରେ ସୁନା ଫସଲର ସମୟ... । ଏକ ଦୁଃସମୟ ଓ ଅବୁଝା ମନର. ଅଜବ ଆଶଙ୍କାକୁ ଖଣ୍ଡନ କରିବା ହିଗରେ ସୁନା ଫସଲ ଆମଦାନୀରେ ଯଥାର୍ଥ ଭଗୀରଥ ସ୍ୱରୂପ ଔପନ୍ୟାସିକ କାହ୍ନୁଚରଣଙ୍କର ଅବଦାନ ନିଶ୍ଚିତ ଗୁରୁତ୍ୱ-ପୂର୍ଣ୍ଣ ଓ ଆଦୃର ଅବସ୍ମରଣୀୟ ମନେ ହୋଇଥାଏ । ସାଂପ୍ରତିକ ଉପନ୍ୟାସ ସାହିତ୍ୟକୁ ସେ ସର୍ବଜନସମାଦୃତ କରାଇବାରେ ନେତୃତ୍ୱ ନେଇଛନ୍ତି ।

ତାଙ୍କର ଭାଷା ସହଜ, ସରଳ ଓ ସର୍ବଜନବୋଧ୍ୟ । ସେ ସରଳ ଲୋକ ପ୍ରଚଳିତ ଭାଷାରେ ଏ ଦେଶର ଜନଜୀବନରେ ବହୁ ସମସ୍ୟା ଏବଂ ବହୁ ହୃଦୟର ନିଗୂଢ଼ ବେଦନା ଓ ଶାଶ୍ୱତ ଅନ୍ତର୍ଦାହକୁ ଜଣେ ଶାଶ୍ୱତ ସ୍ରଷ୍ଟା ଭାବରେ ଅତି ନିପୁଣତାର ସହ ଚିତ୍ରଣ କରିଛନ୍ତି । ତାଙ୍କ ଲେଖଣୀକୃତ ସରଳ, ସାବଲୀଳ ଓ ହୃଦୟସ୍ପର୍ଶୀ ଭାଷାର ଏକ ଉଦାହରଣ ଦ୍ରଷ୍ଟବ୍ୟ—

"ଗ୍ରାତି ଅଧରେ ମହାଦୀପ ଉଠିଲା । ଲୋକଙ୍କର କୋଳାହଳ କମିଲା । ଆଜ କାଲ ଅଠର ପଡୁନାହିଁ । ଲିଙ୍ଗରାଜ ମହାପ୍ରଭୁଙ୍କର ବଡ଼ ପରବ । କେତେ ଗ୍ରାମ, କେତେ ରାଇଜର ସହସ୍ର ସହସ୍ର ଲୋକ ଭୁବନେଶ୍ୱରରେ ରୁଣ୍ଡ ହୋଇଛନ୍ତି । କାହାର କେତେ ପ୍ରକାରର ମନକାମନା, ବାସନା, ଜଗାଗରା ରହି ମନ୍ଦିରଭିତରେ ରାତି କାଟିବେ ।"

( ଉପନ୍ୟାସ ନିଷ୍କୃତି )

ଏହି ସିଦ୍ଧ ସାଧକଙ୍କର ଆବିର୍ଭାବ ହୁଏ ବଲାଙ୍ଗିର ଜିଲ୍ଲାର ସୋନପୁର ସହରରେ ୧୧।୮।୧୯୦୬ ତାରିଖରେ । ତାଙ୍କର ପିତାଙ୍କ

Digitized by srujanika@gmail.com

ନାମ ସୂର୍ଯ୍ୟମଣି ମହାନ୍ତି ଓ ମାତାଙ୍କ ନାମ ଦୁର୍ଗାବତୀ । କବି ଶ୍ରୀଯୁକ୍ତ ମହାନ୍ତିଙ୍କର ଆଦି ନିବାସ ସ୍ଥଳ କଟକ ଜିଲାର ନାଗବାଲି ଗ୍ରାମ । ତାଙ୍କ ଅନୁଜ ଜ୍ଞାନପୀଠ ପୁରସ୍କାର ବିଜେତା ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତି ଅନ୍ୟତମ ପ୍ରଖ୍ୟାତ ଔପନ୍ୟାସିକଭାବେ ସମ୍ମାନିତ ।

ତୁଳସୀ ଦୁଇ ପକ୍ଷରୁ ବାସିଲି ଭଳି ବାଲ୍ୟକାଳରୁହିଁ କାହ୍ନୁ-ଚରଣଙ୍କର ସମ୍ୟକ୍ ପରିଚୟ ମିଳିଥିଲା । ତେବେ ସୋନପୁରରୁହିଁ ତାଙ୍କର ସାହିତ୍ୟ ପ୍ରୀତିର ଆବିର୍ଭାବ କହିଲେ ଅତ୍ୟୁକ୍ତି ହେବନି ।

କାବ୍ୟ କବିତାରେ କବି ନିଜର ପରିଚୟୋକ୍ତି ପ୍ରଦାନ କଲାଭଳି ଆଜି ନାଟକ,ଉପନ୍ୟାସ କ୍ଷେତ୍ରରେ ମଧ୍ୟ ନାଟ୍ୟକାର ବା ଔପନ୍ୟାସିକ ପରିଚୟୋକ୍ତି ପ୍ରଦାନ କରିଥାନ୍ତି । ଆଲୋଚ୍ୟ ଔପନ୍ୟାସିକଙ୍କ ଅମର ଲେଖନୀକୃତ 'ଅନ୍ତରାୟ' ଉପନ୍ୟାସରେ ତାହାଙ୍କର ସଂକ୍ଷିପ୍ତ ଜୀବନୀ ପ୍ରଦତ୍ତ ।

ଶ୍ରୀଯୁକ୍ତ ମହାନ୍ତି ଓଡ଼ିଆ ଉପନ୍ୟାସ ସାହିତ୍ୟର ପ୍ରମୁଖ ଲେଖକ । ମୁଖ୍ୟତ ଜଣେ ସରକାରୀ କର୍ମଚାରୀ ଥିଲେ ମଧ୍ୟ ଭାବ ପ୍ରକାଶରେ ସେ ସ୍ୱାଧୀନଚେତା । ତେଣୁ ତାଙ୍କ ଲେଖନୀ ନିଃସୃତ ହୋଇଛି—"ଲୋକଙ୍କ କଥାକୁ ଖାତିର ନକଲେ ହେଲା, ଯେଉଁ ସମାଜ ଲୋକର ଦୁଃଖ ଶୋକ ବୁଝିବାକୁ ଚେଷ୍ଟା ନକରି ଆଖି ବୁଜି ବସେ ସେ ସମାଜର କଥାରେ ଭ୍ରୂକ୍ଷେପ ନକଲେ ହେଲା । (ପଳାତକ, ପୃ ୧୦୨) । ତାଙ୍କର ସଫଳକୃତି 'ହା'ଅନ୍ନ' ରଚନା କଲାବେଳେ ମଧ୍ୟ ସେ ସମସ୍ତର ସରକାରୀ ଫାଇଲ ଦେଖି କେତେକ ଘଟଣା ସ୍ଥାନ ଦେଇଥିବା ଜଣାଯାଏ । ତେଣୁ ସେ ଯେତେବେଳେ ଯାହା ପ୍ରକାଶ କରିଛନ୍ତି ତାହା ହୋଇ ଉଠିଛି ଖୋଲା ଝରକାଭଳି ମୁକ୍ତ । ସେ ଓଡ଼ିଶା ସରକାରଙ୍କ ଶାସନ ବିଭାଗୀୟ ଉଚ୍ଚପଦସ୍ଥ କର୍ମଚାରୀ ଭାବରେ ବିଭିନ୍ନ କ୍ଷେତ୍ରରେ ସୁଖ୍ୟାତିର ସହ କର୍ମସଂପାଦନ କରି ଅବସର ଗ୍ରହଣ କରିଛନ୍ତି । ତଥାପି ଓଡ଼ିଆ ଭାଷା ଓ ସାହିତ୍ୟର ବିକାଶ ପାଇଁ ସେ କର୍ମମୟ ଜୀବନର ଅବସନ୍ନ ଅବସରରେ ଓଡ଼ିଆ ସାହିତ୍ୟ

Digitized by srujanika@gmail.com

ସର୍ଜନା କରିବାରେ ହେଳା କରି ନାହାନ୍ତି । ଏ ପର୍ଯ୍ୟନ୍ତ ସୁଦ୍ଧା ସେ ଉପନ୍ୟାସ ସୃଷ୍ଟିରେ ବ୍ୟାପୃତ ଅଛନ୍ତି ।। ଭକ୍ତକବି ମଧୁସୂଦନ ରାଓଙ୍କର ଅବିନାଶୀ ଉକ୍ତି—

"ମାତୃଭୂମି, ମାତୃଭାଷା ଉଭୟେ ଜନନୀ
ସେବ ତାଙ୍କୁ ଭକ୍ତିଭରେ ଦିବସ ରଜନୀ ।"

ଏହାହିଁ କାହ୍ନୁଚରଣଙ୍କର ଜୀବନ ଆଦର୍ଶର ପ୍ରତି ଛନ୍ଦେ ଛନ୍ଦେ ପ୍ରତିଫଳିତ ହୋଇଛି ।

ଔପନ୍ୟାସିକ କାହ୍ନୁଚରଣଙ୍କର ସାମାଜିକ ଉପନ୍ୟାସ 'ଶାସ୍ତି' ଏକ କ୍ରାନ୍ତିକାରୀ ସୃଷ୍ଟି । ଏହାର ନାମକରଣ ସେ ଏକ ବୈଜ୍ଞାନିକ ଉପାୟରେ ସ୍ଥିର କରି ନିଜର ପ୍ରତିଭାର ପରିଚୟ ଦେଇଅଛନ୍ତି । କୌଣସି ନାୟକ ନାୟିକାଙ୍କ ନାମ ଉପରେ ଏହା ପ୍ରତିଷ୍ଠିତ ନୁହେଁ କିମ୍ବା ସ୍ଥାନର ମହନୀୟତା ପ୍ରକାଶ କରି ତା'ର ନାମାନୁସାରେ ଉପନ୍ୟାସଟିକୁ ନାମକରଣ କରିନାହାନ୍ତି । ଏଥିରେ ଅବିନାଶୀ ଚିନ୍ତାଧାରାର ଆଦର୍ଶ ଓ ବାସ୍ତବ ରୂପ ସୃଜିବାରେ କାହ୍ନୁଚରଣଙ୍କ ଦୃଷ୍ଟି - ଭଙ୍ଗୀର ସ୍ୱତନ୍ତ୍ରତା ରହିଛି । ଯଥାର୍ଥତଃ ପ୍ରେମଚାନ୍ଦଙ୍କ ମତରେ ଆଦର୍ଶ ଓ ବାସ୍ତବର ସୁସଂଗତ ସମାବେଶରେହିଁ ଉଚିତ୍ ଉପନ୍ୟାସର ସୃଷ୍ଟି ।

ନଅଙ୍କ ଦୁର୍ଭିକ୍ଷର ସମୟ ଓ ନଅଙ୍କର ପରବର୍ତ୍ତୀ ସମୟକୁ କେନ୍ଦ୍ର କରି କାହ୍ନୁଚରଣ ରଚନା କରିଛନ୍ତି 'ହା'ଅନ୍ନ' ଓ 'ଶାସ୍ତି' ଉପନ୍ୟାସ । ହା'ଅନ୍ନ ବହିରେ ଦୁର୍ଭିକ୍ଷ ପୂର୍ବବର୍ତ୍ତୀ ଓ ଦୁର୍ଭିକ୍ଷ ସମୟର ଚିତ୍ର ପ୍ରଦାନ କରାଯାଇଛି । ଏତାଦୃଶ ଭୀଷଣ ଦୁର୍ଭିକ୍ଷର ଲୋମହର୍ଷଣ କାରୀ ଜୀବନ୍ତ ଚିତ୍ର ଔପନ୍ୟାସିକ ଫକୀରମୋହନଙ୍କ ଆତ୍ମଜୀବନ ଚରିତରେ ସ୍ପଷ୍ଟ ରୂପେ ଅଙ୍କିତ । କିନ୍ତୁ ଶାସ୍ତି ଉପନ୍ୟାସରେ ନଅଙ୍କ ଦୁର୍ଭିକ୍ଷ ୧୮୬୬ ମସିହାର ପରବର୍ତ୍ତୀ ସାମାଜିକ ଜୀବନର ଚିତ୍ର ସଂଘର୍ଷକୁ ଲେଖକ ମର୍ମସ୍ପର୍ଶୀ ଭାବରେ ବର୍ଣ୍ଣନା କରିଅଛନ୍ତି । କେତେକ ସମାଲୋଚକଙ୍କ ମତରେ 'ଓଡ଼ିଶାକୁ ଜାଣିବାକୁ ହେଲେ ପଢ଼ିବାକୁ

Digitized by srujanika@gmail.com

ହେବ ହା'ଅନ୍ନ ଓ ଓଡ଼ିଆଙ୍କୁ ଜାଣିବାକୁ ହେଲେ ପଢିବାକୁ ହେବ ଶାସ୍ତି ।" ବାସ୍ତବରେ ହା'ଅନ୍ନ ଓ ଶାସ୍ତି ଏକ ଅନବଦ୍ୟ ସୃଷ୍ଟି । ବିଶେଷ କରି ତତ୍କାଳୀନ ସମାଜରେ ସାଧାରଣ ଲୋକେ କିପରି ନିଷ୍ପେଷିତ ହୋଇ ସମସ୍ତ କଟାଉଥିଲେ, ଧର୍ମ ନାମରେ କିପରି ବ୍ୟଭିଚାର ଚାଲିଥିଲା, ଏ ସମସ୍ତ କଥାକୁ ଅତି ସୁନ୍ଦର ଭାବରେ ସଂସ୍କାରବାଦୀ ଲେଖକ ବର୍ଣ୍ଣନା କରିଅଛନ୍ତି । ଗୋଟିଏ ପଟରେ ବାସ୍ତବକ୍ଷେତ୍ର ଜୀବନର ଯନ୍ତ୍ରଣା ଏବଂ ଅନ୍ୟ ପକ୍ଷରେ ଆଦର୍ଶ—ଏହାର ଦ୍ୱନ୍ଦ୍ୱକୁ ସୁନ୍ଦର ଭାବରେ ପ୍ରକାଶ କରି ଅଛନ୍ତି । ଲେଖକ ଚାହିଁଛନ୍ତି ଏକ ଶୋଷଣମୁକ୍ତ ସାମ୍ୟ ସମାଜ । ତେଣୁ ଦୁର୍ଭିକ୍ଷ ଫେରନ୍ତା ସନେଇକୁ ସେ ଆଦର୍ଶ ଚରିତ୍ର କରିନେଇ ତାର ମାଧ୍ୟମରେ ସାମ୍ୟବାଦୀ ଆଦର୍ଶକୁ ପ୍ରଚାର କରିବାକୁ ଆଶାୟୀ ହୋଇ ଉଠିଛନ୍ତି । ଜାତି ଧର୍ମର ଯୁଗ ଯୁଗର ବନ୍ଧନକୁ ଭୁଟାଇ ଦେଇ ଏକ ନୂଆ ସମାଜ ଗଠନ କରିବାକୁ ସନେଇ ଅଗ୍ରସର ହୋଇଛି ସତ, ହେଲେ ସେ ସମୟର ସମାଜରେ ଏହି ଆଦର୍ଶକୁ ପ୍ରତିଷ୍ଠା କରି ପାରି ନାହିଁ । ବରଂ ସେ ପଳାୟନପନ୍ଥୀ ହୋଇ ଚାଲି ଯାଇଛି ।

ଏଇଥିରୁ ଅନୁମିତ ହୁଏ ସମାଜ ସଚେତନ ଶିଳ୍ପୀ, ଲେଖକ ତାଙ୍କର ଆଦର୍ଶବାଦ ଓ ଜୀବନ ଦର୍ଶନ ପ୍ରତି ଯଥେଷ୍ଟ ସଚେତନ ହେଲେହେଁ ତାକୁ ଠିକ୍ ଭାବରେ ପରୀକ୍ଷା କରି ପାରିନାହାନ୍ତି । ଶଙ୍ଖା ସିନ୍ଦୂର, ବସନଭୂଷଣ ପରିତ୍ୟକ୍ତା ବିଧବାର ପୁନର୍ମିଳନକୁ ଆଦର୍ଶଗତ ଭାବରେ ଗ୍ରହଣ କରିଥିଲେ ହେଁ ତାହା ଭୂଷୁଡ଼ି ପଡ଼ିଛି । ସାମ୍ୟବାଦୀ ଜୀବନ ଦର୍ଶନକୁ ବ୍ୟାଖ୍ୟା କରିଥିଲେ ହେଁ ତାହା ବ୍ୟର୍ଥ ହୋଇଯାଇଛି । ଏହି ପରିପ୍ରେକ୍ଷୀରେ ଲେଖକଙ୍କ ଅସ୍ମିତାଗତ ସାମ୍ୟବାଦୀ ଆଦର୍ଶ ଓ ମାନବବାଦୀ ଜୀବନ ଦର୍ଶନ ସଂପର୍କିତ ଗଭୀର ଅବବୋଧ ଏକଥା ଅସ୍ୱୀକାର କରିବାର ନୁହେଁ ।

ବିଖ୍ୟାତ ଔପନ୍ୟାସିକ ଫକୀରମୋହନଙ୍କ 'Criminal must be Punished' ସାହିତ୍ୟର ମୂଳମନ୍ତ୍ର ହେଲାଭଳି ଔପନ୍ୟାସିକ କାହ୍ନୁଚରଣଙ୍କ ନୀତି ମଧ୍ୟ ସମସ୍ୟାର ଉନ୍ମୋଚନ କରିଥାଏ । କାରଣ ଫକୀର

Digitized by srujanika@gmail.com

ମୋହନଙ୍କ 'ପ୍ରାୟଶ୍ଚିତ'ରେ ଜମିଦାର୍ ବୈଷ୍ଣବଚରଣ ପଟ୍ଟନାୟକ ବିଦ୍ୟାଧର ମହାପାତ୍ର, ସଙ୍କର୍ଷଣ ମହାନ୍ତି, ଗୋବିନ୍ଦଚନ୍ଦ୍ର (କୁଅଁର ବାବୁ), ସଦାନନ୍ଦ, ଇନ୍ଦୁମତୀ, ସଇତା ଏପରିକି ମରୁଆ ମଧ୍ୟ ନିଜ କୃତ କର୍ମ ପାଇଁ ଅନୁତପ୍ତ ହେବାକରି ପ୍ରାୟ ପ୍ରତ୍ୟେକେ ପ୍ରାୟଶ୍ଚିତ କାମନା କରିଛନ୍ତି । ସେହିପରି ଔପନ୍ୟାସିକ କାହ୍ନୁଚରଣଙ୍କ 'ଶାସ୍ତି' ଉପନ୍ୟାସରେ (୧) ସନେଇକୁ ଶାସ୍ତି ଦେବାକୁ ଯାଇ ରତ୍ନେଇ ସ୍ୱାମୀ ଶାସ୍ତି ପାଇଛନ୍ତି । (୨) ସନେଇକୁ ପାଇବାକୁ ଯାଇ ସମାଜର ପ୍ରଚଣ୍ଡ ଧକ୍କାରେ ଧୋବାର ଆଶାର ମିନାର ଭାଙ୍ଗିଯିବା ଫଳରେ ସେ ଶାସ୍ତି ପାଇଛି । (୩) ଧୋବାକୁ ପାଇବାକୁ ଯାଇ ପ୍ରେମିକ ସନେଇ ହତାଶାର ଦୀର୍ଘଶ୍ୱାସ ଟାଣି ଶାସ୍ତି ପାଇଛି (୪) କାହିଁ ଦୁର୍ଭିକ୍ଷର କବଳ ଗ୍ରାସରୁ ଫେରି ନିଜ ଗର୍ଭଜାତ ସନ୍ତାନର ଜନକ ବୋଲି ସନେଇକୁ ଦାୟୀ କଲାପରେ ସନେଇର ବ୍ୟକ୍ତିତ୍ୱ ନିକଟରେ ହାରି ମାନି ସବୁ ସତ୍ୟ ଘଟଣା ପ୍ରକାଶ କରି ମନ ମଧ୍ୟରେ ଶାସ୍ତି ପାଇଛି । (୫) ଏକ ଭୁଲ ବୁଝାମଣାରେ ସ୍ତ୍ରୀକୁ ମାଡ଼ ଦେଇ ଘରୁ ବାହାର କରି ଦେବାର ନିଷ୍ପତ୍ତିର ପରକ୍ଷଣରେ ସ୍ତ୍ରୀର ବ୍ୟବହାରରେ ବିସ୍ମିତ ହୋଇ ମଧୁ ଭୋଇ ଶାସ୍ତି ପାଇଛି । (୬) ଉଚ୍ଛୃଙ୍ଖଳ ସମାଜର ପ୍ରତିଭୂ ନାମଧାରୀ ସ୍ୱେଚ୍ଛାଚାରୀ ପ୍ରହରାଜ ବହୁ ଅନ୍ୟାୟ ପରେ ଭଗବାନଙ୍କ ଦରବାରରେ ଶାସ୍ତି ପାଇଛନ୍ତି । (୭) ବନେଇ ପଣ୍ଡା ବଂଶର ଆଭିଜାତ୍ୟ ନେଇ ଧୋବାର ହାତକୁ ବଢ଼ାଇ ଦେବା ବାହା-ଘରକୁ ପ୍ରତ୍ୟାଖ୍ୟାନ କରି ସର୍ବଗ୍ରାସୀ ଦୁର୍ଭିକ୍ଷ କବଳରୁ ବଂଚି ନପାରି ଶାସ୍ତି ବରଣ କରିଛି । ଏପରିକି ଉପନ୍ୟାସକମାନ୍ତ କୌଣସି ଚରିତ୍ର ଶାସ୍ତିରୁ ବାଦ ଯାଇ ନାହାନ୍ତି ।

'ପ୍ରାୟଶ୍ଚିତ'ରେ ଦେଖା ଦେଇଥିବା ତତ୍କାଳୀନ ସମାଜର ଅଯଥା ଜାତ୍ୟାଭିମାନର ସ୍ୱରକୁ ସମାଜ ସଚେତନ ଶିଳ୍ପୀ ଫକୀର ମୋହନ ତାଙ୍କ ଲେଖନୀ ନିଃସୃତ ତୀକ୍ଷ୍ଣ ଅସ୍ତ୍ରରେ କୁଠାରାଘାତ କରିବାକୁ ଚେଷ୍ଟା କରିଛନ୍ତି । ଅନୁରୂପ ଭାବେ ଏହି ଜାତ୍ୟାଭିମାନର

Digitized by srujanika@gmail.com

ସ୍ୱର ଔପନ୍ୟାସିକ କାହ୍ନୁଚରଣଙ୍କ 'ଶାସ୍ତି'ରେ ମଧ୍ୟ ଆହ୍ବର ଛାୟା ପ୍ରାଞ୍ଜଳ··· ।

ଫକୀରମୋହନଙ୍କ ସୃଷ୍ଟିର ଏଭେରେଷ୍ଟ 'ଛମାଣ ଆଠଗୁଣ୍ଠ' ଉପନ୍ୟାସର ସକଳ ନାଟର ସୂତ୍ରଧର ରାମଚନ୍ଦ୍ର ମଙ୍ଗରାଜଙ୍କ ସହିତ ଶାସ୍ତିର ସକଳ ନାଟର ସୂତ୍ରଧର ଶନ୍ରେଇ ସ୍ୱାଇଁ ଅନେକାଂଶରେ ସାଦୃଶ୍ୟ ଥିବାର ଜଣାଯାଏ ।

ଏତଦ୍‌ବ୍ୟତୀତ କାବ୍ୟ କବିତା ପରି ଉପନ୍ୟାସ ମଧ୍ୟ ଜୀବନର ପ୍ରତିଚ୍ଛବି, ତେଣୁ ଉପନ୍ୟାସରେ ଜୀବନର ଗଭୀର ଅନୁଭୂତି ପ୍ରତି-ଫଳିତ ହେବା ସ୍ୱାଭାବିକ କଥା । ଏହି ପରିପ୍ରେକ୍ଷୀରେ ଫକୀର ମୋହନଙ୍କ ଉପନ୍ୟାସ ହେଉଛି ଏକ ସୂକ୍ତିର ଭଣ୍ଡାର । ପ୍ରାୟ ପ୍ରତ୍ୟେକ ଉପନ୍ୟାସରେ ସେ ଶିକ୍ଷା ଛଳରେ ଅସଂଖ୍ୟ ସୂକ୍ତି ପ୍ରୟୋଗ କରିଛନ୍ତି । କାହ୍ନୁଚରଣଙ୍କ ଅସଂଖ୍ୟ ଉପନ୍ୟାସରେ ମଧ୍ୟ ଉକ୍ତି, ତଥା ସମାଜର ଅନୁଭୂତି ଏବଂ ଅଭିଜ୍ଞତାମୂଳକ ଅନେକ ପଂକ୍ତି ଦେଖାଯାଏ, ଯାହାକୁ ସୂକ୍ତି ନାମରେ ଅଭିହିତ କଲେ ହୁଏତ ଅପ୍ରାସଙ୍ଗିକ ହେବ ନାହିଁ । କାରଣ ଏଗୁଡିକ ଯେପରି ଶିକ୍ଷାପ୍ରଦ, ସେହିପରି ସୁଗଭୀର ମାନବିକ ସତ୍ୟାନୁଭୂତିର ପରିପ୍ରକାଶକ । ଉଦାହରଣତଃ କେତେକ ସୂକ୍ତି ଉଦ୍ଧୃତ ହେଲା—

୧—'ଦୁର୍ନାମ ଅପବାଦ ତୁଣ୍ଡବାଇଦ ଅନ୍ଧାରି ରାତିର ଭୂତର ଭୟ । (ତୁଣ୍ଡବାଇଦ ପୃ୧୮୭)

୨—'ଦୁନିଆ ମଣିଷ ଗଢେ ନାହିଁ, ମଣିଷ ଗଢ଼େ ତାର ଦୁନିଆ ।' (ଝଞ୍ଜା, ପୃ୪୭୦)

୩—'ବେଙ୍ଗ କହେ ବେଙ୍ଗୁଲୀଲେ, ପୃଥିବୀ କ୍ଷଣ କ୍ଷଣକେ ଆନ ।

୪—'ସ୍ନେହକୁ ମାନକର ଯିଏ ଖପରରେ ଖାଏ, ସେ ନିର୍ବୋଧ ।

୫—'ହାତ ଥିଲେ ମଧ୍ୟ ଭାତର ଅଭାବ ହେବ ନାହିଁ ।

୬—'ଯୁବତୀ ଝିଅ ଯେ ବିଷ ସମାନ ।'

Digitized by srujanika@gmail.com

୭—'ଯିଏ ବଡ଼ ହେବାକୁ ଖୁଜେଁ, ତାକୁ ଶ୍ରେଷ୍ଠ ହେବାକୁ ପଡେ, ଯିଏ ସବୁପାରେ ସିଏ ହୁଏ ମଣିଷ ।'

୮—'ଧନ୍ୟରେ ଲକ୍ଷ୍ମୀ କଏ ବା ତଇବନ ବଂଚବ । ଦୁଃଖୀ ଭଙ୍କୀଙ୍କ ଦୁଃଖ ଯିଏ ବୁଝିଲ, ସିଏ ମଣିଷ ନୁହେଁ ଦେବତା ।'

ଶାସ୍ତି)

ବିଷୟବସ୍ତୁରେ ସାମାନ୍ୟ ବ୍ୟତିକ୍ରମ ମନେ ହେଲେହେଁ ଔପନ୍ୟାସିକ ଫକୀରମୋହନଙ୍କ ପ୍ରାୟଶ୍ଚିତ ସହିତ ଶାସ୍ତିର ଅନେକ ସାଦୃଶ୍ୟ ଥିବାର ମନେହୁଏ । ସାରମର୍ମ ସ୍ୱରୂପ ଏହା ସ୍ୱୀକାର୍ଯ୍ୟ ଯେ ମଣିଷ ନିଜ କୃତ କର୍ମ ପାଇଁ ଅନୁତପ୍ତ ହୋଇ ପ୍ରାୟଶ୍ଚିତ କାମନା କରୁଥିଲବେଳେ ଆପଣା କର୍ମ ପାଇଁ ଶାସ୍ତି ପାଇବା ପ୍ରାୟ ଏକା କଥା । ଏଠି ମୂଳ କଥା ହେଲ କର୍ମ । କଥାରେ କହନ୍ତି—"ଯେ ଯେପରି କର୍ମ କରେ ସେ ସେହିପରି ଫଳ ପାଏ" ଏବଂ ଯେ ପର ପାଇଁ ଗାତ ଖୋଳେ ସେ ସେହି ଗାତରେହିଁ ପଡ଼େ ।

ଫକୀରମୋହନ ଏକ ଅଭିଭାଷଣରେ ବ୍ୟକ୍ତ କରିଥିଲେ— 'ଅତପର ଶିକ୍ଷିତ ଲୋକମାନେ ଭଲ ଉପନ୍ୟାସ ଲେଖିବେ । ସେଥିପାଇଁ ମୁଁ ଗୋଟିଏ ଗୁଳ୍ଫ କରି ଯାଉଛି । ଯଥାର୍ଥତାର ଝଲକ ସ୍ୱରୂପ ଏଇଥିରୁ ଅନୁମିତ ହୁଏ ଫକୀରମୋହନ ସେନାପତିଂକ ପରେ ପରେ ଔପନ୍ୟାସିକ ସାହିତ୍ୟକୁ ଆଙ୍ଗିକ ଓ ଆତ୍ମିକ ମୋଡ଼ ଦେଇ ଗୁରୁତ୍ୱପୂର୍ଣ୍ଣ ଭାବରେ ପାଠକ-ଜଗତ ଓ ନୂତନ ଔପନ୍ୟାସିକମାନଂକ ପାଇଁ କାହ୍ନୁଚରଣ ଯେଉଁ ବିଶାଳ ଔପନ୍ୟାସିକ ଜଗତର ଦ୍ୱାର ଉନ୍ମୁକ୍ତ କରିଛନ୍ତି, ତାହା ଅନନ୍ୟ ଓ ମୌଳିକ । ତରୁଣ ଲେଖକଂକ ନିକଟରେ ସେ ବିଶେଷ ପ୍ରଭାବଶାଳୀ ।

ସାମାଜିକ ଉପନ୍ୟାସ ଶାସ୍ତି ବ୍ୟତୀତ ସେ ଅନେକ ଜୀବନୀ ମୂଳକ ମନସ୍ତାତ୍ତ୍ୱିକ ସମସ୍ୟାମୂଳକ ବା ପ୍ରବୃତ୍ତିମୂଳକ ଆଦି ବିଭିନ୍ନ ପର୍ଯ୍ୟାୟର ଉପନ୍ୟାସ ରଚନା କରିଛନ୍ତି । ପ୍ରାୟ ପ୍ରତ୍ୟେକ ବିଷୟବସ୍ତୁର ପରିସର ଅତ୍ୟନ୍ତ ବ୍ୟାପକ ମନେ ହୋଇଥାଏ । ଉପନ୍ୟାସ ମଧ୍ୟରୁ

Digitized by srujanika@gmail.com

'ଭୁଣ୍ଡି ବାଛିଦ', ଅଦେଖାହାତ, ଓଲଟପାଲଟ, ଆହତ ସମାଜର ଅନ୍ଧ ବଗ୍ଗର ଓ ଅନ୍ଧବଗ୍ଗର ମିଳନର ଛନ୍ଦରେ ଆଧୁନିକ ଶିକ୍ଷା ଏବଂ ତାର ପ୍ରତିକ୍ରିୟା ଓ 'ଝଞ୍ଜା'ରେ ଆଧୁନିକ ସମାଜ ଜୀବନ ଓ ମଣିଷ ଜୀବନ ପ୍ରତି ଯେଉଁ ପ୍ରଳୟ ଓ ଧ୍ୱଂସ ଜନିତ ସମସ୍ୟାର ଝଞ୍ଜା ପ୍ରଭୃତି ମାନବ ଅନ୍ତରରେ ଗଭୀର ରେଖାପାତ କରିଥାଏ । ତାହାଙ୍କର ରଚିତ 'ଚମ୍ପାଷାଷ୍ଟରେ' ଓଡ଼ିଆ ଭାଷାର ସର୍ବବୃହତ୍ ଉପନ୍ୟାସ ଓ ସଦ୍ୟ ପ୍ରକାଶିତ 'ସତ୍ୟବର୍ଣ୍ଣ' ବୋଧକରେ ଓଡ଼ିଆରେ ପ୍ରଥମ ପୌରାଣିକ ଉପନ୍ୟାସ ଓ ପ୍ରତିଟି ଉପନ୍ୟାସ୍ୟଗୋଟିଏ ଗୋଟିଏ ସାର୍ଥକ ସୃଷ୍ଟି ।

ଓଡ଼ିଆ ଉପନ୍ୟାସ ସାହିତ୍ୟର ଜନକ ବ୍ୟାସକବି, କବିସମ୍ରାଟ ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ, କାଳନ୍ଦୀଚରଣଙ୍କ 'ମାଟିର ମଣିଷ ଭଳି ସ୍ରଷ୍ଟା କାହ୍ନୁଚରଣଙ୍କ ଅମଳିନ ସୃଷ୍ଟି ହାଅନ୍ଧ, ଶାସ୍ତି, ଜା, ପ୍ରଭୃତି ଗୋଟିଏ ଗୋଟିଏ ବାସ୍ତବବାଦ ରଚନା ମାନଙ୍କ ଭିତରେ ଯେ ଏକ ମୌଳିକ ଓ ପରମ କୃତି (ମାଷ୍ଟରପିସ) ଏଥିରେ ସନ୍ଦେହ ନାହିଁ ।

୧୯୫୯ରେ ଜା ଉପନ୍ୟାସ ପାଇଁ ସେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ । ଏତଦ୍‌ବ୍ୟତୀତ ତାହାଙ୍କର ବହୁ ଉପନ୍ୟାସ ବିଭିନ୍ନ ଭାରତୀୟ ଭାଷାରେ ଅନୂଦିତ, ନାଟ୍ୟରୂପ ଚଳଚ୍ଚିତ୍ରରେ ରୂପାୟିତ ଓ ପାଠ୍ୟ ପୁସ୍ତକ ରୂପେ ଗୃହୀତ ହୋଇଅଛି ।

ପରିଶେଷରେ ଔପନ୍ୟାସିକ କାହ୍ନୁଚରଣ ଓଡିଆ ସାହିତ୍ୟାକାଶରେ ଏକ ଯୁଗାନ୍ତକାରୀ ଉଜ୍ଜ୍ୱଳ ଜ୍ୟୋତିଷ୍କ ରୂପେ ପ୍ରତିଭାତ । ତାହାଙ୍କର ପ୍ରତ୍ୟେକ ସୃଷ୍ଟି ହେଉଛି ତାଙ୍କର ପ୍ରଚଣ୍ଡ ପ୍ରତିଭାର ସ୍ମାରକୀ । ବାସ୍ତବରେ ତାଙ୍କର ଅକ୍ଳାନ୍ତ ନିଷ୍ଠା ଓ ଅସାଧାରଣ ସାଧନା ଯୋଗୁଁ ସେ ଆଉ କୌଣସି ଗଣ୍ଡୀ ସୀମା ମଧ୍ୟରେ ଆବଦ୍ଧ ନାହାନ୍ତି । ସେ ଆଜି ଆଉ ଏକ ବ୍ୟକ୍ତି ବିଶେଷ ନୁହନ୍ତି, ଗୋଟିଏ ବିରାଟ ଅନୁଷ୍ଠାନ ।

ବି. ଏଲ୍-୪୦, ବୀର ସୁରେନ୍ଦ୍ର ସାଏ ନଗର,
ବାଣୀବିହାର-୪

Digitized by srujanika@gmail.com

# ଝନ୍‌ଜା ଓ କାହ୍ନୁଚରଣ

**ଶ୍ରୀ ବନବିହାରୀ ପଣ୍ଡା**

ଜୀବନର ଗତି ସର୍ବଦା ପିଚ୍ଛିଳ । ଜୀବନର ରାସ୍ତା ଅଙ୍କା ବଙ୍କା, ଜୀବନର ରାସ୍ତା ଉପରେ ଅନେକ ସମୟରେ ନଇଁ ଆସେ ଝଡ଼, ଝନ୍‌ଜା ଓ ଅନ୍ଧାର । ଜୀବନର ଆଲୋକ ଲିଭିଯାଏ ଓ ଦିଗନ୍ତ ବିସ୍ତାରି ଅନ୍ଧକାରର ଛାଇ ଲମ୍ବି ଆସେ ଜୀବନର କେନ୍ଦ୍ର ବିନ୍ଦୁର ଅତି ନିକଟକୁ । ଏହି ଦୁନିଆରେ ଏପରି ଜଣେ ବି କେହି ନାହିଁ, ଯାହାର ଜୀବନରେ ଝଡ଼ ଆସିନି, ଝନ୍‌ଜା ଆସିନି । ସମସ୍ତେ କେବେନା କେବେ ଜୀବନ ଝଞ୍ଜାର ସମ୍ମୁଖୀନ ହୋଇଛନ୍ତି, କିଏ ଜୀବନ ଝଞ୍ଜାର ସମ୍ମୁଖୀନ ହୋଇ ଜୀବନ ସାରା ଦୁଃଖ ପାଉଛି, କିନ୍ତୁ ହାରି ଯାଇନି । ଆଉ ବା କେହି ଝଞ୍ଜାର ସମ୍ମୁଖରେ ମଥା ନୁଆଇଁ ଦେଉଛି ହାରି ଯାଉଛି ଓ ଜୀବନର କର୍ମ ସ୍ଥଳକୁ ଛାଡ଼ି ଚାଲି ଯାଉଛି ଦୂରକୁ, ବହୁତ ଦୂରକୁ ଓ ଛାଡ଼ି ଯାଉଛି ଅନ୍ୟମାନଙ୍କ ପାଇଁ କେବଳ ଏକ କାରୁଣ୍ୟଭରା କାହାଣୀ ।

ଜୀବନର ଏହି ଝଡ଼ ଝଞ୍ଜାର ଏକ ସଫଳ ଚିତ୍ର କାହ୍ନୁ ବାବୁଙ୍କର ସାର୍ଥକ ସୃଷ୍ଟି ଝଞ୍ଜା । ଅଗଣିତ ପାଠକମାନଙ୍କୁ ଆନନ୍ଦ ଦେଉଛି । ଜୀବନର ବିଭିନ୍ନ ସମସ୍ୟାମାନଙ୍କର ସମାଧାନ କରିବାକୁ ପ୍ରେରଣା ଦେଉଛି—ଏହି ସଫଳ ଉପନ୍ୟାସ ।

ଉଚ୍ଚଶିକ୍ଷିତ ଯୁବକ ରୂପାଇ । ସେ ଜୀବନରେ ବହୁତ କିଛି ଆଶା କରିଥିଲା । ଆଶା କରିବାହିଁ ସ୍ୱାଭାବିକ । ଦିନେ ସିଏ ସୁନ୍ଦର ଥିଲା । ତାକୁ ଭଲ ପାଇ ବସିଥିଲା ଲକ୍ଷପତି ବାପର ଝିଅ କ୍ଷଣପ୍ରଭା । କ୍ଷଣପ୍ରଭାର ମନରେ—ଆଶା ଓ ସୁଖ ଆନନ୍ଦର ବିରାଟ ପ୍ରାସାଦ ।

Digitized by srujanika@gmail.com

କିନ୍ତୁ ଲକ୍ଷପତି ଜମିଦାର—ଏ ପ୍ରକାରର ମିଳନ ପସନ୍ଦ କରୁନଥିଲେ । କିନ୍ତୁ ବାପାଙ୍କର ଇଚ୍ଛା ବିରୁଦ୍ଧରେ କ୍ଷଣପ୍ରଭା ବିବାହ କରିଥିଲା ତୁଷାରଙ୍କୁ । ଲକ୍ଷପତି ଦୁଷ୍ମନ୍ତଙ୍କର ପ୍ରେମକୁ ପ୍ରତ୍ୟାଖ୍ୟାନ କରିଥିଲା କ୍ଷଣପ୍ରଭା । ସିଏ ଚାଲିଥିଲା ଗୋଟିଏ ଆଦର୍ଶ ପଥରେ । କ୍ଷଣପ୍ରଭାର ଏହି ବିବାହ ଝଞ୍ଜା ସୃଷ୍ଟି କରିଥିଲା ତାର ଲକ୍ଷପତି ବାପାଙ୍କର ମନର ପ୍ରତ୍ୟେକ କୋଣରେ କିନ୍ତୁ କିଛି କରିବାର ଉପାୟ ନଥିଲା ତାଙ୍କର । ମନର ସମସ୍ତ ରାଗ, ଅଭିମାନ ବାଧ ହୋଇ ସିଏ ରଖିଥିଲେ ନିଜର ମନ ଭିତରେ ଆଉ ଏକ ଝଞ୍ଜା ସୃଷ୍ଟି ହୋଇଥିଲା ଲକ୍ଷପତି ଦୁଷ୍ମନ୍ତର ଜୀବନରେ ମଣିଷ ତାର ଜୀବନରେ ପ୍ରକୃତରେ କେଉଁକୁ ଭଲପାଏ । ଦୁଷ୍ମନ୍ତ ରହିଗଲା ଅବିବାହିତ । ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରି ଚାଲିଲା ଦୀନ ଦୁଃଖିମାନଙ୍କର ସେବାରେ । ଦୀନ ଦୁଃଖୀମାନଙ୍କର ଆନନ୍ଦରେ ହିଁ ତାଙ୍କର ଆନନ୍ଦ ।

ବିବାହର ଆନନ୍ଦ, ମିଳନର ଆନନ୍ଦ ବେଶୀ ଦିନ ପାଇଁ ନଥିଲା କ୍ଷଣପ୍ରଭାର କପାଳରେ । ଚାରି ଦିଗରେ ଚରମ ଦାରିଦ୍ର୍ୟ । ତାରି ଭିତରେ ନଇଁ ଆସିଲା ଜୀବନର ସବୁଠାରୁ ବଡ଼ ଝଞ୍ଜା । ଗୋଟିଏ ଦୁର୍ଘଟଣାରେ ଅନ୍ଧ ହୋଇ ବସିଲା ତୁଷାର ସବୁଦିନ ଲାଗି । ମାରାତ୍ମକ ବସନ୍ତ ବ୍ୟାଧିରେ ତାର ସୁନ୍ଦର ମୁଖମଣ୍ଡଳ ହୋଇ ଉଠିଲା କୁତ୍ସିତ, କଦାକାର । ଘରେ ବୁଢ଼ିମା, ଭଉଣୀ ମୀର, ଅନ୍ଧ ତୁଷାର ଓ ଅନିନ୍ଦ୍ୟ ସୁନ୍ଦରୀ ସ୍ତ୍ରୀ କ୍ଷଣପ୍ରଭା । ଅନ୍ନ ସଂସ୍ଥାନର କୌଣସି ବ୍ୟବସ୍ଥା ନାହିଁ, ତୁଷାର କଣ ହାରିଯିବ ?

ଦେଶରେ ଶିଳ୍ପର ଉନ୍ନତି ଦେଖା ଦେଇଛି । ଅଳ୍ପ କିଛି କଳ କାରଖାନା ଖୋଲିଛି । ଶିଳ୍ପ ବିସ୍ତାର କରି ଚାଲିଛନ୍ତି ଶିଳ୍ପପତି ଅବନୀ । ଶିଳ୍ପ ବିପ୍ଳବ ସାଙ୍ଗରେ ଆସିଛି ମଜଦୁରମାନଙ୍କର ସଂଗଠନ । ଶ୍ରମିକ ନେତା ଗୋପାଳ ଭାବନ୍ତି ସବୁ ସମସ୍ୟାର ସମାଧାନ ହୋଇ-ଯିବ କେବଳ ଠେଙ୍ଗା ସାହାଯ୍ୟରେ । ତୁଷାର ଯାଇଛି ଅବନୀବାବୁଙ୍କ ଘରକୁ ଗୋଟିଏ ଟିଉସନର ଯୋଗାଡ଼ରେ । ତାଙ୍କର ଘରେ ଆଗରୁ

Digitized by srujanika@gmail.com

ଟିଉସନ କରୁଥିଲା ତୁଷାର । ଦିନେ ଟିଉସନରୁ ଫେରିବାବେଳେ ଦୁଷ୍ମନ୍ତ ବାବୁଙ୍କର ମଟର ଦୁର୍ଘଟଣାରେ କ୍ଷତ ବିକ୍ଷତ ହୋଇ ଅନ୍ଧ ହୋଇଥିଲା ତୁଷାର । କ୍ଷଣପ୍ରଭାର ଇଚ୍ଛା ମୋଟେ ନୁହେଁ ତୁଷାର ହାତ ପାତି ଦୁଷ୍ମନ୍ତ ବାବୁଙ୍କର ଅଶୋଭନ ଅବସ୍ଥା ପାଖରେ ଠିଆ ହେଉ । ତୁଷାରର ଇଚ୍ଛା କ୍ଷଣପ୍ରଭା ଘର ଛାଡ଼ି ବାହାରକୁ ନଯାଉ । କିନ୍ତୁ କ୍ଷଣପ୍ରଭା ବାହାରକୁ ଯିବାକୁ ବାଧ୍ୟ କେବଳ ପରିସ୍ଥିତିର ତାଡ଼ନାରେ । ଦିନେ ଲକ୍ଷପତି ଦୁଷ୍ମନ୍ତ ପ୍ରସ୍ତାବ ଦେଇଥିଲା ତାର ଦରିଦ୍ର ନାରାୟଣଙ୍କର ସେବାରେ ତାକୁ ସାହାଯ୍ୟ କରିବାକୁ । କିନ୍ତୁ ସେହି ପ୍ରସ୍ତାବକୁ ପ୍ରତ୍ୟାଖାନ କରିଥିଲା କ୍ଷଣପ୍ରଭା । କିନ୍ତୁ ସମ୍ପୂର୍ଣ ତାଡ଼ନାରେ କ୍ଷଣପ୍ରଭା ଆଜି କରୁଛି ଖଣ୍ଡେ ଚାକିରୀ—ସେଇ ଦୁଷ୍ମନ୍ତ ଦ୍ବାରା ପରିଚାଳିତ ସାର୍ବଜନୀନ ବିଦ୍ୟାଳୟରେ । ସାରା ପରିବାର ଚଳେଇବାର ଦାୟିତ୍ବ କ୍ଷଣପ୍ରଭାର । ଅଭାବର ଝଞ୍ଜା ମାଡ଼ି ଆସୁଛି ପରିବାର ଉପରକୁ ଅତି କ୍ଷିପ୍ର ଗତିରେ । ତାର ଗତିରୋଧ କରିବାକୁ ପଡ଼ିବ ।

କ୍ଷଣପ୍ରଭା ଯାଉଛି ଚାକିରୀ ପାଇଁ—ତୁଷାରର କଥା ନିଆରା । କିନ୍ତୁ ଚାକିରୀ ନପାଇ ଫେରି ଆସିଛି । ତୁଷାର ଅବନୀବାବୁଙ୍କ ଘରୁ ଟିଉସନ ନପାଇ ଫେରି ଆସିଛି । କାରଣ ଟିଉସନ ପାଇଁ କଣ ସେମାନେ ଆଜି ପର୍ଯ୍ୟନ୍ତ ତୁଷାର ପାଇଁ ଅପେକ୍ଷା କରି ଥାଆନ୍ତେ । ଅବନୀବାବୁଙ୍କ ଘରେ ଦେଖା ହେଉଛି—ଆଲୋଚନା ହେଉଛି—ଶ୍ରମିକ ନେତା ଗୋପାଳ ସାଙ୍ଗରେ । ଯିଏ ସବୁ କଥାରେ ସ୍ବାହାନ୍ତ ଠେଙ୍ଗା । ଅବନୀ ବାବୁଙ୍କର ପ୍ରଶ୍ନ—ଆପଣମାନେତ ମାର୍କସ ଓ ଏଞ୍ଜେଲ୍‌ସ୍‌ଙ୍କର ଶିଷ୍ୟ । ଏ କଥାର ଜବାବ୍ ଦିଅନ୍ତୁ । ଓଡ଼ିଶାରେ ଅଛି କଣ ? ଆଗେ ଏ ଦେଶରେ ଶିଳ୍ପର ଉନ୍ନତି ହେଉ । ବଡ଼ ବଡ଼ ଶିଳ୍ପ କାରଖାନା ଗଢି ଉଠୁ । ତାପରେ ଆପଣମାନେ ଶ୍ରମିକମାନଙ୍କର ନେତୃତ୍ବ ନେବେ । ଏଣେ କହୁଛନ୍ତି କଳ କାରଖାନା ବସୁ—ତେଣେ ଲୋକମାନଙ୍କୁ ମତାଉଛନ୍ତି କାରଖାନା ପାଇଁ ଜମିବାଡ଼ି ଛାଡ଼ନ୍ତୁ ନ । ଫଳରେ ଓଡ଼ିଶା ଚିରଦିନ ଏମିତି ମରୁଭୂମି ହୋଇ

Digitized by srujanika@gmail.com

ପଢ଼ିଥିବ । ଆଜି ଶରତଦିନ ଆପଣଙ୍କର ମାର୍କସ୍-ଏଞ୍ଜେଲ୍ସ୍ ଆଲମିରା ଭିତରେ ସ୍ଥିର ପଡ଼ି ରହିଥିବେ । ଷଣ୍ଢଟା କାହାର ବୁଝନ୍ତୁ ।

ଏହି ପ୍ରଶ୍ନ—ଗୋଟିଏ ଚିରନ୍ତନ ପ୍ରଶ୍ନ । ଯେଉଁ ଦେଶରେ ଶିଳ୍ପର ଅଗ୍ରଗତି ମୋଟେ ହୋଇନି—ଅଥଚ ଶ୍ରମିକମାନଙ୍କର ବିପ୍ଳବ ଦେଖାଦେଇଛି—ଶ୍ରମିକ ନେତା ସବୁ ସମସ୍ୟାର ସମାଧାନ ଚାହାନ୍ତି ଠେଙ୍ଗାରେ—ସେ ଦେଶରେ କଣ କରାଯିବ ? ଗୋପାଳ ଓ ଅବନୀ ଏହି ଦୁଇଟି ଚରିତ୍ରର ମାଧ୍ୟମରେ ତତ୍କାଳୀନ ଓଡ଼ିଶାର ଗୋଟିଏ ସୁନ୍ଦର ଚିତ୍ର ପାଠକମାନଙ୍କର ସମ୍ମୁଖରେ ଉପସ୍ଥାପନ କରିଛନ୍ତି କାହ୍ନୁବାବୁ ।

ଚାକିରି ନପାଇ, କାଳର ଦୁର୍ଲଭ ବିନିମୟରେ, ବଜାର ସଉଦା ନେଇ ଘରକୁ ଫେରିଛି କ୍ଷଣପ୍ରଭା । ଖାଲିହାତ, ଖାଲି ମନରେ ଘରକୁ ଫେରିଛି ତୁଷାର । ଆଜି ଥରେ ଆଗେଇ ଆସିଛି ଦୁଷ୍ମନ୍ତ । ଅରକ୍ଷ ନିବାସ ସିଏ ନିର୍ମାଣ କରିବ ଦୁଃଖୀ ଦରିଦ୍ରମାନଙ୍କ ପାଇଁ । ଯେଉଁମାନେ ସର୍ବହରା, ସେଇମାନଙ୍କ ପାଇଁ ଅରକ୍ଷ ନିବାସ ହେବ ଆଶ୍ରୟ ସ୍ଥଳ । ଏହି ଅରକ୍ଷ ନିବାସ ପାଇଁ ବିପୁଳ ସମ୍ପତ୍ତି ଦାନ କରିବାକୁ ଆଗେଇ ଆସିଛି ଦୁଷ୍ମନ୍ତ । ଦୁଷ୍ମନ୍ତ ଚାହେଁ ତୁଷାର ଓ କ୍ଷଣପ୍ରଭା ଅରକ୍ଷ ନିବାସ ପରିଚାଳନାର ଦାୟିତ୍ୱ ନିଅନ୍ତୁ ଓ ସେଥି-ପାଇଁ ସେମାନେ ପାଇବେ ପାରିଶ୍ରମିକ ।

ଦୁଷ୍ମନ୍ତର ଭଉଣୀ ହେମ ଚାହେଁ—ଦୁଷ୍ମନ୍ତ କ୍ଷଣପ୍ରଭାକୁ ଭୁଲି ଯାଉ । ବିବାହ କରୁ । ନିଜର ସଂସାର କରୁ । ହେମ ମତରେ ହୀନ ଦରିଦ୍ରମାନଙ୍କ ପାଇଁ ଦୁଷ୍ମନ୍ତ ଯେଉଁ ଖର୍ଚ୍ଚ କରୁଛି—ସେ ସବୁ ବେପରୁଆ ଖର୍ଚ୍ଚ । ଏଥିପାଇଁ ହେମର ତୀବ୍ର ମତଭେଦ ନିଜର ମାଆ ସୁକାନ୍ତି ଦେବୀଙ୍କ ସାଙ୍ଗରେ । କିନ୍ତୁ ସୁକାନ୍ତି ଦେବୀଂକର ସୁସ୍ପଷ୍ଟ ମତ ହେଲା—ବଡ ଲୋକ ତ ଢେର ଅଛନ୍ତି । ହେଲେ ଏପରି ନିର୍ଲୋଭରେ ପର ପାଇଁ ନିଜର ସଂସାର ଉଜାଡ଼ି ଦେବା ଭଳିଆ

Digitized by srujanika@gmail.com

କେଉଁଟା ପୂଅ ଅଛନ୍ତି ? ଦୁଷ୍ମନ୍ତ ପଣ କରିଛି—ବାହା ନହେଇ ଦରିଦ୍ର ନାରାୟଣଙ୍କର ସେବାରେ ଯାର ଜୀବନ କଟାଇଦେବ । ଏଥିରେ ମନ୍ଦ ଉଛିଲା କେଉଁଠି ? ତଥାପି ହେମଙ୍କର ଆକ୍ଷେପ— ଉତ୍କଳ ମନ୍ମଥ ବାବୁ ବଞ୍ଚିଥିବାବେଳେ ଯେଉଁ ଘରଦ୍ୱାର ଘୁ ଘୁ କମ୍ପୁଥିଲା—ସେଠି ଆଜ ରାଜ୍ୟ ଯାକର ରୋଗୀ, ଭିଖାରି ଆସ୍ଥାନ ଜମେଇ ବସିଛନ୍ତି । ହନେ ହୁଏତ ସୁକାନ୍ତ ଦେବୀଙ୍କର ଶୋଇବାଘର ଏଥିରୁ ବାଦ୍ ଯିବନି । କିନ୍ତୁ ସୁକାନ୍ତଙ୍କର ମତ ଅଟଳ—ତାଙ୍କର ରାଧାମାଧବ ଅଛନ୍ତି, ସିଏ ଯୁଆଡ଼େ ବାଟ କଡେଇବେ—ସୁକାନ୍ତ ଦେବୀ ସିଆଡ଼େ ଯିବେ । ହେମ ଚେଷ୍ଟା କରିଛନ୍ତି ସୁକାନ୍ତଙ୍କ ମନ ବିଷାକ୍ତ କରିବାକୁ ପ୍ରଭଙ୍କ ବିଷୟରେ । କିନ୍ତୁ ସୁକାନ୍ତଙ୍କର ମନରେ କ୍ଷଣପ୍ରଭଙ୍କ ପାଇଁ ପୂରି ରହିଛି କେବଳ ମମତା । ସୁକାନ୍ତ ଦେବୀ ନିଜେ ଯାଇ ନେଇ ଆସିଛନ୍ତି ପ୍ରଭଙ୍କୁ ନିଜ ଘରକୁ । ତୁଷାରଙ୍କର ସାରା ପରିବାରର ଆଶ୍ରୟସ୍ଥଳ ଦୁଷ୍ମନ୍ତଙ୍କର ଘର ।

ଏ ଦେଶରେ ଅଭାବୀମାନଙ୍କର ସଂଖ୍ୟା କିଏ କଳି ପାରିବ ? ଅଭାବ ନିବାସ ଭର୍ତ୍ତି । ଆହୁରି ଘର ଦରକାର । ଜାଗା ଦରକାର । ଖାଦ୍ୟ ପାଇଁ, ଚିକିତ୍ସା ପାଇଁ ଟଙ୍କା ଆସିବ କୋଉଠୁ ? ଅଭାବ ନିବାସ ପାଇଁ ଦରକାର ପାଞ୍ଚଲକ୍ଷ ଟଙ୍କା । ଅଢେଇ ଲକ୍ଷ ଟଙ୍କା ଦୁଷ୍ମନ୍ତ ଦେବେ । ବାକି ଅଢ଼େଇ ଲକ୍ଷ ? ବ୍ୟବସାୟୀ ରଙ୍ଗଲାଲ୍, ଜଲଲୁଦ୍ଦିନ, ପୃଷ୍ଟି ଏମାନଙ୍କ ଭିତରୁ କିଏ କେତେ ସାହାଯ୍ୟ ଦେବେ ? ରଙ୍ଗଲାଲ୍‌ଙ୍କର କହିବାର କଥା ହେଲା ସିଏ ଗୋଟିଏ ଧର୍ମଶାଳା ବନାଉଛନ୍ତି । ଲକ୍ଷେଟଙ୍କା ସେଥିରେ ଖର୍ଚ୍ଚ ହେଇଗଲାଣି । ତାପରେ ସରକାର ଟିକସ ପରେ ଟିକସ ବଢ଼େଇ ଚାଲିଛନ୍ତି । ସବୁବେଳେ ଷ୍ଟ୍ରାଇକ୍ ଲଗି ରହିଛି । ତେବେ ଦିବାଲି ପରେ ସିଏ ଯାହା କିଛି ଦେବାର କଥା ଦେବେ । ଜଲଲୁଦ୍ଦିନ୍‌ଙ୍କର କହିବାର କଥା ହେଲା, ସିଏ ଜଣେ ଚମଡ଼ା ବ୍ୟବସାୟୀ । ସାରା ଦେଶରେ ହଲ୍ଲା ଉଠିଛି ଗୋହତ୍ୟା ବନ୍ଦ କର । ତାଙ୍କର ବ୍ୟବସାୟ ମାନ୍ଦା । ତେବେ ଇନ୍‌କମ୍‌ଟାକ୍ସକେସ୍‌ଟା ଫଏସଲା ହେଇଗଲା ପରେ ସିଏ ଯାହା କିଛି

Digitized by srujanika@gmail.com

ଦେବେ । ପୃଷ୍ଟି ବାବୁଙ୍କ ଏକାନ୍ତବର୍ତ୍ତୀ ହିନ୍ଦୁ ପରିବାରର ପୋଷକ ବ୍ୟବସାୟୀ । ଭାଇଙ୍କ ସାଙ୍ଗରେ କଥାବାର୍ତ୍ତା କଲାପରେ ସାହା କରୁ କରିବେ । ଆଜ ଶିଳ୍ପପତି ଅବସ୍ଥା ବାବୁ ! ସିଏ ପ୍ରତିଜ୍ଞା କରିଛନ୍ତି ଦେଶକୁ ଇଣ୍ଡଷ୍ଟ୍ରିଆଲାଇଜ୍ (Industrialise) କରିବେ । ଏଇଟା ହେଲା ତାଙ୍କର ପ୍ରଥମ କର୍ତ୍ତବ୍ୟ । ତଥାପି ତାଙ୍କର ସାହା ଦେବାର ଦେବେ । ଶିଳ୍ପପତିମାନଙ୍କର ଚରିତ୍ରର ଏକ ସୁନ୍ଦର ବିଶ୍ଳେଷଣ ।

ଦୁଷ୍ମନ୍ତଙ୍କର ମତ ହେଲା ପ୍ରଭା ନିଜେ ଯାଇ ଧନୀମାନଙ୍କର ଦୁଆରରେ ଅରକ୍ଷ ନିବାସ ପାଇଁ ହାତ ପାତି ଭିକ୍ଷା ମାଗିବେ । କ୍ଷଣପ୍ରଭାଙ୍କର ମନ ଦ୍ୱିଧାଗ୍ରସ୍ତ । କିନ୍ତୁ ଭୂଷାରଙ୍କର ମତବି ସେଇଆ— ନାରୀର ଆବେଦନ କେବେ ବିଫଳ ହୁଏନା । ପ୍ରଭାଙ୍କର ଜୀବନରେ ଆରମ୍ଭ ହୁଏ ନୂତନ ଝଞ୍ଜା ଜୀବନର ନୂତନ ପରୀକ୍ଷା । ଚାନ୍ଦା ଦେବାକୁ ମନାକରି ରଙ୍ଗଲାଲ ତାଙ୍କ ଦୋକାନରୁ ଫେରାଇ ଦିଅନ୍ତି ପ୍ରଭାଙ୍କୁ; କିନ୍ତୁ ପ୍ରଭାଙ୍କ ପାଖକୁ ଚିଠି ଲେଖନ୍ତି ନିରୋଳାରେ ଦେଖା କରିବାକୁ । କଲଲୁଦ୍ଧ ନ୍ ! ଧୃଷ୍ଟ ! ସମସ୍ତେ କ୍ଷଣପ୍ରଭାଙ୍କର ସୌନ୍ଦର୍ଯ୍ୟରେ ବିଭୋର । ସମସ୍ତେ ଦିଅନ୍ତି ମୋଟା ଧରଣର ଚାନ୍ଦା । ପତ୍ରପତ୍ରିକାରେ ବାହାର ପ୍ରଚାର ଚାଲେ କ୍ଷଣପ୍ରଭାଙ୍କ ବିରୁଦ୍ଧରେ । ବିବ୍ରତ ଓ ବ୍ୟସ୍ତ କ୍ଷଣପ୍ରଭା ଚାହାନ୍ତି ଏ ପ୍ରକାରର ଜୀବନରୁ ମୁକ୍ତି । ଅନୁନୟ କରି ଭୂଷାରଙ୍କୁ କୁହନ୍ତି – ସିଏ ରାଜପ୍ରାସାଦ ଚାହିଁ ନଥିଲେ, ଚାହିଁଥିଲେ ଭୂଷାରଙ୍କୁ । ସିଏ ଚାଲି ଯିବାକୁ ଚାହାନ୍ତି ବହୁତ ଦୂରକୁ ଭୂଷାରଙ୍କ ସାଙ୍ଗରେ । କିନ୍ତୁ ଅରକ୍ଷ ନିବାସ ପାଇଁ ଦରକାର ଟଙ୍କା । ଭୂଷାରଙ୍କର ଅନୁରୋଧ—ଅଭିନୟ କରି ତାଙ୍କୁ ଟଙ୍କା ଆଣିବାକୁ ପଡ଼ିବ । ଭୂଷାର-ଙ୍କର ଏହା ଆଦେଶ ନୁହେଁ, ଅନୁନୟ, ପ୍ରାର୍ଥନା ।

କ୍ଷଣପ୍ରଭାଙ୍କର ଲକ୍ଷପତି ପିତାଙ୍କର ଜୀବନରେ ନଇଁଆସେ ଝଞ୍ଜା—ପ୍ରଭାଙ୍କର ସାବତ ମାଆର ଦେଢ ବର୍ଷର ପୁଅ ମରିଗଲା ପରେ ତାଙ୍କର ଲକ୍ଷପତି ବାପା ସବୁ ସମ୍ପତ୍ତି ଛାଡ଼ି ଦିଅନ୍ତି ଗ୍ରାମବାସୀମାନଙ୍କ

Digitized by srujanika@gmail.com

ହାତରେ । ପ୍ରଭାଙ୍କର ବୋଝ ଦୁଃଖ ସହି ନପାରି ତାଙ୍କର ବାପ ଘରକୁ ଯାଇ ସେଠି ଖୋଲନ୍ତି ଗୋଟିଏ, ଶିଶୁ ସଦନ । ଜୀବନର ଝଞ୍ଜାରେ ଲକ୍ଷପତି ପିତା ଓ ବିମାତାଙ୍କର୍ ମନରେ ଆସେ ଅପୂର୍ବ ପରିବର୍ତ୍ତନ ।

ପ୍ରଭାଂକର ସୌନ୍ଦର୍ଯ୍ୟରେ ବିମୋହିତ ହୁଅନ୍ତି ଅବନୀ । ପ୍ରଭା-ଶଶୀର ବିନାମସ୍ଥରେ ଦେବାକୁ ଚାହାନ୍ତି ଲକ୍ଷେ ଟଙ୍କା । ହେମ ଜାଣି ପାରନ୍ତି ଅବନୀ ଦେଇଛନ୍ତି ହେମଙ୍କୁ ପଚିଶ ହଜାର ଟଙ୍କା ହେମ ସ୍ୱୀକାର କରନ୍ତି ସେ ପାଇଛନ୍ତି ପଚିଶ ହଜାର ଟଙ୍କା କେବଳ ତାଙ୍କର ଦେହଟାକୁ ଛୁଇଁଦେବା ବାବଦରେ । ଗୋଟିଏ ରାତ୍ରି ତାଙ୍କର ଶଯ୍ୟା ସଙ୍ଗିନୀ ହେଲେ ଆଉ ପଚିଶ ହଜାର ଟଙ୍କା ଦେଇ ଥାଆନ୍ତେ—କିନ୍ତୁ ସେ ସର୍ତ୍ତ ପ୍ରଭା ରଖି ନାହାନ୍ତି । ହେମଙ୍କର ତୀବ୍ର ଆକ୍ଷେପ—ଦୁଷ୍ମନ୍ତଙ୍କୁ ମାରି ପୋଡି ଜଳାଇ ଦେଉଛି ପ୍ରଭା ଓ ସେ ବିଶ୍ୱାସ ଘାତକତା କରିଛି ହେମ ପ୍ରତି । ଅଭିମାନରେ ପ୍ରଭାର ମନ ଭରି ଉଠିଛି ତୁଷାର ଉପରେ । କିନ୍ତୁ ତୁଷାରର କହିବା କଥା—ପ୍ରଭା ସ୍ତ୍ରୀ ନୁହେଁ—ସାଧାରଣ ନାରୀ ନୁହେଁ—ପ୍ରଭା ହେଉଛି ଦେବୀ ପ୍ରଭା ତୁଷାରର ନମସ୍ୟା ।

ପରିକାରେ ପ୍ରଭାର ଚାଲିଛି—କର୍ମଚାରୀ ଦୁଷ୍ମନ୍ତ । ସେ ମଧ୍ୟ ଏଇ ସୁନ୍ଦରୀ ତରୁଣୀଙ୍କର କରକମଳରେ ସର୍ବସ୍ୱ ଅର୍ପଣ କରିଛନ୍ତି । ବିନାମସ୍ଥରେ ପାଇଛନ୍ତି କଣ ? ଦୁଷ୍ମନ୍ତଙ୍କର ମନରେ ଝଞ୍ଜା—ତୀବ୍ର ଝଞ୍ଜା । ତାଙ୍କର କଣ ଦୁର୍ବଳତା ଅଛି ପ୍ରଭା ପାଇଁ ? ଯଦି ଅଛି ତେବେ କାହିଁକି ? ଦୁଷ୍ମନ୍ତ ମନରେ ଏ ଝଞ୍ଜା ପ୍ରଭା ଲୁଚାକରି ଦେଖିଛି ଦୁଷ୍ମନ୍ତର କୋଠରୀରେ । ପ୍ରଭାକୁ ସନ୍ଦେହ କରିଛି ନିଜର ନଣନ୍ଦ ମୀର ।

ଦୁଷ୍ମନ୍ତ ଓ ପ୍ରଭା ଦୁହିଙ୍କର ଜୀବନରେ ନଇଁଆସେ ଚରମ ଝଞ୍ଜା । ଦୁଷ୍ମନ୍ତ ଓ ପ୍ରଭା ଦୁଇଜଣଯାକ ଚାଲି ଯାଆନ୍ତି ଅରକ୍ଷ ନିବାସର ବହୁତ ଦୂରକୁ—କିନ୍ତୁ ଭିନ୍ନ ଭିନ୍ନ ଦିଗକୁ । ତୁଷାର

Digitized by srujanika@gmail.com

ସ୍ତବ୍ଧ । ତୁଷାରର ଶେଷ କଥା—ଦୁଷ୍ମନ୍ତ ଓ କ୍ଷଣପ୍ରଭା—ଏମାନେ ଦୁଇଟି ମୁକ୍ତା । ଯୁଗ ଯୁଗ ଧରି ଏକାଠି ରହିଲେ ବି ସେମାନଙ୍କର ଦେହରେ ଟିକିଏ ବି କଳଙ୍କ ଲାଗିବନି । ଏଇ ଝଞ୍ଜା ଭିତରେ ତୁଷାର ହରାଇଛି ତାର ଶେଷ ଆଶ୍ରୟ । ଜୀବନର ପ୍ରଭା, ଜୀବନର ଆଲୋକ ହଜି ଯାଇଛି ସବୁଦିନ ପାଇଁ ।

ଏହି ସାର୍ଥକ ସୃଷ୍ଟିରେ ତୁଷାର, ଦୁଷ୍ମନ୍ତ, ଅବନୀ, ହେମ, ନୀର, କ୍ଷଣପ୍ରଭା ଏମାନେ ସମସ୍ତେ ଗୋଟିଏ ଗୋଟିଏ ଜୀବନ୍ତ ଚରିତ୍ର । ଏହି ଉପନ୍ୟାସଟି ପଢ଼ିବାବେଳେ ମନେହୁଏ ଯେପରି ଉପନ୍ୟାସରେ ଚରିତ୍ର ଗୁଡ଼ିକ ଆଖି ସାମନାରେ ଜୀବନ୍ତ ହୋଇ ଉଠିଛନ୍ତି । ସରଳ, ସାବଲୀଳ, ମନୋଜ୍ଞ ଓ ହୃଦୟସ୍ପର୍ଶୀ ଭାଷା ଏହି ଉପନ୍ୟାସର ଅନ୍ୟତମ ବିଶେଷତ୍ୱ । ଏହି ଅନ୍ଧ ସମାଜରେ ପବିତ୍ରତା କେହି ବୁଝେନି । ସମସ୍ତେ ବ୍ୟସ୍ତ ନିଜର ସ୍ୱାର୍ଥ ନେଇ ଓ ଅନ୍ୟର ପ୍ରକୃତ ମଙ୍ଗଳ କରିବାକୁ ଯାଇ ମଣିଷ ଯେ କି ପ୍ରକାର ମିଥ୍ୟା ଅପବାଦ ଓ କୁତ୍ସାର ଶିକାର ହୁଏ—ଏହାର ଅପୂର୍ବ ଚିତ୍ରଣ ଝଞ୍ଜା ଉପନ୍ୟାସରେ । କ୍ଷଣପ୍ରଭା ଚରିତ୍ର ଯେ ଓଡ଼ିଆ ଉପନ୍ୟାସର ଗୋଟିଏ ଅସାମାନ୍ୟ ସୃଷ୍ଟି—ଏହା କହିବା ବାହୁଲ୍ୟ ମାତ୍ର । ନାରୀ ମନର ଏକ ପ୍ରକୃତ ଚିତ୍ର ପ୍ରଭା ଚରିତ୍ରରେ ଅତି ସୁନ୍ଦର ଭାବରେ ଚିତ୍ରଣ କରାଯାଇଛି ।

ଝଞ୍ଜା ଉପନ୍ୟାସ—ଓଡ଼ିଆ ଉପନ୍ୟାସ ଜଗତରେ ନିଶ୍ଚିତ ଭାବରେ ଗୋଟିଏ ମାଇଲ ଖୁଣ୍ଟ, ଏହା କହିବା ବାହୁଲ୍ୟ ମାତ୍ର ।



Digitized by srujanika@gmail.com

# କାହ୍ନୁଚରଣଙ୍କ ଉପନ୍ୟାସରେ ସମାଜଚେତନାର ଆଦର୍ଶ

**ବିଭୂତି ପଟ୍ଟନାୟକ**

ଆଧୁନିକ ଯୁଗର ସାମାଜିକ ପରିବର୍ତ୍ତନ ସହିତ ମଣିଷର ଭାବରାଜ୍ୟରେ ଯେଉଁ ପରିବର୍ତ୍ତନ ଘଟିଛି, ସେହି ନୂତନ ଭାବଧାରାର ଅଭିନବ କଳାରୂପ ହେଉଛି ଉପନ୍ୟାସ । ତେଣୁ ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟରୁ ଉପନ୍ୟାସର ଉତ୍ସ ସନ୍ଧାନ କରିବା ନିରର୍ଥକ । କାରଣ ସାହିତ୍ୟର ଅନ୍ୟାନ୍ୟ ବିଭାଗ ଅପେକ୍ଷା ଉପନ୍ୟାସ ହିଁ ଗଣତାନ୍ତ୍ରିକ ଚେତନା ଦ୍ୱାରା ଅଧିକ ଭାବରେ ପ୍ରଭାବିତ ଏବଂ ଆଧୁନିକ ଗଣତାନ୍ତ୍ରିକ ଅଧିକାରର ଜନ୍ମ ଇତିହାସ ଆଦୌ ପ୍ରାଚୀନ କିମ୍ବା ମଧ୍ୟ ଯୁଗୀୟ ନୁହେଁ ।

ସାମାଜିକ ଓ ରାଜନୈତିକ ଚେତନାର ବିବର୍ତ୍ତନରେ ସାଧାରଣ ମଣିଷ ଯେଉଁଦିନ ତାର ବ୍ୟକ୍ତି-ସ୍ୱାତନ୍ତ୍ର୍ୟର ଗୁରୁତ୍ୱ ଓ ମହତ୍ତ୍ୱ ଉପଲବ୍ଧି କଲା; ସେଦିନ ହୁଏତ ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟ ତା ପାଖରେ ଖୁବ୍ ଅବାସ୍ତବ ଏବଂ କପୋଳ-କଳ୍ପିତ ଭଳି ମନେହେଲା । କାରଣ ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟରେ ସାଧାରଣ ମଣିଷର ଅସ୍ତିତ୍ୱ ନଥିଲା । ଧର୍ମୀୟ ଚିନ୍ତା ଏବଂ ସାମନ୍ତବାଦୀ ଚେତନା ଥିଲା ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟର ଆତ୍ମ-ସଂପଦ । ତେଣୁ ଅଷ୍ଟାଦଶ ଶତାବ୍ଦୀର ୟୁରୋପରେ ଏବଂ ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଭାରତୀୟ ସାହିତ୍ୟରେ ଏଭଳି ଏକ ନୂତନ ସାରସ୍ୱତ ଶିଳ୍ପର ପ୍ରୟୋଜନୀୟତା ଉପଲବ୍ଧ ହୋଇଥିଲା; ଯାହା ସାମାଜିକ ପରିବର୍ତ୍ତନ ଓ ବ୍ୟକ୍ତି ସତ୍ତାର ବାସ୍ତବ ରୂପ ନିଜ ମଧ୍ୟରେ ପ୍ରତି-ଫଳିତ କରି ପାରିବ, ଉପନ୍ୟାସ ହେଉଛି ସେହି ବାସ୍ତବବାଦୀ, ଜୀବନଧର୍ମୀ, ସମାଜ ମୁଖୀ ଚିନ୍ତା ଓ ଚେତନାର ସାହିତ୍ୟିକ କଳା-ରୂପ ।

ଫକୀରମୋହନଙ୍କ ଆଗରୁ ରମେଶଚନ୍ଦ୍ର ସରକାର. ରାମଶଙ୍କର ରାୟ ପ୍ରମୁଖ କେତେକଣ୍ଟି କାହାଣୀମୂଳକ ଉପନ୍ୟାସ ରଚନା କରିଥିଲେ ସୁଦ୍ଧା ସେଥିରେ ସମକାଳୀନ ସାମାଜିକ ଚିତ୍ର ଏବଂ ବ୍ୟକ୍ତି-ଚେତନାର ବିଶିଷ୍ଟ ରୂପ ଫୁଟି ନଥିଲା ।

Digitized by srujanika@gmail.com

ସେଥିପାଇଁ ଫକୀରମୋହନଙ୍କୁ ହିଁ ଆଧୁନିକ ଓଡ଼ିଆ ଉପନ୍ୟାସର ଜନକ ଭାବରେ ଗ୍ରହଣ କରାଯାଇ ଥାଏ । କାରଣ ସେ ଥିଲେ ଊନବିଂଶ ଶତାବ୍ଦୀ ଓଡ଼ିଆ ସାମାଜିକ ଜୀବନର ସାର୍ଥକ ଚିତ୍ରକର । ବ୍ରିଟିଶ ଶାସନ ଏବଂ ଇଂରେଜୀ ଶିକ୍ଷାର ପ୍ରସାର ଫଳରେ ଓଡ଼ିଶାର ସାମାଜିକ, ଅର୍ଥନୈତିକ ଜୀବନରେ ଯେଉଁ କ୍ରାନ୍ତିକାରୀ ପରିବର୍ତ୍ତନ ଘଟିଥିଲା, ତାଙ୍କର 'ଛଅମାଣ ଆଠଗୁଣ୍ଠ' 'ମାମୁଁ' ଓ 'ପ୍ରାୟଶ୍ଚିତ୍ତ'—ଏହି ତିନୋଟି ସାମାଜିକ ଉପନ୍ୟାସରେ ସେ ଅପୂର୍ବ ଦକ୍ଷତା ଓ ଅନ୍ତରଙ୍ଗତାର ସହିତ ଫୁଟାଇ ପାରିଥିଲେ । ତେଣୁ ସମାଜ ଓ ସାମାଜିକ ମଣିଷ ପ୍ରତି ଓଡ଼ିଆ ଉପନ୍ୟାସର ଅଙ୍ଗୀକାର ପ୍ରଥମରୁହିଁ ଆମ ସାହିତ୍ୟରେ ସ୍ୱୀକୃତ ହୋଇ ଥିଲା ।

କାହ୍ନୁଚରଣ ହେଉଛନ୍ତି ଫକୀରମୋହନଙ୍କର ଯୋଗ୍ୟ ଉତ୍ତର-ସାଧକ । ଫକୀରମୋହନଙ୍କ ଭଳି ତାଙ୍କ ପ୍ରଥମ ଉପନ୍ୟାସମାଳା ହେଉଛି ସମାଜ ସଂସ୍କାର ମୂଳକ । ବାଲ୍ୟବିବାହ ବିରୁଦ୍ଧରେ ଏବଂ ବିଧବା ବିବାହ ସପକ୍ଷରେ "ନଷ୍ଟଲକ୍ଷ୍ମୀ" ଏବଂ ଅସ୍ପୃଶ୍ୟତା ନିବାରଣ ଉଦ୍ଦେଶ୍ୟରେ ରଚିତ "ଭଲପାଇବାର ଶେଷକଥା" ତାର ଉଜ୍ଜ୍ୱଳ ଉଦାହରଣ । କିନ୍ତୁ ସମାଜସଂସ୍କାର ତାଙ୍କର ପ୍ରାଥମିକ ଲକ୍ଷ୍ୟ ହେଲେହେଁ ଅନ୍ତିମ ଲକ୍ଷ୍ୟ ଥିଲା ସମାଜ ବିପ୍ଳବ । ସମାଜ ସଂସ୍କାରରୁ ସମାଜବିପ୍ଳବ—'ନଷ୍ଟଲକ୍ଷ୍ମୀ' 'ଭଲପାଇବାର ଶେଷକଥା'ରୁ "ଶାସ୍ତି" ଓ 'ଝଂଜା'—ଏହାହିଁ ହେଉଛି ତାଙ୍କ ଉପନ୍ୟାସର ଗତି ଓ ପରିଣତି । ମଝିରେ ବିଦେଶୀ ଉପନ୍ୟାସ, ବିଶେଷ ଭାବଧାରା ଦ୍ୱାରା ପ୍ରଭାବିତ ହୋଇ ସେ 'ବାଲିରାଜା' 'ଶବରୀ' ଭଳି ଉପନ୍ୟାସ ଲେଖିପାରି ଥାଆନ୍ତି; ଫ୍ରଏଡ଼ୀୟ ମନସ୍ତାତ୍ତ୍ୱିକ ବିଶ୍ଳେଷଣରେ ସହାୟତାରେ 'ତୃଣବାଇଦ' 'ଅଦେଖା ହାତ' 'ବଗବଗୁଲି' 'ଭୁଲି ହୁଏନା' ପ୍ରଭୃତି ଉପନ୍ୟାସ ଲେଖି ବିପୁଳ ଜନପ୍ରିୟତା ଅର୍ଜ୍ଜନ କରି ପାରି ଥାଆନ୍ତି; କିନ୍ତୁ ସମାଜ ସଂସ୍କାରମୂଳକ ଏବଂ ସମାଜ-ବିପ୍ଳବଧର୍ମୀ ଉପନ୍ୟାସରେ ତାଙ୍କର ସାହିତ୍ୟିକ ବ୍ୟକ୍ତିତ୍ୱ ଯେପରି ପ୍ରକଟିତ ହୋଇଛି; ତାହା ଅନ୍ୟ ଉପନ୍ୟାସରେ ପରିଲକ୍ଷିତ ହୁଏ ନାହିଁ ।

୧୯୪୫ ମସିହାରେ ପ୍ରକାଶିତ 'ଶାସ୍ତି' ଉପନ୍ୟାସରେ ପ୍ରଥମେ କାହ୍ନୁଚରଣ ସଚେତନ ଭାବରେ ପ୍ରଚଳିତ ସମାଜବ୍ୟବସ୍ଥା ବିରୁଦ୍ଧରେ ନିଜର କଣ୍ଠସ୍ୱର ଉତ୍ତୋଳନ କରିଛନ୍ତି । ଏକ ନୂତନ ସମାଜ ଗଠନର ସ୍ୱପ୍ନ ଦେଖିଛନ୍ତି । ଆଗରୁ ସମାଜ-ବ୍ୟବସ୍ଥା ବିରୁଦ୍ଧରେ ତାଙ୍କର ଅସନ୍ତୋଷ ଇତସ୍ତତଃ ଭାବରେ ପ୍ରକଟିତ ହୋଇଥିଲେ ସୁଦ୍ଧା ନୂତନ ସମାଜ ଗଠନର ନିର୍ଦ୍ଦିଷ୍ଟ ରୂପ କୌଣସି ଉପନ୍ୟାସରେ ଚିତ୍ରାୟିତ ହୋଇ ନାହିଁ । ସେ ଦୃଷ୍ଟିରୁ ତାଙ୍କ 'ଶାସ୍ତି' ଉପନ୍ୟାସ ପ୍ରକାଶନ ପରେ ତାଙ୍କ ସମାଜ-ଦର୍ଶନର ରୂପ କୁହେଳିକା ଭେଦ କରି କ୍ରମଶଃ ସ୍ପଷ୍ଟ ହୋଇଛି ।

Digitized by srujanika@gmail.com

'ଶାନ୍ତି' ହେଉଛି 'ହା ଅନ୍ନ' ଉପନ୍ୟାସର ପରବର୍ତ୍ତୀ ଅଧ୍ୟାୟ । (୧୮୬୬-୬୭ରେ ଓଡ଼ିଶାରେ ଘଟିଯାଇଥିବା ପ୍ରଳୟଙ୍କରୀ ନଅଙ୍କ ଦୁର୍ଭିକ୍ଷର ପୃଷ୍ଠଭୂମିରେ 'ହା ଅନ୍ନ' ଉପନ୍ୟାସ ରଚିତ । ତେଣୁ ଏହା ଠିକ୍ ସାମାଜିକ ଉପନ୍ୟାସ ନୁହେଁ; ଐତିହାସିକ ଉପନ୍ୟାସ । କିନ୍ତୁ ନଅଙ୍କ ଦୁର୍ଭିକ୍ଷର କରାଳ ମୁଖ ଗହ୍ୱରରୁ ଆତ୍ମରକ୍ଷା କରି ଫେରି ଆସିଥିବା ସନେଇ, ସମାଜରେ ନିଜର ଅସ୍ତିତ୍ୱ ରକ୍ଷା ଲାଗି ଯେଉଁ ଲଢ଼େଇ କରିଛି ଏବଂ ଲଢ଼େଇରେ ପରାସ୍ତ ହୋଇ ଯାଁ ଶୁଣ୍ଡ ଯେପରି ଭାବରେ ସ୍ୱୀକାରିବା'କୁ ବାଧ୍ୟ ହୋଇଛି; ସେଥିରେ ନଅଙ୍କ ଦୁର୍ଭିକ୍ଷର ଐତିହାସିକତା ଅପେକ୍ଷା ୧୯୮୩ ଦୁର୍ଭିକ୍ଷର ପୃଷ୍ଠଭୂମି ଏବଂ ୧୯୪୦ ୪୫ର ସମକାଳୀନ ସମାଜ ବ୍ୟବସ୍ଥାର ପ୍ରଭାବ ଅଧିକ ଭାବରେ ରେଖାପାତ କରିଛି ବୋଲି କୁହାଯାଇ ପାରେ । ତେଣୁ 'ହା ଅନ୍ନ' ଅନେକାଂଶରେ ଐତିହାସିକ ଉପନ୍ୟାସର ଭୂମିକା ପାଳନ କରିଥିବା ବେଳେ 'ଶାନ୍ତି' ଐତିହାସିକ ପୃଷ୍ଠଭୂମିରେ ଏକ ସାମାଜିକ ଉପନ୍ୟାସ ବୋଲି କୁହାଯାଇ ପାରେ ।

ଅନେକ ପାଠକ ଓ ସାହିତ୍ୟ ସମାଲୋଚକ 'ହା ଅନ୍ନ' ପ୍ରକାଶିତ ହେବାର ଦୀର୍ଘ ଦଶ ବର୍ଷ ପରେ ସେଇ ଏକ ଐତିହାସିକ ଘଟଣାର ଅବଲମ୍ବନରେ 'ଶାନ୍ତି' ଉପନ୍ୟାସ ରଚନାର ଆବଶ୍ୟକତା ସମ୍ପର୍କରେ ପ୍ରଶ୍ନ ଉଠାଇଛନ୍ତି । 'ହା ଅନ୍ନ' ଉପନ୍ୟାସର କଥାବସ୍ତୁ ଓ ଭାବବସ୍ତୁ ସହିତ 'ଶାନ୍ତି' ଉପନ୍ୟାସର ତୁଳନା କଲେ ଏହି ଲକ୍ଷ୍ୟ ଅନୁମାନ କରିବା କଷ୍ଟକର ହୁଏନାହିଁ ।

'ହା ଅନ୍ନ' ଉପନ୍ୟାସରେ ନଅଙ୍କ ଦୁର୍ଭିକ୍ଷର ଚିତ୍ରାଙ୍କନ ଲେଖକଙ୍କର ପ୍ରଧାନ ଧ୍ୟେୟ ଥିଲା । କିନ୍ତୁ 'ଶାନ୍ତି'ରେ ଦୁର୍ଭିକ୍ଷ ଗ୍ରାସରୁ ଫେରି ଆସିଥିବା ଜଣେ ଛତରଖିଆ ସମାଜରେ ନିଜର ସ୍ଥାନ ଖୋଜି ପାଇବାର ଚେଷ୍ଟା ଏବଂ ରକ୍ଷଣଶୀଳ ସମାଜପତି, ଭୂମିମାଲିକ ମାନଙ୍କ ଚକ୍ରାନ୍ତ ଫଳରେ ତାର ଅସହାୟତା — ଏହାହିଁ ହେଉଛି ଔପନ୍ୟାସିକଙ୍କର ପ୍ରତିପାଦ୍ୟ ବିଷୟ । 'ହା ଅନ୍ନ' ଅପେକ୍ଷା 'ଶାନ୍ତି' ରଚନାରେ କାହ୍ନୁଚରଣ ଅଧିକ ମୌଳିକ ଏବଂ ସ୍ୱଚ୍ଛନ୍ଦ । 'ହା ଅନ୍ନ'ରେ ଜାତିଭେଦ ଓ ଆଭିଜାତ୍ୟର ଅହଂକାର ବିରୁଦ୍ଧରେ ତାଙ୍କର ସ୍ୱର ଅତି ସ୍ପଷ୍ଟ । କିନ୍ତୁ 'ଶାନ୍ତି'ରେ ସେଇ ସାମାଜିକ ସମସ୍ୟାର ସମାଧାନ ପାଇଁ ସେ ସଚେଷ୍ଟ । ସମସ୍ୟାର ଚିତ୍ରାଙ୍କନ କରି ସେ କେବଳ ସନ୍ତୁଷ୍ଟ ନୁହନ୍ତି; ତାର ସମାଧାନ ପାଇଁ ସେ ବ୍ୟଗ୍ର । ସେଇ ବ୍ୟଗ୍ରତା ଓ ବ୍ୟାକୁଳତା ମଧ୍ୟରୁ ସେ ଖୋଜି ପାଇଛନ୍ତି ଏକ ନୂତନ ଚେତନା — ସମାଜ-ବିପ୍ଳବ ! ଦୟାନିଧିଙ୍କ ଇତିହାସ, ପ୍ୟାରୀମୋହନ ଆଚାର୍ଯ୍ୟ, କୃପାସିନ୍ଧୁ ମିଶ୍ର, ଦୁର୍ଭିକ୍ଷ କମିଶନର ରିପୋର୍ଟ ତାଙ୍କୁ ହୁଏତ ନଅଙ୍କ ଦୁର୍ଭିକ୍ଷର ପୃଷ୍ଠଭୂମିରେ 'ହା ଅନ୍ନ' ଲେଖିବା ପାଇଁ ପ୍ରେରଣା ଦେଇଥିଲା; କିନ୍ତୁ ୧୯୪୫ ବେଳକୁ ଭାରତୀୟ ରାଜନୀତିରେ

Digitized by srujanika@gmail.com

ମହାତ୍ମାଗାନ୍ଧୀଙ୍କ ନେତୃତ୍ୱ, ଅସ୍ପୃଶ୍ୟତା ନିବାରଣ, ଅସହଯୋଗ, ସତ୍ୟାଗ୍ରହ ଆନ୍ଦୋଳନ, ଗ୍ରାମ ସ୍ୱରାଜ, ଅଗଷ୍ଟ ବିପ୍ଳବର ପ୍ରଭାବ ତାଙ୍କୁ ଏକ ନୂତନ ଶ୍ରେଣୀହୀନ ସମାଜ ଗଠନର ସ୍ୱପ୍ନ ଦେଖିବା ପାଇଁ ପ୍ରଲୁବ୍ଧ କରିଥିଲା । କାରଣ ପରବର୍ତ୍ତୀକାଳର ଯେ ଗ୍ରାମଗୋଷ୍ଠୀ ଯୋଜନା, ସମବାୟ କୃଷି, ଭୂଦାନ-ଦର୍ଶନ ଦ୍ୱାରା ପ୍ରଭାବିତ ହୋଇ 'ଝଂଜା' ବଜ୍ରବାହୁ' ଉପନ୍ୟାସ ରଚନା କରିଥିଲେ; ସ୍ୱାଧୀନତା ସ୍ୱଦେଶୀ ଆନ୍ଦୋଳନର ମହାପ୍ରବାହରୁ ସେଦିନ ନିଜକୁ ମୁକ୍ତ ରଖିବା ତାଙ୍କ ପକ୍ଷରେ ହୁଏତ ସହଜ ନଥିଲା । ତେଣୁ 'ହା ଅନ୍ନ'ର ଐତିହାସିକ ଧାରାକୁ ଅବଲମ୍ବନ କରି ଦଶ ବର୍ଷ ପରେ ସମକାଳୀନ ସମାଜ ବ୍ୟବସ୍ଥାର ପ୍ରେକ୍ଷାପଟରେ 'ଶାନ୍ତି'ର ପରିକଳ୍ପନା ଆଦୌ ଅସମ୍ଭବ ନଥିଲା ।

ନଅଙ୍କ ଦୁର୍ଭିକ୍ଷର କରାଳ ଗ୍ରାସରୁ ନିଜର ଅସ୍ଥି-କଙ୍କାଳସାର ଦେହ ନେଇ 'ଶାନ୍ତି' ଉପନ୍ୟାସର ନାୟକ ସନେଇ ଯେତେବେଳେ ନିଜ ଗ୍ରାମ ବାସ୍ତୁଭୂଇଁକୁ ଫେରିଆସିଛି; ସମାଜରେ ଛତରଖିଆ ଭାବରେ ସେ ଅସ୍ପୃଶ୍ୟ ହୋଇ ଉଠିଛି । ଧୋବର ସହାୟତାରେ ପ୍ରାୟଶ୍ଚିତ୍ତ କରି ସେ ହିନ୍ଦୁ ସମାଜରେ ମିଶିଲା, ନିଜେ ଖଣ୍ଡେ ଘର ମଧ୍ୟ ଠିଆ କଲା; କିନ୍ତୁ ତଥାପି ସେ ବଞ୍ଚିବାର ରାହା ପାଇଲା ନାହିଁ । ଏହି ସାମାଜିକ ଅବିଚାର ବିରୁଦ୍ଧରେ ସେ ପ୍ରତିବାଦ କଲା । ନିଜେ ତିଆରି କରିଥିବା ଘର ଭିତରେ ସ୍ଥାନଦେଲା, ହିନ୍ଦୁ ଧର୍ମର ଅସ୍ପୃଶ୍ୟ ଚମାର, ମୁସଲମାନ ରହିମ୍ ଆଉ ଖ୍ରୀଷ୍ଟିୟାନ ଯୋହନ କିଆ ସେଠାରେ ଏକତ୍ର ବସବାସ କରି ଏକ ନୂଆ ସମାଜ ଗଢ଼ିବା ପାଇଁ ମୂଳଦୁଆ ପକାଇ ଥିଲେ । ସନିଆ ସବଙ୍କରେ ଘୋଷଣା କରିଥିଲା— "ଏଠାରେ ଜାତିଭେଦ, ଧର୍ମଭେଦ, ବର୍ଣ୍ଣଭେଦ ରହିବ ନାହିଁ । ସମସ୍ତେ ଦେହରୁ ଝାଳ ନିଗାଡ଼ି ପରିଶ୍ରମ କରିବେ । ମା ଧରିତ୍ରୀର ଛାତିଚିରି ଖାଦ୍ୟ କାଢ଼ିବେ— ସମସ୍ତେ ଖାଇବେ । କେହି କାହାରି ଧର୍ମ ଉପରେ ବାଧା ଦେବେ ନାହିଁ । ସମସ୍ତେ ସମସ୍ତଙ୍କୁ ସମ୍ମାନ ଦେଖାଇବେ । ଭଲ ପାଇବେ । × × × ଏହି କୁଡ଼ିଆ ତଳେ ନୂଆ ଦୁନିଆ ଗଢ଼ିବା ଆମେ ରହିମ୍ ! ନୂଆ ସମାଜ ଗଢ଼ିବା —ମଣିଷ ସମାଜ ।" ( ଶାନ୍ତି' ୩ୟ ସଂସ୍କରଣ – ପୃ ୨୬୨)

କିନ୍ତୁ ସନିଆର ଏ ସ୍ୱପ୍ନ ସଫଳ ହୋଇ ନଥିଲା । ତତ୍କାଳୀନ ରକ୍ଷଣଶୀଳ ସମାଜ ବ୍ୟବସ୍ଥାର ନିଷ୍ଠୁର ଆଘାତରେ ତାର ସ୍ୱପ୍ନର ମିନାର ଚୂର୍ଣ୍ଣ ଭୂଲୁଣ୍ଠିତ ପଡ଼ିଥିଲା । ସେ ବୁଝି ପାରିଥିଲା ଯେ ଯେଉଁ ଘର ଠିଆ କରିଛି, ଯେଉଁ କିଆରିରେ ସୁନାର ଫସଲ ଠିଆ କରିଛି, ତାହା ନିଜ ଟଙ୍କାରେ ନୁହେଁ, ଧୋବର ଅର୍ଥରେ । ତେଣୁ ଧୋବ ମନରେ ଆଘାତ ଦେଇ ତା ଟଙ୍କାରେ କିଣା ହୋଇଥିବା ଜମି, ତୋଳା ହୋଇଥିବା ଘରେ ରହିବାର ଅଧିକାର ତାର ନାହିଁ । ଅନ୍ୟର ଦୟା ଓ ଦାନରେ

Digitized by srujanika@gmail.com

ନୂତନ ବିପ୍ଳବୀ ସମାଜ ସେ ଗଠିତ ହୋଇ ପାରେ ନାହିଁ; ଏହି ଦୃଢ଼ ବିଶ୍ୱାସ ଯୋଗୁ ସନଆ ତଳେ ବିଷ୍ଣୁପୁର ଗାଁ ଛାଡ଼ି ଚାଲି ଗଲା । ଯିବା ଆଗରୁ ସେ ନିଜ ବିବାହିତା ପତ୍ନୀ କର୍ଣ୍ଣିକୁ କହିଥିଲା, ପୁଣି ଆମେ ବାଟକୁ ଫେରିଯିବା, ଦେହର ଝାଳ ନିଗାଡ଼ି ପୁଣି କେଉଁଠି ନୂଆ ସଂସାର ଗଢ଼ିବା ।'

କେଉଁଠି ?

ଠିକ୍ ଜାଣି ନଥିଲା ସେ ସ୍ଥାନର ଠିକଣା ସନଆ । କାହ୍ନୁଚରଣ ମଧ୍ୟ ଜାଣି ନଥିଲେ । ସେଥିପାଇଁ ସେ ସ୍ଥାନର ଠିକଣା ଖୋଜିଥିଲେ ୧୯୫୦ ମସିହାରେ ପ୍ରକାଶିତ ତାଙ୍କର 'ଝଂଜା' ଉପନ୍ୟାସରେ ।

୧୯୪୫ ମସିହାରେ 'ଶାନ୍ତି' ୧୯୫୦ ମସିହାରେ ପ୍ରକାଶିତ 'ଝଂଜା' । ସମୟର ବ୍ୟବଧାନ ମାତ୍ର ପାଞ୍ଚ ବର୍ଷ; କିନ୍ତୁ ଏଇ ପାଞ୍ଚ ବର୍ଷ ଆମ ଜାତିର ଜୀବନରେ ଏକ ମହାନ୍ କ୍ରାନ୍ତିକାଳ । ୧୯୪୫ ମସିହାର ସ୍ୱପ୍ନ, ୧୯୪୭ ମସିହାରେ ବାସ୍ତବ । ଭାରତବର୍ଷ ସ୍ୱାଧୀନ ହୋଇଗଲା । ହିଂସାରେ ନୁହେଁ; ଅହିଂସାର ଲଢ଼େଇରେ ଆସିଥିଲା ସ୍ୱାଧୀନତା । ଠେଙ୍ଗାର ପ୍ରୟୋଗ ନକରି ମଧ୍ୟ ଠେଙ୍ଗା ମୁଣ୍ଡକୁ ତଳକୁ କରି ଦିଆ ଯାଇ ପାରେ; ଅହିଂସ ସତ୍ୟାଗ୍ରହ ଆନ୍ଦୋଳନ ଦ୍ୱାରା ପରାକ୍ରମଶାଳୀ ବ୍ରିଟିଶ ଶକ୍ତିକୁ ପରାଭୂତ କରା ଯାଇ ପାରେ; ଏକଥା ସେ ଦିନ ପ୍ରମାଣିତ ହୋଇ ସାରିଥିଲା ।

କାହ୍ନୁଚରଣ 'ଶାନ୍ତି' ଉପନ୍ୟାସରେ ବିପ୍ଳବର ଯେଉଁ ନୂତନ ଠିକଣା ଖୋଜୁଥିଲେ, 'ଝଂଜା'ରେ ସେ ତାହା ପାଇ ଗଲେ । ସେ ନୂତନ ଯାଗାର ନାମ ହେଲା 'ମଣିଷର ହୃଦୟ' । ହୃଦୟ ବଦଳିଲେ ସମାଜ ବଦଳେ; ଏହି ବିଶ୍ୱାସର ପୁଞ୍ଜି ନେଇ ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶାର ପରିବର୍ତ୍ତିତ ସାମାଜିକ ଜୀବନର ଚିତ୍ର ସେ ଅଙ୍କନ କରିଥିଲେ 'ଝଂଜା'ରେ ।

'ଶାନ୍ତି' ଅପେକ୍ଷା 'ଝଂଜା'ର କାନ୍‌ଭାସ୍ ବ୍ୟାପକ । ଘଟଣା ଜଟିଳ । ଚରିତ୍ର ଅନେକ । କିନ୍ତୁ ଆଭିମୁଖ୍ୟ ଏକ୍—ସାମାଜିକ ସମସ୍ୟାର ସମାଧାନ ପାଇଁ ପଥ-ସନ୍ଧାନ ।

ଦୁଷ୍ମନ୍ତଙ୍କ ପ୍ରେମକୁ ପ୍ରତ୍ୟାଖ୍ୟାନ କରି ଶଶିପ୍ରଭା ବିବାହ କରିଥିଲା ନିଜର ସହାଧ୍ୟାୟୀ ରୂପାରକାନ୍ତଙ୍କୁ । ସେଥିପାଇଁ ତାର ବାପା (ବିଜୟପୁରର ଜମିଦାର) କନ୍ୟାକୁ ବିବାହ ଦେବା ପରେ ତା ସହିତ ସମସ୍ତ ସମ୍ପର୍କ ତୁଟାଇ ଦେଇଥିଲେ ।

Digitized by srujanika@gmail.com

ବାପାଙ୍କ ସହିତ ସମ୍ପର୍କ ଛିନ୍ନ କରି ନିଜର ପ୍ରଶସ୍ତ ନିଷ୍ଠା ପାଇଁ ଆର୍ଥିକ ଦୁରବସ୍ଥା ବରଣ କରି ନେଇ ଥିଲେ ସୁଦ୍ଧା କ୍ଷଣପ୍ରଭା ମୁହଁରୁ ହସ ଲିଭି ଯାଇ ନଥିଲା । ତୁଷାର-କାନ୍ତ ଥିଲେ ଜଣେ ବଡ଼ ସରକାରୀ ଅଫିସର । କିନ୍ତୁ ଯେଉଁ ଦିନ ତାଙ୍କ ଦୁଇ ଆଖିରୁ ଜ୍ୟୋତି ନିର୍ବାପିତ ହୋଇଗଲା, ସେଦିନ କ୍ଷଣପ୍ରଭାକୁ ଚାରିଆଡ଼ ଅନ୍ଧକାର ଦେଖା ଯାଇ ଥିଲା ।

ତୁଷାରକାନ୍ତ-କ୍ଷଣପ୍ରଭାଙ୍କ ଜୀବନର ଏଇ ସଙ୍କଟମୟ ମୁହୂର୍ତ୍ତରେ ସେମାନଙ୍କୁ ଆଶ୍ରୟ ଦେବାକୁ ଆଗେଇ ଆସିଥିଲେ ଅବିବାହିତ ସୌନ୍ଦର୍ଯ୍ୟପ୍ରିୟ ଦୁଷ୍ମନ୍ତ; କ୍ଷଣପ୍ରଭାର ପରିତ୍ୟକ୍ତ ପ୍ରେମିକ । ଏହି ତ୍ରିଭୁଜାକୃତି ପ୍ରେମକାହାଣୀ ଏଠାପରେ ଲୋକପ୍ରିୟ ଉପନ୍ୟାସର ଗାଣିତିକ ନିୟମ ଅନୁସାରେ ଗୋଟିଏ ଅବଧାରିତ ନିୟତି ଆଡ଼କୁ ଅବତରଣ କରି ଯିବାର କଥା; କିନ୍ତୁ କାହ୍ନୁଚରଣଙ୍କ ଆଦର୍ଶବାଦୀ, ସମାଜବନ୍ଧୀ ଦୃଷ୍ଟିକୋଣ ଯୋଗୁ ତାହା ଅନ୍ୟ ଏକ ଉଚ୍ଚତାକୁ ଆରୋହଣ କରି ଗଲା ।

ପ୍ରେମର ବ୍ୟର୍ଥତା ଦୁଷ୍ମନ୍ତଙ୍କୁ କରିଥିଲା ଉଦାର ସମାଜସେବୀ । ରୁଗ୍ଣ, ଦୁଃସ୍ଥ ଲୋକଙ୍କୁ ସହାୟତା କରିବା ପାଇଁ ସେ ସ୍ଥାପନ କଲେ ଅକ୍ଷୟ ନିବାସ 'ରୁଗ୍ଣ ନିଳୟ' । ନିଜର ଦୃଷ୍ଟିଶକ୍ତି ହରାଇଲା ପରେ ତୁଷାରକାନ୍ତ ଭାଗ୍ୟହତ ମଣିଷଙ୍କ ସେବାରେ ନିଜକୁ ନିୟୋଜିତ କରିବା ପାଇଁ ଦୁଷ୍ମନ୍ତଙ୍କ ଆମନ୍ତ୍ରଣ ଗ୍ରହଣ କଲେ । ତାଙ୍କର ସହଧର୍ମିଣୀ କ୍ଷଣପ୍ରଭା ଏଥିରେ ହେଲା ତାଙ୍କର ସହକର୍ମିଣୀ ।

ଅପର ପକ୍ଷରେ ବଙ୍କପୁରର ଜମିଦାର ପର୍ଶୁରାମ ବାବୁ ଦ୍ୱିତୀୟ ପତ୍ନୀର ଏକମାତ୍ର ପୁତ୍ର ସନ୍ତୋଷର ମୃତ୍ୟୁ ପରେ ପତ୍ନୀ ଯେତେବେଳେ ତାଙ୍କୁ ଛାଡ଼ି ବାପ ଘରକୁ ଚାଲି ଯାଇଛନ୍ତି, ତାଙ୍କର ଜମିଦାରୀ ପ୍ରତି ଲୋଭ, ଆଭିଜାତ୍ୟ, ଅହଂକାର ପ୍ରତି ଆସକ୍ତି ହଠାତ୍ ଶୂନ୍ୟ ହୋଇ ଯାଇଛି । ସେ ସମବାୟ-ସାମ୍ୟବାଦର ଆଦର୍ଶ ମାନି ନିଜର ଜମିଦାରୀର ସମସ୍ତ ଜମି ପ୍ରଜାମାନଙ୍କୁ ଦାନ କରି ଦେଇଛନ୍ତି ଏବଂ ଘୋଷଣା କରିଛନ୍ତି, "ଆମର ଏ ଗାଁ ଗୋଟିଏ ଘର, ଅମେ ସମସ୍ତେ ଗୋଟିଏ କୁଟୁମ୍ବର ମଣିଷ ।" ତାପରେ "ତାଙ୍କର ସମବାୟ—ସାମ୍ୟବାଦ ନୀତି ଅନୁସାରେ ଗ୍ରାମ ହେଲା ନୂତନ । ଗ୍ରାମର ସବୁ ଚାଷ ଜମିର ମାଲିକ ହେଲେ ସମସ୍ତେ ।"

ଏହିପରି ଭାବରେ ଜମିଦାରୀ ଉଚ୍ଛେଦ ଏବଂ ଭୂମି ସମାସ୍ୟାର ସମାଧାନ ପାଇଁ କାହ୍ନୁଚରଣ 'ଝଂଜା' ଉପନ୍ୟାସରେ ଦେଇଛନ୍ତି ଏକ ଆଦର୍ଶ ସମାଧାନର ସୂତ୍ର ସନ୍ଧାନ ।

'ଶାନ୍ତି' ଉପନ୍ୟାସରେ ସନେଇଁ ଧୋବର ଆର୍ଥିକ ସାହାଯ୍ୟରେ ଯେଉଁ ଆଦର୍ଶ ସମାଜ ଗଠନର ପରିକଳ୍ପନା କରିଥିଲା, ତାହାର ଅସାରତା ପରେ

Digitized by srujanika@gmail.com

ଅନୁଭବ କରି ବିଷ୍ଣୁପୁର ଗ୍ରାମ ଛାଡ଼ି ଚାଲି ଯାଇ ଥିଲା । ସେହିପରି ନିଜର ପୂର୍ବତନ ପ୍ରେମିକ ଦୁଷ୍ମନ୍ତଙ୍କ ଧନରେ କ୍ଷଣପ୍ରଭା ଯେଉଁ ସମାଜ ସେବା କର୍ମରେ ଆତ୍ମୋତ୍ସର୍ଗ କରିଥିଲା, ଅପପ୍ରଚାରର ଭୟରେ ସେ କାର୍ଯ୍ୟ ଛାଡ଼ି ଦେଇ ସେ ଦିନେ ତାର ବାପାଙ୍କ ପାଖକୁ ଫେରି ଗଲା । 'ଶାନ୍ତି' ଉପନ୍ୟାସର ନାୟକ ସନେଇଁ ବିଷ୍ଣୁପୁର ଛାଡ଼ି ଚାଲିଗଲା ପରେ ନୂଆଘର କରିବାକୁ ଜାଗା ପାଇଥିଲା କି ନାହିଁ ଜଣା ନାହିଁ; କିନ୍ତୁ ପର୍ଶୁରାମ ବାବୁଙ୍କ ହୃଦୟ ପରିବର୍ତ୍ତନ ପରେ ବିଜୟପୁରରେ କ୍ଷଣପ୍ରଭା ଆଶ୍ରୟ ପାଇବାରେ କୌଣସି ଅସୁବିଧା ହୋଇ ନଥିଲା । ତାର ଏକମାତ୍ର କାରଣ ୧୯୪୫ ମସିହାରେ ବିପ୍ଳବ ଯେ ମଣିଷର ହୃଦୟ ମଧ୍ୟରେ ସଂଗଠିତ ହୁଏ ସେକଥା କାହ୍ନୁଚରଣ ବୁଝି ପାରି ନଥିଲେ; କିନ୍ତୁ ମହାତ୍ମା ଗାନ୍ଧିଙ୍କ ଆଦର୍ଶ ଅନୁକରଣରେ ସ୍ୱାଧୀନତା ପରବର୍ତ୍ତୀ କାଳରେ ସେଇ ହୃଦୟ-ପରିବର୍ତ୍ତନର ଛବିକାଠି ତାଙ୍କ ହାତମୁଠାକୁ ଚାଲି ଆସିଥିଲା ।

କାହ୍ନୁଚରଣ ଆଦର୍ଶବାଦୀ ଔପନ୍ୟାସିକ; ଆଦର୍ଶ ପାଇଁ ବାସ୍ତବତା ଠାରୁ ଦୂରେଇ ରହିବା ଲାଗି ତାଙ୍କର ସାହିତ୍ୟିକ-ବିବେକ କୁଣ୍ଠିତ ହୁଏ ନାହିଁ । ଏହା ଯେପରି ତାଙ୍କର ଏକ ପ୍ରକାର ଦୁର୍ବଳତା; ସେହିପରି ଅନ୍ୟ ଦୃଷ୍ଟିରୁ ମଧ୍ୟ ପ୍ରଧାନ ଶକ୍ତି; ବିପୁଳ ଲୋକପ୍ରିୟତାର କାରଣ । ସମାଜ ବିପ୍ଳବର ପରିକଳ୍ପନା ଓ ସମାଧାନର ସୂତ୍ର ସନ୍ଧାନ କଲାବେଳେ ସେ ଶ୍ରେଣୀ-ସଂଘର୍ଷ ଓ ଶ୍ରେଣୀ ଚେତନାର ଶାଣିତ ଅସ୍ତ୍ର ବ୍ୟବହାର ନକରି ଶ୍ରେଣୀ-ସମନ୍ୱୟର ପେଟେଣ୍ଟ୍ ମେଡ଼ିସିନ୍ ବ୍ୟବହାର କରନ୍ତି । ଏହା ରୁଗ୍ଣ ସମାଜକୁ ସଂପୂର୍ଣ୍ଣ ନିରାମୟ କରି ନପାରେ; କିନ୍ତୁ ସାମୟିକ ଭାବରେ ରୋଗର ଯନ୍ତ୍ରଣାକୁ ଉପଶମ କରିଦିଏ । ସେଥିପାଇଁ ମାର୍କସବାଦୀ ସାମ୍ୟବାଦୀ ଚିନ୍ତା ଅପେକ୍ଷା ଫ୍ରୟେଡୀୟ ଦର୍ଶନ ତାଙ୍କୁ ବେଶୀ ଆକର୍ଷିତ କରେ । ନାରୀର ପ୍ରେମହିଁ ହୁଏ ପୁରୁଷ ଲାଗି ବିପ୍ଳବ ଏବଂ ତ୍ୟାଗର ପ୍ରଧାନ କାରଣ । ଯୋଷ ଲାଗି ସନେଇଁ, କ୍ଷଣପ୍ରଭା ପାଇଁ ଦୁଷ୍ମନ୍ତ ଆଉ ପାର୍ବତୀଙ୍କ ପାଇଁ ପର୍ଶୁରାମ ହୁଅନ୍ତି ବିପ୍ଳବୀ, ସମାଜସେବୀ ଏବଂ ସର୍ବତ୍ୟାଗୀ ଆଦର୍ଶ ପୁରୁଷ ! ନାରୀହିଁ ହେଉଛି ପୁରୁଷର ନିୟନ୍ତା-'ଶାନ୍ତି' ଓ 'ଝଞ୍ଜା' ଉପନ୍ୟାସ ପଢ଼ି ସାରିଲା ପରେ ଏହି ଧାରଣା ଯେପରି କ୍ରମଶଃ ମନରେ ଦୃଢ଼ୀଭୂତ ହୋଇଯାଏ !



Digitized by srujanika@gmail.com

# ସ୍ରଷ୍ଟାର ନିଷ୍ଠା ଓ ସୃଷ୍ଟିର ସୌନ୍ଦର୍ଯ୍ୟ

ଶ୍ରୀ ନରହରି ଉପାଧ୍ୟାୟ

ଏକଦା ମହାତ୍ମା ଗାନ୍ଧୀ କହିଥିଲେ—"କଳା ହେଉଛି ଆତ୍ମମନ୍ଥନର ଫଳ । ସେଥିରେ ଅନନ୍ତ ସୌନ୍ଦର୍ଯ୍ୟ ଓ ଜୀବନକଲ୍ୟାଣର ଭାବନା ନିହିତ ।" ଉକ୍ତିଟିକୁ ଏହିପରି ତାତ୍ପର୍ଯ୍ୟାନ୍ୱିତ କରାଯାଇ ପାରେ ଯେ, କଳାର ଉତ୍ପତ୍ତିସ୍ଥଳ ମନ ଏବଂ ମନ୍ଥନ ପ୍ରକ୍ରିୟା ଦ୍ୱାରା ତା'ର ସତ୍ତା ଉପଲବ୍‌ଧ । ମନ୍ଥନ ପ୍ରକ୍ରିୟାରୁ ଅମୃତ ତୁଲ୍ୟ ଦ୍ରବ୍ୟ ପଦାର୍ଥର ସୃଷ୍ଟି । ଦଧିମନ୍ଥନରୁ ଉଦ୍ଭବ ହୁଏ ନବନୀତ ନାମକ ସୃଷ୍ଟ ସାର ବସ୍ତୁ । ସେହିପରି ମନ ରାଜ୍ୟରେ ଉଦ୍‌ଭବ ହେଉଥିବା ସୃଜନାତ୍ମକ ଚିନ୍ତା ସମୂହର ଆଲୋଡ଼ନ ଫଳରେ ସେଉଁ ସାରତତ୍ତ୍ୱଟି ଉପଲବ୍‌ଧ ହୁଏ, ତାହା ହିଁ 'କଳା' । ସ୍ୱାଭାବିକ ଭାବେ କଳା ଏକ ସୌନ୍ଦର୍ଯ୍ୟମୟ ସୃଷ୍ଟି ଏବଂ ତା'ର ମୌଳିକ ଉପସ୍ଥାପନା ବା ଅଭିବ୍ୟକ୍ତି ଆମକୁ ସ୍ପର୍ଶ କଲେ ସହୃଦୟ କ୍ଷେତ୍ରରେ ମହତ୍ତର ଅନୁଭୂତ ଜାତହୁଏ । ସୁତରାଂ ପ୍ରତ୍ୟେକ କଳା ସୃଷ୍ଟି ଉପଭୋଗ୍ୟ ହେବା ସଙ୍ଗେ ସଙ୍ଗେ ସ୍ରଷ୍ଟା ଓ ଉପଭୋକ୍ତା ଉଭୟ ପକ୍ଷର କୈବଲ୍ୟଦାୟୀ ହୋଇଥାଏ । କଳାର ଅଭିଧାନିକ ଅର୍ଥ ସୃଷ୍ଟିଶିଳ୍ପ । ସୌନ୍ଦର୍ଯ୍ୟ ଓ ଆନନ୍ଦର ଅଭିବୃଦ୍ଧି କଳା'ର ଉଦ୍ଦେଶ୍ୟ । ଭାରତୀୟ ତାତ୍ତ୍ୱିକ ଭାବଧାରାରେ ଭୋଗପ୍ରଧାନ କୃତିତ୍ୱ କଳା ପଦବାଚ୍ୟ ନୁହେଁ; ଯାହା ଆତ୍ମାକୁ ପରମାନନ୍ଦ ପ୍ରଦାନ କରେ ତାହା ହିଁ ପ୍ରକୃଷ୍ଟ କଳା ରୂପେ ବିବେଚିତ । ପ୍ରାମାଣିକ ବାକ୍ୟରେ—"ଲୀୟତେ ପରମାନନ୍ଦେ ଯା ଆତ୍ମା ସା ପରା କଳା" । ଆମର ଏହି ସୁସମୃଦ୍ଧ ସଂସ୍କୃତିସମ୍ପନ୍ନ ପ୍ରାଚୀନ ଦେଶରେ ଧର୍ମ, ଦର୍ଶନ, ସଙ୍ଗୀତ, ସାହିତ୍ୟ, ଚିତ୍ର, ସ୍ଥାପତ୍ୟ ଓ ଭାସ୍କର୍ଯ୍ୟାଦି ବହୁ ଚାରୁକଳା, କାରୁକଳା, ଲଳିତକଳା ବିକାଶଲାଭ କରିଛି । ଏହି ବିକାଶଧାରାର ପରିବ୍ୟାପ୍ତି ସହସ୍ର ସହସ୍ର ବର୍ଷ । ମାନର ତାରତମ୍ୟ ଏବଂ ବାହ୍ୟରୂପ ଭିନ୍ନଭିନ୍ନ ହେଲେ ହେଁ, ମାନବ ସୃଷ୍ଟିର କୋଣେ କୋଣେ କଳାର ଅନ୍ତଃସ୍ୱଭାବ ଅଭିନ୍ନ । କଳାର ବାଙ୍‌ମୟ ପ୍ରକାଶ ସାହିତ୍ୟ । ବିଶ୍ୱସାହିତ୍ୟରେ ପ୍ରତିଭାଧର ଓ ନିଷ୍ଠାପର ସ୍ରଷ୍ଟାମାନଙ୍କର ମୌଳିକ ବୈଶିଷ୍ଟ୍ୟପୂର୍ଣ୍ଣ ସମୃଦ୍ଧ କଳାସୃଷ୍ଟି ପରିକ୍ରମା କଲେ ସର୍ବତ୍ର ସତ୍ୟ-ଶିବ-ସୁନ୍ଦରର ସନ୍ଧାନ ଅବଶ୍ୟ ମିଳିବ । ଅତଏବ ଆଲୋଚନା ପରିସରରେ, ଓଡ଼ିଆ ସାହିତ୍ୟ କଳାର ଅନ୍ୟତମ ପ୍ରତିଭାଧର, ଆଜୀବନ କୃତୀ ସାଧକ, କଥାକାର କାହ୍ନୁଚରଣଙ୍କର ସୁବିପୁଳ ସୃଷ୍ଟିସମ୍ପଦ ମଧ୍ୟରୁ ସ୍ରଷ୍ଟାର ନିଷ୍ଠା ଓ ସୃଷ୍ଟିର ସୌନ୍ଦର୍ଯ୍ୟ ସନ୍ଧାନିବା ।

Digitized by srujanika@gmail.com

"ନରଭୂମସ୍ୟୋଽସ୍ୟଂ ପୁରୁଷଃ" ଶାସ୍ତ୍ରୋକ୍ତିଟିକୁ କାହ୍ନୁଚରଣଙ୍କ କ୍ଷେତ୍ରରେ ପ୍ରୟୋଗ କରିବାର ଲୋଭସମ୍ବରଣ କରିପାରୁ ନାହିଁ । ଏଥିରେ ପୁରୁଷକୁ ଯଜ୍ଞମୟ କୁହାଯାଉଛି । ଜୀବନର ପ୍ରତ୍ୟେକ କାର୍ଯ୍ୟ ଏକ ଯଜ୍ଞ । ଏହାର ବିଧିବଦ୍ଧ ଅନୁଷ୍ଠାନ ଦ୍ୱାରା ଲୌକିକ ସଫଳତା ପ୍ରାପ୍ତ ହୁଏ । ସାଧାରଣତଃ ଯଜ୍ଞମୟ ଜୀବନ ସଂଘର୍ଷମୟ । ପଥରେ ବହୁ ବାଧାବିଘ୍ନ ସଂଘଟିତ ହୁଏ । କାହ୍ନୁବାବୁ ତାଙ୍କର ସାଧନାମୟ ଜୀବନରେ ଦୁଇଟି ମୁଖ୍ୟ ଯଜ୍ଞାନୁଷ୍ଠାନରେ ବ୍ରତୀ ହୋଇଛନ୍ତି; ପ୍ରଥମଟି ରାଜସେବା ଓ ଦ୍ୱିତୀୟଟି ସାହିତ୍ୟ ସାଧନା । ସାଫଲ୍ୟମଣ୍ଡିତ କାର୍ଯ୍ୟକାଳ ପୂର୍ଣ୍ଣକରି ସେବାକର୍ମରୁ ଅବସର ଗ୍ରହଣ ସଙ୍ଗେ ସଙ୍ଗେ ପ୍ରଥମ ଯଜ୍ଞର ପୂର୍ଣ୍ଣାହୁତି ହୋଇଯାଇଛି । ଆଲୋଚନା ସମାଲୋଚନା, ଆଦର ହତାଦରକୁ ଭ୍ରୂକ୍ଷେପ ନ କରି ଦ୍ୱିତୀୟ ଯଜ୍ଞର ଜ୍ୱାଳାକୁ ପ୍ରଯତ୍ନ ପୂର୍ବକ ଆଜୀବନ ପ୍ରଦୀପ୍ତ କରି ରଖିଛନ୍ତି ଏବଂ ଆହୁରି ଦୀର୍ଘକାଳ ଧରି ସେହି ଦୀପ୍ତି କାଳବକ୍ଷରେ ସମୁଜ୍ଜ୍ୱଳ ରେଖାପାତ କରି ଚାଲିଥାଉ, ଏହା ହିଁ କାମ୍ୟ । କାହ୍ନୁବାବୁଙ୍କ ନବନବ ସୃଷ୍ଟିର ଉତ୍ତରୋତ୍ତର ସମୃଦ୍ଧି ତାଙ୍କ ସାଧନନିଷ୍ଠ ଜୀବନର ପରିଚାୟକ । ଜୀବନ ଯଜ୍ଞର ସୁଫଳ ତାଙ୍କ କୃତସମ୍ପଦ ।

ଓଡ଼ିଆ ସାହିତ୍ୟରେ ଅର୍ଦ୍ଧଶତାଧିକ ଉପନ୍ୟାସର ସ୍ରଷ୍ଟା କାହ୍ନୁଚରଣ ଓଡ଼ିଶାର ଘରେ ଘରେ ପାଠକ ମହଲରେ ସୁପରିଚିତ । ଉନ୍ମେଷଶାଳିନୀ ପ୍ରତିଭା ସୃଷ୍ଟି ବୈଚିତ୍ର୍ୟ ପ୍ରଦର୍ଶନ ମାଧ୍ୟମରେ ବିକଶିତ ହୁଏ । ସୃଷ୍ଟି ପ୍ରେରଣାର ଉତ୍ସ ଅନୁସନ୍ଧିତ୍ସା ବା ଜୀବନ ଜିଜ୍ଞାସା । ଏହି ପରିପ୍ରେକ୍ଷୀରେ କାହ୍ନୁଚରଣଙ୍କ ସୃଷ୍ଟିଧାରା ପରୀକ୍ଷଣୀୟ । ୧୯୩୦ ରେ ପ୍ରଥମ ପ୍ରକାଶିତ, ରଚନାକ୍ରମରେ ପଞ୍ଚମ ଉପନ୍ୟାସ 'ପଳାତକ' ପ୍ରଥମଥର ପାଇଁ କଥାଶିଳ୍ପ ମଞ୍ଚକୁ ତାଙ୍କର ଆଗମନୀ ଘୋଷଣା କରିଥିଲା । କିନ୍ତୁ ତାଙ୍କୁ ଔପନ୍ୟାସିକ ଖ୍ୟାତି ଆଣିଦେଲା, ଉତ୍କଳଙ୍କ ଭୂଖଣ୍ଡର ଐତିହାସିକ ବାର୍ତ୍ତା ବହନ କରି ୧୯୩୧-୩୬ରେ ପ୍ରକାଶିତ ତାଙ୍କ ରଚନାକ୍ରମର ତୃତୀୟ ଉପନ୍ୟାସ 'ବାଳିରାଜା' । ଏହିଠାରୁ ଚାଲିଲା ତାଙ୍କର ଯଜ୍ଞମୟ ସାରସ୍ୱତ ଜୀବନର ଦୁର୍ବାର ଜୟଯାତ୍ରା । ଉପରନ୍ତୁ ବଦଳିଲା ସୃଷ୍ଟିଧାରାର ଔପାଦାନିକ ଅଭିମୁଖ୍ୟ । ଇତିହାସର ବିସ୍ମୃତ ଗହ୍ୱର ମନ୍ଥନରୁ ନିବୃତ୍ତ ହୋଇ ନୂତନ ଆଲୋକର ସନ୍ଧାନ କରି ଲାଗିଲେ ପାରିପାର୍ଶ୍ୱିକ ସମାଜର କାତିଦିନିଆ ଜୀବନ ଭିତରୁ । ନିଷ୍କୃତି, ସ୍ୱପ୍ନ ନା ସତ୍ୟ, ହୁନିଆର ଦାଉ ପ୍ରଭୃତି ତାଙ୍କର ପରବର୍ତ୍ତୀ ପ୍ରକାଶିତ ଉପନ୍ୟାସଗୁଡ଼ିକ ସମାଜ ସଚେତନତାର ମୁଦ୍ରାବହନ କରେ । ଏହି ପର୍ଯ୍ୟାୟରେ ହଠାତ୍ ଅପ୍ରତ୍ୟାଶିତ ଭାବେ ଔପନ୍ୟାସିକ କାହ୍ନୁଚରଣଙ୍କୁ ଆମେ କବି କାହ୍ନୁଚରଣ ରୂପେ ଦେଖିବାକୁ ପାଉଁ । ଏକ ଆକସ୍ମିକ ବିବର୍ତ୍ତିତ ଅଭିମୁଖ୍ୟର ସୂଚନା ଦେଇ ୧୯୩୬ରେ ପ୍ରକାଶିତ ହୁଏ ତାଙ୍କର ମାନସଜାତ 'ମାନସୀ' । କବିତା ହୃଦୟର ବସ୍ତୁ । କବି ମାନସରେ

Digitized by srujanika@gmail.com

ଯେଉଁ ପ୍ରେରଣା ଅପେ ସେଥିରୁ ଉଦ୍‌ଗମ ହୁଏ କବିତା । କାହ୍ନୁଚରଣଙ୍କର ଏ ପ୍ରେରଣାର ଉତ୍ସ କେଉଁଠି ? ଉପନ୍ୟାସ ରସିକ କାହ୍ନୁଚରଣଙ୍କର କାବ୍ୟରସିକତା କାହିଁକି ? ବିତୃଷ୍ଣା ଓ ବ୍ୟର୍ଥତାର ଆବେଗ ମଧ୍ୟରୁ ନୁହେଁ ତ ? ପରମେଶ୍ୱର ତାଡ଼ନାରୁ ନୁହେଁତ ? ଆତ୍ମବିଶ୍ୱାସ ଅଭାବରୁ ନୁହେଁ ତ ? ନୂତନ ଅହ୍ୱାନର ମୁକାବିଲା କରିବା ପାଇଁ ଅସାମର୍ଥ୍ୟ ଅନୁଭବରୁ ନୁହେଁ ତ ? — ଭାବନାରାଜ୍ୟରେ ଉଦ୍‌ଭବ ହୁଏ ଏପରି ବହୁ ପ୍ରଶ୍ନବାଚୀ । ଏ ପ୍ରଶ୍ନର ସମାଧାନ ଏକ ବିଶେଷ ଆଲୋଚନାର ଅପେକ୍ଷା ରଖେ । ତେବେ ଏତିକି ଆଶ୍ୱାସନାର କଥା, 'ମାନସୀ' କାବ୍ୟସଙ୍କଳନଟିର ମୁଖଦର୍ଶନ ପରେ କବି ହୋଇଛନ୍ତି କାଳଜୟୀ । ପୁଣି ଫେରି ଆସିଛନ୍ତି ସ୍ୱକ୍ଷେତ୍ରକୁ; ନୂତନ ସୃଷ୍ଟି ଉତ୍କର୍ଷ ସମ୍ପାଦନ ପାଇଁ ଦୃଷ୍ଟିପାତ କରିଛନ୍ତି ଦୂର୍ଗତ ଓଡ଼ିଆ ଜାତିର ଅବିସ୍ମୃତ ଅତୀତକୁ । ତାଙ୍କର ସମ୍ବେଦନଶୀଳ ମାନସପଟରେ ପ୍ରତିଭାତ ହୋଇ ଉଠିଛି ବିଗତ ଶତାବ୍ଦୀର ସପ୍ତମ ଦଶକରେ ଓଡ଼ିଶା ଭୂଖଣ୍ଡକୁ ଛାରଖାର କରିଥିବା ନ'ଅଙ୍କ ଦୁର୍ଭିକ୍ଷର କରାଳ ଚିତ୍ର । ତା'ରି ମଧ୍ୟରୁ କେତୋଟି ଅସ୍ଥିକଙ୍କାଳସାର ହତଭାଗ୍ୟ ଚରିତ୍ରଙ୍କୁ ଆହରଣ କରି ୧୯୩୫ ମସିହାରେ, କଳାଶିଳ୍ପୀ କାହ୍ନୁଚରଣ କାରୁଣ୍ୟ ଜଳଧି କୂଳରେ ଗଢ଼ି କରିଛନ୍ତି ତାଙ୍କର ପ୍ରାଣସ୍ପର୍ଶୀ ସାହିତ୍ୟ କଳା ସୌଧ 'ହା ଅନ୍ନ' । ଗ୍ରନ୍ଥଜୀବନରେ ଏହି ଅମର ଶିଳ୍ପୀଙ୍କ ନାମ ସହିତ ଲେଖକର ପ୍ରଥମ ପରିଚୟ ଏହି ମନୋଜ୍ଞ ସୃଷ୍ଟି ମାଧ୍ୟମରେ ଘଟିଥିଲା । ସେତେବେଳେ ମନରେ କାରୁଣ୍ୟ, ସମ୍ବେଦନାର ଯେଉଁ ଭାବୋଚ୍ଛ୍ୱାସ ଜାତ ହୋଇଥିଲା, ଏବେସୁଦ୍ଧା ସ୍ମୃତିର ସଞ୍ଚାଳି ହୋଇ ରହିଛି । ଏହାକୁ କାହ୍ନୁଚରଣଙ୍କର ଦ୍ୱିତୀୟ ପର୍ଯ୍ୟାୟର ଆଦ୍ୟସୃଷ୍ଟିରୂପେ ଅଭିହିତ କରାଯାଇ ପାରେ । ଏହି ପର୍ଯ୍ୟାୟର ଅନ୍ୟାନ୍ୟ ଉପାଦେୟ ସୃଷ୍ଟି ପରଜ୍ଞପ୍ତା, ଉଦଣ୍ଡୀ, ଅଦେଖା ହାତ, ପ୍ରତିଜ୍ଞା, ଭଲପାଇବାର ଶେଷକଥା, ତୁଣ୍ଡବାଇଦ ଓ ଏ ପାରି ସେ ପାରି । ଏଥିମଧ୍ୟରୁ କେତେକ ବିଶେଷଭାବେ ପ୍ରେମଚାନ୍ଦ ସମ୍ବଳିତ ।

ସମାଜ ପ୍ରତି ଔପନ୍ୟାସିକର ଯେଉଁ କର୍ତ୍ତବ୍ୟ ତାକୁ କେବଳ ପ୍ରେମଚାନ୍ଦ ଆଙ୍କି ଭୁଲିଛ ହେବ ନାହିଁ । ନ'ଅଙ୍କ ଦୁର୍ଭିକ୍ଷ ପରବର୍ତ୍ତୀ କାଳର ଜାତୀୟ ସମସ୍ୟା ଓ ତା'ର ସମାଧାନର ପନ୍ଥା ନିର୍ଦ୍ଦେଶ କରିବାର କର୍ତ୍ତବ୍ୟବୋଧ ହିଁ ଔପନ୍ୟାସିକ ପାଇଁ ହେବ ସାଫଲ୍ୟର ସାର୍ଥକ ମାନଦଣ୍ଡ । ପୁଣି ଏକ ମୋଡ଼ ନେଇଛି ସୃଷ୍ଟିର ଅଭିମୁଖ୍ୟ । ୧୯୩୬ ମସିହାରେ ପ୍ରକାଶିତ 'ଶାସ୍ତି' ଏକ ଉଲ୍ଲେଖଯୋଗ୍ୟ ଉପନ୍ୟାସ । ସ୍ୱାଭାବିକତା ଏହି ଉପନ୍ୟାସର କଥାବସ୍ତୁ 'ହା ଅନ୍ନ' ବର୍ଣ୍ଣିତ ନ'ଅଙ୍କ ଦୁର୍ଭିକ୍ଷର ପରବର୍ତ୍ତୀ ସାମାଜିକ ଚିତ୍ର ପରିବେଷଣ କରେ । ଦୁର୍ଭିକ୍ଷ ପୀଡ଼ିତ, ଅସ୍ଥି-ଚର୍ମସାର ଯେଉଁ ପ୍ରାଣୀ କେତୋଟି କୌଣସିମତେ ଜୀବନ ଯେନ ଯମଦ୍ୱାରରୁ ବାହୁଡ଼ି

Digitized by srujanika@gmail.com

ଆସିଥିଲେ, ଯେମାନେ ରକ୍ଷଣଶୀଳ ସମାଜର ସହାନୁଭୂତି ପରିବର୍ତ୍ତେ ପାଇଥିଲେ ଶାସ୍ତି । ତା'ର ବିରୁଦ୍ଧରେ 'ଶାସ୍ତି' ତୋଳିଛି ବିଜ୍ରୋହର ଆହ୍ୱାନ । ଏହି ଉପନ୍ୟାସଟି ଦଶବର୍ଷ ଧରି ବିଶ୍ୱବିଦ୍ୟାଳୟର ପାଠ୍ୟପୁସ୍ତକ ରୂପେ ପ୍ରଚଳିତ ହେବାର ସୌଭାଗ୍ୟ ଲାଭ କରିବା ହିଁ ସ୍ରଷ୍ଟାଙ୍କର ସୃଷ୍ଟି ସାଫଲ୍ୟର ଯଥାର୍ଥ ସ୍ୱୀକୃତି ।

ପର୍ଯ୍ୟାୟକ୍ରମେ ସମାଜରେ ନୂତନ ବୈପ୍ଳବିକ ଚେତନା ସୃଷ୍ଟି କରିବାରେ କାହ୍ନୁଚରଣ ଅଗ୍ରଗାମୀ ଭୂମିକା ଗ୍ରହଣ କରିଛନ୍ତି । ସାମାଜିକ, ବୌଦ୍ଧିକ, ମନସ୍ତାତ୍ତ୍ୱିକ, ପ୍ରାକୃତିକ ଚିତ୍ର ପରିବେଷଣରେ ଚମତ୍କାରିତାର ମୁଦ୍ରାଙ୍କନ କରୁଥିବା ତାଙ୍କର ଉଚ୍ଚକୋଟିର ସୃଷ୍ଟି ମଧ୍ୟରେ ଅଭିନେତ୍ରୀ, ଝଞ୍ଜା, ଶବରୀ, କା, ବଜ୍ରବାହୁ, ଜମିଦାରୀରେ ପ୍ରଭୃତିର ନାମ ଉଲ୍ଲେଖ ଯୋଗ୍ୟ । ଏମାନଙ୍କ ମଧ୍ୟରୁ 'ଅଭିନେତ୍ରୀ' ଓ 'କା' ରୂପେଲି ପରଦାରେ ରୂପାୟିତ ହେବାର ସାଫଲ୍ୟ ଅର୍ଜନ କରିଛି । ଅନ୍ୟ କେତୋଟି ମଧ୍ୟ ମଞ୍ଚୋପଯୋଗୀ ନାଟ୍ୟରୂପ ପ୍ରାପ୍ତ ହୋଇଛି । 'କା' ଉପନ୍ୟାସଟି ୧୯୫୯ରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ ।

ଉପନ୍ୟାସର ସୃଷ୍ଟି ତାତ୍ପର୍ଯ୍ୟ ବିଷୟରେ କିଞ୍ଚିତ୍ ଧାରଣା ଦେବା ଦରକାର । ସତ୍ୟ ଶିବ ସୌନ୍ଦର୍ଯ୍ୟର ପରିପ୍ରକାଶ ପାଇଁ ଏହାର ଜନ୍ମ । ମନୀଷ ମନ ଓ ଚେତନାର ସଂବାହକ ରୂପେ ଉପନ୍ୟାସ ଏ ଯୁଗରେ ଏକ ଅପ୍ରତିଦ୍ୱନ୍ଦୀ ଭୂମିକା ଗ୍ରହଣ କରିଛି । ସାହିତ୍ୟ କଳା ରାଜ୍ୟରେ ଔପନ୍ୟାସିକ କଳା ଗୋଟିଏ ଅପେକ୍ଷାକୃତ ଅର୍ବାଚୀନ ବିଭବ ହେଲେ ହେଁ, ଏହାର ସୁଦୂର ପ୍ରସାରୀ ପ୍ରଭାବ ଓ ବ୍ୟାପକ ଲୋକପ୍ରିୟତା ଅନୁପମ । ବାସ୍ତବତାର ସ୍ପର୍ଶ ଥିବା ଯେ କୌଣସି କଳ୍ପନାଶ୍ରୟୀ ସୁନିର୍ବାଚିତ କାହାଣୀକୁ ଉପଜୀବ୍ୟ କରି କଳାତ୍ମକ ବର୍ଣ୍ଣନା ଶୈଳୀ ଅନୁସରଣରେ ତା'ର ବୈଚିତ୍ର୍ୟ ଓ ବୈଶିଷ୍ଟ୍ୟର ମୌଳିକ ଉପସ୍ଥାପନା ଉପନ୍ୟାସ କଳାକୃତିର ସଫଳ ସାଧନୋପାୟ । କଳ୍ପନା ବାସ୍ତବତାର ରୂପ ଗ୍ରହଣ ନ କଲେ ଉପନ୍ୟାସ କଳା ବ୍ୟର୍ଥତାରେ ପର୍ଯ୍ୟବସିତ ହେବା ନିଶ୍ଚିତ । ଉପନ୍ୟାସର ତିନୋଟି ଅଙ୍ଗ ହେଲା—ଗଳ୍ପ, ଚରିତ୍ର ଓ ଭାଷା । ଏ ତିନୋଟିଯାକ ଅଙ୍ଗର ସୁଷମ ତଥା ସାମୂହିକ ବିକାଶ ନ ଘଟିଲେ ଉପନ୍ୟାସର କଳା ସୌଷ୍ଠବ ପ୍ରକଟିତ ହୋଇ ନ ପାରେ । ଦ୍ୱନ୍ଦ୍ୱ, ଉତ୍କଣ୍ଠାଦି ବିଭିବର ଚିତ୍ତାକର୍ଷକ ପ୍ରୟୋଗ ଉପନ୍ୟାସକୁ ସାଫଲ୍ୟ-ମଣ୍ଡିତ କରିଥାଏ । ଘଟଣା ପ୍ରବାହର କଳାତ୍ମକ ବିକାଶ ଘଟାଇ ଏହାର ଚମତ୍କାରିତା ସୃଷ୍ଟି କରିବା ଔପନ୍ୟାସିକର ପରମ ଲକ୍ଷ୍ୟ । ପ୍ରଗତି ନାମରେ ସ୍ୱଦେଶର ଐତିହ୍ୟ ପରମ୍ପରାକୁ ଜଳାଞ୍ଜଳି ଦେବା ବା ନ୍ୟୂନ କରିଦେବା ସୃଷ୍ଟି ସାଫଲ୍ୟର ପରିପନ୍ଥୀ । ଆମର ଜୀବନଧାରା ପାଶ୍ଚାତ୍ୟ ଚଳଣିରୁ ଭିନ୍ନ । ବିଦେଶୀୟ ଭାବଧାରାର ଅନ୍ଧାନୁସରଣ କଲେ, ପ୍ରଗତି ସହିତ ପରମ୍ପରାର ସଂଘର୍ଷ ଅନିବାର୍ଯ୍ୟ

Digitized by srujanika@gmail.com

ହୋଇପଡ଼େ । ଏ ପରିସ୍ଥିତି ସୃଷ୍ଟି ସାଫଲ୍ୟର ଅନୁକୂଳ ହୋଇ ନ ପାରେ । ଫକୀରମୋହନ ଓଡ଼ିଆ ଉପନ୍ୟାସକୁ ଆଧୁନିକତାର ସ୍ପର୍ଶ ଦେଲେ । କିନ୍ତୁ ପରମ୍ପରାକୁ ପରିତ୍ୟାଗ କରିନାହାନ୍ତି; ଚିରନ୍ତନ ସତ୍ୟକୁ ଉପେକ୍ଷା କରିଦେଇ ନାହାନ୍ତି । ଉପନ୍ୟାସ ସାହିତ୍ୟରେ ସମାଜର ପ୍ରତିବିମ୍ବ ପ୍ରତିଫଳିତ ହେବା ଆବଶ୍ୟକ । ସୃଷ୍ଟିର ଯୁଗଧର୍ମୀତା ରକ୍ଷାକରି ଏ ଲକ୍ଷ୍ୟ ସାଧନୀୟ । ଅନ୍ୟଥା ସେ ସୃଷ୍ଟି; ସେ ସାହିତ୍ୟ ଶାଶ୍ୱତ ହୋଇ ନ ପାରେ । ଆଧୁନିକ ଯୁଗରେ ପଦେ ପଦେ ଜୀବନ ଯନ୍ତ୍ରଣାର ଦାହ ଦେବାର ପ୍ରବଣତା ଅନୁଭୂତ ହୁଏ । ତଥାକଥିତ ଯନ୍ତ୍ରଣାର ଉପଶମ ବା ଅପସାରଣ ପାଇଁ ଉପନ୍ୟାସ ସାହିତ୍ୟ ପରିସରରେ କେବଳ ବାହ୍ୟ ବିଦ୍ରୋହର ସ୍ୱର ଉଠାଇଲେ ତା'ର ବିନୋଦନ ସାର୍ଥକତା ବ୍ୟାହତ ହେବ । ତେଣୁ ଅନ୍ତର୍ବିଦ୍ରୋହ ଦ୍ୱାରା ମାନବତାର ଜାଗୃତୀକରଣରେ ହିଁ ସର୍ବଦା ଭାବ ସାହିତ୍ୟର ଏବଂ ବିଶେଷଭାବେ ଉପନ୍ୟାସର ସାର୍ଥକତା । ଏହି ପରିପ୍ରେକ୍ଷୀରେ କାହ୍ନୁଚରଣଙ୍କ ଔପନ୍ୟାସିକ ସୃଷ୍ଟି ସାଫଲ୍ୟ ବିଚାର୍ଯ୍ୟ ।

ଋକ୍‌ବେଦ କହନ୍ତି—"ଯଜ୍ଞଂ ଦଧେ ସରସ୍ୱତୀ", ତାତ୍ପର୍ଯ୍ୟ ହେଲା ସରସ୍ୱତୀଙ୍କ କୃପାରୁ ସତ୍ ସଂକଳ୍ପ ଚରିତାର୍ଥ ହୁଏ । କାହ୍ନୁବାବୁଙ୍କ କ୍ଷେତ୍ରରେ ଏହି ବେଦୋକ୍ତିର ସତ୍ୟତା ପ୍ରମାଣିତ ହୋଇଛି । ଶ୍ରୀ ଅରବିନ୍ଦଙ୍କ ଉକ୍ତିରେ —"ଜୀବନ ଏକ ଅଶ୍ୱ ସମାନ" । ଏ ଉକ୍ତିଟି କାହ୍ନୁବାବୁଙ୍କ ପକ୍ଷରେ ପ୍ରଯୁଜ୍ୟ । କାହ୍ନୁବାବୁ ଉପନ୍ୟାସ ସାହିତ୍ୟର ଉତ୍ତୁଙ୍ଗ ସୌଧ ଛିଡ଼ା କରାଇବାର ପୋଷିତ ଲକ୍ଷ୍ୟ ସାଧନ ପାଇଁ ଜୀବନ ଘୋଡ଼ାକୁ ଦଉଡ଼ାଇଛନ୍ତି ସାରା ଜୀବନ । ଗଡ଼ ପଡ଼ ଖଣ୍ଡିଆ ଖାବଡ଼ା ହେବାର ଆଶଙ୍କା ଦୃଢ଼ ସଂକଳ୍ପରୁ ତାଙ୍କୁ ଟଳାଇବାକୁ ବିରତ କରାଇ ପାରି ନାହିଁ । କଥାରେ କହନ୍ତି, ଘୋଡ଼ା ଚଢ଼ାଠାରୁ ସମ୍ପଦ ନାହିଁ । ଏ ସମ୍ପଦ ଭୌତିକ ସମ୍ପଦର ନିଦର୍ଶନ । କିନ୍ତୁ କାହ୍ନୁବାବୁ ତାଙ୍କର ଲଗାମଛଡ଼ା ସଂକଳ୍ପବଦ୍ଧ ଜୀବନ ଘୋଡ଼ାକୁ ଲକ୍ଷ୍ୟ ପଥରେ ଅବିଶ୍ରାନ୍ତ ଦଉଡ଼ାଇ ଯେଉଁ ବିପୁଳ ସାରସ୍ୱତ ସମ୍ପଦର ଅଧିକାରୀ ହୋଇଛନ୍ତି, ଯେ କୌଣସି ପରିମାଣର ଭୌତିକ ସମ୍ପଦ ତା ନିକଟରେ ତୁଚ୍ଛ । ତାଙ୍କର ଉପନ୍ୟାସ ରଚନାର ବୈଶିଷ୍ଟ୍ୟ ଓଡ଼ିଆ ସାହିତ୍ୟରେ ତାଙ୍କ ପାଇଁ ଏକ ସ୍ୱତନ୍ତ୍ର ସ୍ଥାନ ଦାବୀ କରେ । ଓଡ଼ିଆ ଉପନ୍ୟାସର ଫକୀରମୋହନ ଯୁଗ ପରେ ସବୁଜ ଯୁଗ ପ୍ରାଧାନ୍ୟ ଲଭ କରି ଥିଲା । କାଳିନ୍ଦୀଚରଣଙ୍କ ଅମର ଉପନ୍ୟାସ 'ମାଟିର ମଣିଷ' ଓ 'ସାଗରିକା' ପ୍ରଭୃତି ଏ ଯୁଗର ଖ୍ୟାତିପୂର୍ଣ୍ଣ କୃତି ରୂପେ ପରିଗଣିତ । ତତ୍ ପରବର୍ତ୍ତୀ ଯୁଗକୁ ନିର୍ଦ୍ୱନ୍ଦ୍ୱରେ କାହ୍ନୁଚରଣଙ୍କ ନାମରେ ନାମିତ କରାଯାଇ ପାରେ । କାରଣ କାହ୍ନୁଚରଣଙ୍କ କୃତିରେ ସର୍ବବିଧ ଔପନ୍ୟାସିକ ଆବେଦନ ଏକ ବାସ୍ତବ ରୂପ ନେଇଥିବା ଲକ୍ଷଣୀୟ । କାହ୍ନୁଚରଣଙ୍କ ସୃଷ୍ଟିର ପରିସର—ପରିବାର

Digitized by srujanika@gmail.com

ଓ ସମାଜ । ସେହି ପରିବେଶରୁ ଆହୃତ କେତେଗୁଡ଼ିଏ ଦୀନହୀନ, ଦୁର୍ଗତ, ନିଷ୍ପେଷିତ, ପ୍ରାଣୀଙ୍କୁ ନେଇ ସେ ଗଢ଼ିଛନ୍ତି ତାଙ୍କର କଳାକୃତି । ଦୈନନ୍ଦିନତାର ସ୍ତରରେ ସେ କୃତି ଚରମୁଖର । ଅନୁଧ୍ୟାନରୁ ଦେଖାଯିବ, କାହ୍ନୁଚରଣ ଜଣେ ଗାନ୍ଧୀ ଯୁଗାଦର୍ଶର ପ୍ରମୁଖ ପ୍ରବକ୍ତା । ଚରିତ୍ର ଚିତ୍ରଣ, ସମାଜ ସମସ୍ୟାର ଚିତ୍ରାରେ ସର୍ବତ୍ର ତାଙ୍କର ମାନବବାଦୀ ଆଦର୍ଶ ପରିସ୍ଫୁଟ । ଦୁନିଆରେ ମାନବ ଭାଗ୍ୟର ବାସ୍ତବତାକୁ ବିଶ୍ଳେଷଣ କରି କାହ୍ନୁଚରଣ ତାଙ୍କର 'ଝଞ୍ଜା' ଉପନ୍ୟାସର ପୂର୍ବକଥାରେ କହିଛନ୍ତି—"ସୁଖ ଆନନ୍ଦ କ'ଣ ଅଛି ଏ ଦୁନିଆରେ, ଯେଉଁଠିକି ମଣିଷ ଡାକିଆଣିଥିଲା, ଯେଉଁଠି ପ୍ରତି ମୁହୂର୍ତ୍ତରେ ପ୍ରତି ମଣିଷର ଅନ୍ତରେ ବାହାରେ ଛୁଟିଛି ପ୍ରବଳ ଝଡ଼ତୋଫାନ, ଜଳୁଛି ଲହଲହ ନିଆଁ, ଆଉ ସେଇ ପ୍ରଳୟ ତାଣ୍ଡବ ମଝିରେ ଝର ପଡୁଛି ଦୁଇଧାର ଲୁହ, ସୁଖ ଓ ଶାନ୍ତିର ଦୁର୍ବଳ ସୂଚନା, ଗଙ୍ଗା ଓ ଯମୁନା ମହାନଦୀ ଓ ତେଲନଦୀ ।" ଯେଉଁ ସାହିତ୍ୟରେ ମାନବିକ ଆବେଦନ ଯେତେ ଓତପ୍ରୋତ ତା'ର ସାରସ୍ୱତ ସୌନ୍ଦର୍ଯ୍ୟ ସେତେ ଚମତ୍କାର । କାହ୍ନୁଚରଣଙ୍କ ଉପନ୍ୟାସରେ ଏପରି ଆବେଦନ ଛନ୍ଦେ ଛନ୍ଦେ ପ୍ରତିଫଳିତ । ତେଣୁ ତାଙ୍କର ସ୍ଥୂଳ ବପୁ ଉପନ୍ୟାସ ଗୁଡ଼ିକ ମଧ୍ୟ ପାଠକକୁ କ୍ଳାନ୍ତ ବା ବିରକ୍ତିକର କରେ ନାହିଁ । ସେ ଗୋଟିଏ ବଳିଷ୍ଠ କଥାବସ୍ତୁକୁ ନେଇ ଆରମ୍ଭ କରନ୍ତି ତାଙ୍କର ଉପନ୍ୟାସ । ଶୈଳିକ କୌଶଳ ଦ୍ୱାରା ଔପାଦାନିକ ସଜୀକରଣରେ ଚମତ୍କାରିତା ପ୍ରଦର୍ଶନ କରିଥାନ୍ତି । କାହାଣୀ ବିଜପଥ ଗୁଡ଼ିକ ଅଙ୍କାବଙ୍କା ମାର୍ଗ ଅନୁସରଣ, ପରମ୍ପରାର ଉପେକ୍ଷା ଏବଂ ଅତ୍ୟାଧୁନିକତାର ଅବମୂଲ୍ୟ ପରୀକ୍ଷା ନିରୀକ୍ଷାର ଫଳ ସଂଘର୍ଷର ଘନଘଟା ସୃଷ୍ଟି କରୁଥିବା ଦେଖାଯାଏ । ଆଜିକାଲି ବହୁ କ୍ଷେତ୍ରରେ ବୁଦ୍ଧି ଯେଉଁଠି ହାର ମାନେ, ତାକୁ ବୌଦ୍ଧିକ ସାହିତ୍ୟର ପୁଟ ଦିଆଯାଏ । ସ୍ୱାଭିମାନଶୂନ୍ୟତା ଓ ନିଜତ୍ୱବୋଧର ଅଭାବରୁ ନିଜ ଘର, ନିଜ ଭାଷା, ନିଜ ସଂସ୍କୃତି ଭଲଲାଗୁ ନାହିଁ । କିନ୍ତୁ ଏ ସବୁ ଦିଗରେ କାହ୍ନୁଚରଣ ଏକ ବ୍ୟତିକ୍ରମ । ଅଯଥା ପରୀକ୍ଷା ନିରୀକ୍ଷା ଚଳାଇ ସେ ପାଠକକୁ ଦୂରେଇ ନଦେଇ ଅନ୍ତରଙ୍ଗ କରିବାର ଉଦ୍ୟମ ଅବ୍ୟାହତ ରଖିଛନ୍ତି । ଜାତୀୟ ଜୀବନର ଗ୍ଲାନି, ଐତିହାସିକ ଗୌରବ, ସାମାଜିକ ଅନୁଭୂତି, ସମୟର ସାନ୍ଦ୍ରସ୍ପନ୍ଦନ ତାଙ୍କର ଉପନ୍ୟାସ ସୃଷ୍ଟିରେ ସୁପ୍ରକଟିତ । ବିଶେଷଭାବେ ଓଡ଼ିଶା ମାଟିରେ, ତା'ର ପାଣି ପବନରେ ଗଢ଼ିଉଠିଛି ତାଙ୍କର କୃତିସୌଧ । ସେ ତାଙ୍କର ସୁଦୀର୍ଘ କର୍ମମୟ ଜୀବନରେ ଯେତେବେଳେ ଯେଉଁଠାରେ ରହିଛନ୍ତି, ରହିବାର ସୁଯୋଗ ନେଇଛନ୍ତି । ସେ ସ୍ଥାନର ଭୌଗୋଳିକ ସ୍ଥିତି, ଐତିହାସିକ ଗୁରୁତ୍ୱ, ଅର୍ଥନୈତିକ ଚିତ୍ର, ସାମାଜିକ ପରିବେଶ, ବ୍ୟକ୍ତିଗତ ଜୀବନ ଧାରାଠାରୁ ଆରମ୍ଭ କରି ପ୍ରଧାନ ଅପ୍ରଧାନ, ଗ୍ରେଟ ବଡ଼ ବଣ ପାହାଡ଼, ନଈ ନାଳ, ଦେବଦେବୀ, କାହାଣୀ କିମ୍ବଦନ୍ତୀ ସବୁକୁ ତାଙ୍କର ସୃଷ୍ଟିର ପରିସୀମା ଭିତରକୁ ଓଟାରି ଆଣିଛନ୍ତି । ଓଡ଼ିଶାର ପ୍ରକୃତି

Digitized by srujanika@gmail.com

ଚିତ୍ରଣରେ ରାଧାନାଥୀୟ ବା ଚିନ୍ତାମଣୀୟ କାବ୍ୟିକ କୃତିତ୍ୱ ତାଙ୍କଠାରୁ ଆଶା କରି ନ ଗଲେ ମଧ୍ୟ କଳାକାରର କଳ୍ପନାରେ ତଦୀୟ ଲେଖନୀର ବଳିଷ୍ଠତା ପ୍ରମାଣିତ । ତାଙ୍କର କୃତିତ୍ୱରେ ଓଡ଼ିଶାର ପ୍ରାକୃତିକ ବୈଭବ ସଙ୍ଗେ ଓଡ଼ିଆ ସଂସ୍କୃତି ପରମ୍ପରାର ପ୍ରାଣଚେତନା ପ୍ରତିଷ୍ଠିତ । ବିଶେଷତଃ ଲକ୍ଷ୍ୟ କରିବାର କଥା, କାହ୍ନୁ-ଚରଣଙ୍କ ଉପନ୍ୟାସ ସାହିତ୍ୟରେ ବିଶ୍ୱଜନୀନ ଭାବଧାରା ଆଞ୍ଚଳିକ ସମସ୍ୟାର ରୂପ ନେଇଛି । ସ୍ଥଳବିଶେଷରେ କେହି ତାଙ୍କର ଭାବପ୍ରବଣତାର ଆଘ୍ରାଣ କରି ପାରନ୍ତି । ପରନ୍ତୁ ଗଭୀର ପର୍ଯ୍ୟବେକ୍ଷଣରୁ ସେହି ସ୍ଥଳରେ ତାଙ୍କର ଆତ୍ମସଚେତନତାର ଉପଲବ୍ଧି ହେବ । କାହ୍ନୁଚରଣଙ୍କ ଉପନ୍ୟାସ ସୃଷ୍ଟି ସାଫଲ୍ୟର ଏକ ବିଶେଷ ଅବଦାନ ହେଉଛି ବହିର୍ଦ୍ୱନ୍ଦ୍ୱ ଓ ଅନ୍ତର୍ଦ୍ୱନ୍ଦ୍ୱର ସଫଳ ଅବତାରଣା । ନାମକରଣ ଦୃଷ୍ଟିରୁ ତାଙ୍କର ଉପନ୍ୟାସଗୁଡ଼ିକର ସାହିତ୍ୟିକ ସୌନ୍ଦର୍ଯ୍ୟ ବସ୍ତୁତଃ ସୁରକ୍ଷିତ । କାହ୍ନୁଚରଣଙ୍କ ସର୍ବବିଧ ଶିଳ୍ପସୌନ୍ଦର୍ଯ୍ୟସାର ସୃଷ୍ଟି—ହା ଅନ୍ନ. ଝଞ୍ଜା, କା, ଶାସ୍ତି, ପ୍ରଭୃତି ସାର୍ଥକ ନାମକରଣର ଗୋଟିଏ ଗୋଟିଏ ଜ୍ୱଳନ୍ତ ନିଦର୍ଶନ ।

ପୂର୍ବେ ସୂଚିତ ଦିଆଯାଇଛି, କାହ୍ନୁଚରଣଙ୍କ ସୃଷ୍ଟିରେ ସମାଜ ଓ ସାମାଜିକ ଜୀବନ ହିଁ ମୁଖ୍ୟ ଉପଜୀବ୍ୟ । ତେଣୁ ସର୍ବତ୍ର ସମାଜ ପ୍ରତି ସ୍ପଷ୍ଟ ଇଙ୍ଗିତ ରହିଛି—କେଉଁଠି ପ୍ରକାଶ୍ୟ ବା କେଉଁଠି ପ୍ରଚ୍ଛନ୍ନ । ସମାଜକୁ ତନ୍ନ ତନ୍ନ କରି ବିଶ୍ଳେଷଣ କରି-ବାରେ ସେ ଜଣେ ବିଚକ୍ଷଣ ଶିଳ୍ପୀ । ସମାଜର ପ୍ରତ୍ୟେକ ସ୍ୱଭାବ ଓ ପରିବେଶ ତାଙ୍କର ଲେଖନୀକୁ ସ୍ପର୍ଶ କରିଛି । ସମାଜର ଯେତେ ଦାଗ, ଯେତେ ଗଢ଼, ଯେତେ ସମସ୍ୟା ଯେତେ ତ୍ରୁଟି ବିଚ୍ୟୁତି କାହ୍ନୁଚରଣ ସବୁକୁ ହୃଦୟଙ୍ଗମ କରି ତା'ର ଶୈଳ୍ପିକ ରୂପାୟନ କରିବାକୁ ପ୍ରୟତ୍ନ କରିଛନ୍ତି । ପ୍ରଥମେ ତାଙ୍କ ଦୃଷ୍ଟିରେ ପଡ଼ିଛି ଦୁଇଟି ସ୍ୱତନ୍ତ୍ର ସମାଜ; ଗୋଟିଏ ହେଲା ରକ୍ଷଣଶୀଳ ସମାଜ ଏବଂ ଅନ୍ୟଟି ମଣିଷର ସମାଜ । ଉଭୟ ସମାଜ ଭିତରେ ସେ ଏକ ବିଭାଜକ ସୀମାରେଖା ପାତକରିଛନ୍ତି । ଉପସ୍ଥିତ ସମାଜର ବହୁ ବିଧି ବ୍ୟବସ୍ଥା, ଚାଲିଚଳଣି ତାଙ୍କୁ ରୁଚିକର ବୋଧ ହୋଇ ନାହିଁ । କେତେକ ଚରିତ୍ର ମାଧ୍ୟମରେ ଗର୍ହିତ ସାମାଜିକ ବ୍ୟବସ୍ଥାର ସେ ପ୍ରତିବାଦ ଓ ବିରୋଧ କରିଛନ୍ତି । କଠୋର ସାମାଜିକ ବନ୍ଧନରେ ଆବଦ୍ଧ କରି କୌଣସି ଚରିତ୍ରକୁ ଜଳିପୋଡ଼ି ତିଳ ତିଳ ଧ୍ୱଂସ ହୋଇଯିବାକୁ ସେ ଛାଡ଼ିଦେଇ ନାହାନ୍ତି । ସମାଜର ସ୍ୱାର୍ଥପ୍ରତିକୂଳ ସମସ୍ୟା ଉପରେ, ଯଥାସ୍ଥାନରେ ନିର୍ଭୀକ ଓ ନିରପେକ୍ଷ ବାସ୍ତବ ଅଭିମତ ପ୍ରକାଶ କରିବାକୁ ପଶ୍ଚାଦ୍‌ପଦ ହୋଇ ନାହାନ୍ତି । ଶତ ଆହ୍ୱାନ ସତ୍ତ୍ୱେ କ୍ଷେତ୍ରବିଶେଷରେ ସମାଜ ସହିତ ଯେ ସାଲିସ୍ କରି ନ ଯାଇଛି, ତାହା ନୁହେଁ । ସମାଜ ଭିତରେ ଶ୍ରେଣୀ ସଂଘର୍ଷ ଚିରନ୍ତନ । ତା'ର ମୌଳିକ ତତ୍ତ୍ୱ ନିରୂପଣରେ ଆତ୍ମନିୟୋଗ କରି ଆଶାନୁରୂପ ସଫଳତା ଅର୍ଜନ କରିବାକୁ

Digitized by srujanika@gmail.com

କାହ୍ନୁଚରଣ ସମର୍ଥ ହୋଇଛନ୍ତି । ମାତ୍ର ସମାଧାନର ସୂଚିତ ପନ୍ଥା ସବୁ କ୍ଷେତ୍ରରେ ସମ୍ଭବ ହୋଇ ପାରି ନାହିଁ । ତା'ର ପ୍ରକୃଷ୍ଟ ଉଦାହରଣ 'ଝଞ୍ଜା' । ସେଥିରେ ସୃଷ୍ଟି କରାଯାଇଥିବା ସମସ୍ୟାବଳୀର ସମାଧାନ କରି ନ ପାରି ଲେଖକ ବ୍ୟର୍ଥ ଚରିତ୍ରଗୁଡ଼ିଏ ସୃଷ୍ଟି କରାଯାଇଛି । ଷାରଣ୍ଟସେସ୍ ଓ ଧନୁକାଶ୍ର ଗୁଣିଆ ଛଡ଼ାଇବା କୌଶଳ ନ ଜାଣିଲେ ନିଜ ପାଇଁ ବିପଦକୁ ବରଣ କରି ଆଣେ । ଝଞ୍ଜା ସୃଷ୍ଟି କରି ତାକୁ ପ୍ରଶମନ ନ କଲେ ପ୍ରଳୟ ତାଣ୍ଡବ ଅନିବାର୍ଯ୍ୟ । ତଥାପି ସେ ନିଜେ ନୈରାଶ୍ୟ-ବାଦୀ ନୁହନ୍ତି—ଆଶାବାଦୀ । ସମାଜର ପରିସ୍ଥିତିକୁ ସୁଧାରିବାର ପନ୍ଥା ଖୋଜିବାରେ ସତତ ତତ୍ପର । ତାଙ୍କ ଦୃଷ୍ଟିରେ—"ଦୁନିଆ ବଡ଼ ଭଲ; ସବୁ ସୁଖ, ସବୁ ଆନନ୍ଦ ଏଠି ଠୁଳ ହୋଇଛି । କିଛି ଅଭାବ ନାହିଁ" (ଝଞ୍ଜା—ମୁଖବନ୍ଧ) । ଏଥିରେ ମାନବ ସମାଜ ପାଇଁ ଦରଦୀ ପ୍ରାଣର ଆଶ୍ୱାସନା ବାଣୀ ଝଙ୍କୃତ । ଆମେ ସଂସାରୀ, ଆମେ ସାମାଜିକ ପ୍ରାଣୀ; ଜନ୍ମ ହୋଇଛୁ ମଧ୍ୟ ଏହି ସଂସାର ଓ ଏହି ସମାଜ ଭିତରେ ଆମେ ରହିବା । ମାନବବାଦ, ସର୍ବଧର୍ମ-ସର୍ବବର୍ଣ୍ଣ ସମନ୍ୱୟ, ସାର୍ବଜନୀନ ସମାଜ ପ୍ରତିଷ୍ଠା କାହ୍ନୁଚରଣଙ୍କ ଲକ୍ଷ୍ୟର ଶୀର୍ଷବିନ୍ଦୁ । ଉପରନ୍ତୁ ସମାଜର ପ୍ରଚଳିତ ରୀତି ନୀତିକୁ ଏକାବେଳେ ପଦଦଳିତ ନ କରି ମାନବିକତା ଭିତ୍ତିରେ ସେ ନୂତନ ସମାଜର ଚିତ୍ରାଙ୍କନ କରିଛନ୍ତି । ଅଧୁନା ସବୁ ଦୋଷ ସମାଜ ଉପରେ ଲଦିଦେବାର ପ୍ରବୃତ୍ତି ଲେଖକଙ୍କ ଚେତନାଙ୍କଠାରେ ବଳବତ୍ତର । ବ୍ୟକ୍ତିକୁ ସମାଜ ଉପଯୋଗୀ କରାଯିବ ନା ସମାଜକୁ ବ୍ୟକ୍ତି ଉପଯୋଗୀ କରାଯିବ, ଏହା ହିଁ ଚିନ୍ତାର ବିଷୟ ! ଯଦି ଦ୍ୱିତୀୟଟିକୁ ଗ୍ରହଣ କରାଯାଏ, ଏହାର ଅନ୍ତ କେଉଁଠି ? ପ୍ରତ୍ୟେକ ବ୍ୟକ୍ତିର ଖିଆଲ ଉପରେ ସମାଜଟାକୁ ଗ୍ରାହ୍ୟ ଦିଆ ଯାଇପାରେ କିପରି ? ଯଦି ତାହା କରାଯାଏ, ସମାଜରେ, ରାଷ୍ଟ୍ରରେ, ଐତିହ୍ୟ ସଂସ୍କୃତିରେ ଚରମ ବିଭ୍ରାଟ ଘଟିଯିବ । କାହ୍ନୁଚରଣ ପରମ୍ପରାର ଗଣ୍ଡୀ ଭିତରେ ଯେଉଁ ନୂଆ ସମାଜ ଗଢ଼ିଛନ୍ତି, ବ୍ୟକ୍ତି ଚରିତ୍ରକୁ ଗଢ଼ିଛନ୍ତି ତା'ର ଉପଯୋଗୀ କରି । ଫଳତଃ ପ୍ରାଚ୍ୟ ପ୍ରତୀଚ୍ୟର ଭବି ଉଠିଛି ତାଙ୍କର ଔପନ୍ୟାସିକ ସମାଜ ।

ଉପନ୍ୟାସର ଅନ୍ୟତମ ମୁଖ୍ୟ ଅଙ୍ଗ ଚରିତ୍ର । ଚରିତ୍ରସୃଷ୍ଟି ତାତ୍ପର୍ଯ୍ୟପୂର୍ଣ୍ଣ ନ ହେଲେ, କଥାବସ୍ତୁର ବିକାଶ ମହତ୍ତ୍ୱପୂର୍ଣ୍ଣ ହୋଇ ନ ପାରେ । ଅମର ଚହଟରୀ ସେଇଁ ମଣିଷ ସମାଜ ଭିତରୁ କାହ୍ନୁବାବୁ ବାଛି ନେଇଛନ୍ତି ତାଙ୍କର ମନୋମତ ପାତ୍ର ପାତ୍ରୀ । ସେ ଖୋଜିନାହାନ୍ତି ସେମାନଙ୍କର ପୌରାଣିକ ସ୍ଥିତି, ଐତିହାସିକ ଖ୍ୟାତି ବା ସାମାଜିକ ପ୍ରତିପତ୍ତି । ଚରିତ୍ରଗୁଡ଼ିକ ଆମର ଭିଟାମାଟି ପାଣିପବନରେ ଚଳପ୍ରଚଳ, ଆମରି ସମାଜର ଶତ ସହସ୍ର ରମା, ଦାମା, ଶମା, ମୋତି, ମାଣିକଙ୍କ ଭଳି ଜଣେ ଜଣେ ନିତ୍ୟ ପରିଚିତ ବ୍ୟକ୍ତିବିଶେଷ । କଳାଶିଳ୍ପୀ କାହ୍ନୁ-ଚରଣ କଳ୍ପନା ତୂଳିରେ ସେମାନଙ୍କର ଏପରି ମନୋଜ୍ଞ ଚିତ୍ରଣ କରି ଦେଇଛନ୍ତି,

Digitized by srujanika@gmail.com

ପ୍ରତ୍ୟେକ ନିଜ ନିଜ ଭୂମିକାରେ ଜଣେ ଜଣେ ପ୍ରତିନିଧି ସ୍ଥାନୀୟ । ସେମାନେ ଆତ୍ମପ୍ରକାଶ କରିଛନ୍ତି ନିଜ ନିଜ ଭୂମିକା ମାଧ୍ୟମରେ । ସେମାନଙ୍କୁ ଚିହ୍ନାଇବା ପାଇଁ ଆବୃତ୍ତିଙ୍କୁ ନିଜ ଅଡ଼ୁ ବିଶେଷ ବାଙ୍ଗ୍ମୟ ଆସ୍ୱାଦ କରିବାକୁ ପଡ଼ିନାହିଁ । ମାତ୍ର ଚମତ୍କାର କଳା କୌଶଳ ଅବଲମ୍ବନରେ ଚରିତ୍ରର ସ୍ୱଭାବିକ ବିଶେଷତ୍ୱକୁ ଭିନ୍ନଭିନ୍ନ କରି ଦେଖାଇ ଦେଇଛନ୍ତି । ଫଳତଃ କଳ୍ପନା ପ୍ରସୂତ ଚରିତ୍ର ଗୁଡ଼ିକର ବାସ୍ତବ ରୂପ ପ୍ରକାଶ ପାଇଛି । ମଣିଷ ସମାଜରେ ବିଭିନ୍ନ ସ୍ତରର ନରନାରୀଙ୍କ ଚରିତ୍ର ଅଧ୍ୟୟନ ଅନୁଶୀଳନ ପାଇଁ ଆବଶ୍ୟକ ଅନ୍ତର୍ଦୃଷ୍ଟି ନଥିଲେ ସଫଳ ଚରିତ୍ର ଚିତ୍ରଣରେ ସାର୍ଥକତା ଲାଭ କରିବା ଅସମ୍ଭବ । କାହ୍ନୁବାବୁଙ୍କ ସୃଷ୍ଟିରେ ସେପରି ଅନ୍ତର୍ଦୃଷ୍ଟି ଲକ୍ଷଣୀୟ । ତେଣୁ ସେ ବହୁ ସାର୍ଥକ ଚରିତ୍ରର ସ୍ରଷ୍ଟା । ସନିଆ; ଧୋବା, ଚନ୍ଦ୍ରେଇ, ଜଟେଇ, (ଶାସ୍ତି) ଦୁଷ୍ମନ୍ତ, ତୁଷାରକାନ୍ତ, ହେମାଙ୍ଗିନୀ, କ୍ଷଣପ୍ରଭା, (ଝଞ୍ଜା) ସୁବ୍ରତ ସୁରତ, ଅଦ୍ଭୁତ, ଫୁଲଦାନୀ, (ବଜ୍ରବାହୁ) ସମେତ ବିଭିନ୍ନ ଉପନ୍ୟାସରେ ମୁଖ୍ୟ ଗୌଣ ବହୁ ଚରିତ୍ର ଓଡ଼ିଆ ଅନ୍ତରାତ୍ମାର ଅଭିବ୍ୟକ୍ତ ରୂପ । ଚରିତ୍ର ସୃଷ୍ଟି ଦିଗରେ କାହ୍ନୁଚରଣଙ୍କର ଆନ୍ତରିକତା ସର୍ବାଦୌ ଅଭିନନ୍ଦନୀୟ । ଚରିତ୍ର ମାନଙ୍କ ପ୍ରତି ସେ ସମ୍ବେଦନଶୀଳ । ବେଳେବେଳେ ଅତି ସାଧାରଣ ଚରିତ୍ର ମଧ୍ୟରେ ସେ ଅସାଧାରଣ ବ୍ୟକ୍ତିତ୍ୱ ଫୁଟାଇଛନ୍ତି । ଅତି ଗୌଣ ଚରିତ୍ରମାନେ ମଧ୍ୟ ତାଙ୍କ ଲେଖନୀରେ ହେୟ ବା ଅବହେଳିତ ନାହାନ୍ତି । ବିଷୟବସ୍ତୁର ବିକାଶଧାରାରେ ପ୍ରତ୍ୟେକଙ୍କର ନିର୍ଦ୍ଦିଷ୍ଟ ଅବଦାନ ସ୍ୱୀକାର୍ଯ୍ୟ । ଚରିତ୍ରର ସ୍ୱାତନ୍ତ୍ର୍ୟ ରକ୍ଷା ଦିଗରେ ସର୍ବଦା ସେ ସଜାଗ । ଚରିତ୍ର ମାନଙ୍କର ମନସ୍ତାତ୍ତ୍ୱିକ ବିଶ୍ଳେଷଣରେ କାହ୍ନୁଚରଣଙ୍କ ସିଦ୍ଧହସ୍ତତା ସର୍ବସ୍ୱୀକୃତ । ଗଭୀର ମନସ୍ତାତ୍ତ୍ୱିକ ପରିଧି ଭିତରେ ଚରିତ୍ରବିଶେଷଙ୍କର ଭୂମିକାକୁ ସାର୍ଥକ ରୂପ ଦେବାର ଶିଳ୍ପ ନୈପୁଣ୍ୟ କାହ୍ନୁଚରଣଙ୍କର ନିଜସ୍ୱ । ଉପନ୍ୟାସରେ ମନୋବୈଜ୍ଞାନିକ ତତ୍ତ୍ୱର ତାତ୍ପର୍ଯ୍ୟ ହେଲା ବ୍ୟକ୍ତି ଚରିତ୍ରମାନଙ୍କର ମନୋରାଜ୍ୟରେ ଅବ୍ୟକ୍ତ ଭାବର ବିଦ୍ୟମାନତାକୁ ସାଙ୍କେତିକ ସୂଚନାଦ୍ୱାରା ପରିସ୍ଫୁଟ କରାଇଦେବା । ଏ କ୍ଷେତ୍ରରେ ବାସ୍ତବତଃ ସେ ଜଣେ ଅପ୍ରତିଦ୍ୱନ୍ଦ୍ୱୀ କୃତି ଶିଳ୍ପୀ । ଅବଶେଷରେ କୁହାଯାଇପାରେ, କାହ୍ନୁଚରଣଙ୍କ ଉପନ୍ୟାସ ସୃଷ୍ଟି ଯେପରି ଗଳ୍ପପ୍ରଧାନ ସେହିପରି ଚରିତ୍ର ପ୍ରଧାନ ।

ଭାଷା ଓ ଶୈଳୀ ବିଚାରରେ କାହ୍ନୁଚରଣଙ୍କର କୃତିତ୍ୱ ଅବଧାରଣୀୟ । ଅନୁଭୂତି ହିଁ ଉପନ୍ୟାସର ଭିତ୍ତି । ଆତ୍ମୋପଲବ୍ଧ ଅନୁଭୂତିର ପୁଷ୍କଳ ପ୍ରକାଶ ଉପନ୍ୟାସକୁ ସରସ ସୁନ୍ଦର କରି ଗଢ଼େ । ଅନୁଭୂତି ବିନା କୌଣସି କଳାସୃଷ୍ଟିର ସୌଷ୍ଠବ ସମ୍ପାଦନ କରାଯାଇ ନପାରେ । କାହ୍ନୁବାବୁଙ୍କର ଜୀବନୀ ପର୍ଯ୍ୟାଲୋଚନା କଲେ, ତାଙ୍କର ଏକ ବିରାଟ ଅନୁଭୂତିସମ୍ପନ୍ନ ବ୍ୟକ୍ତିତ୍ୱ ଉଦ୍‌ଘାଟିତ ହେବ । ବ୍ୟକ୍ତିଗତ

Digitized by srujanika@gmail.com

ଉତ୍ସବ ଏବଂ ବିଭିନ୍ନ ସରକାରୀ ପଦପଦବୀରେ କାର୍ଯ୍ୟୋପଲକ୍ଷେ ଉତ୍କଳର ଦୀର୍ଘ ପ୍ରସ୍ଥ ପରିଭ୍ରମଣ କରିବାର ସୁବର୍ଣ୍ଣସୁଯୋଗ ତାଙ୍କ ଜୀବନରେ ଘଟିଛି । ବହୁ ଲୋକଙ୍କର ଭାଷା, ଭାବ, ଚାଲିଚଳନ ସହିତ ସେ ପରିଚିତ । ତଦୀୟ ସୃଜନଶୀଳ ସନ୍ଧାନୀ ଦୃଷ୍ଟି ସବୁ କ୍ଷେତ୍ରରୁ ସୃଷ୍ଟିସାର ଉପାଦାନମାନ ଆହରଣ କରିଛି । ଏହାଦ୍ୱାରା ତାଙ୍କର ସୂକ୍ଷ୍ମଦୃଷ୍ଟି ଓ ଆହରଣପଟୁତା ପ୍ରମାଣିତ । କାହ୍ନୁଚରଣଙ୍କର ବ୍ୟକ୍ତିତ୍ୱ ଯେପରି ବଳିଷ୍ଠ ଅନୁଭୂତି ସେହିପରି ଶାଣିତ । ଏହି ଦୁଇଟି ସୃଷ୍ଟିସହାୟକ ଉପାଦାନର ଯଥାର୍ଥ ଉପଯୋଗ କରି ସେ ଗଢି ତୋଳିଛନ୍ତି ତାଙ୍କର ମନୋଜ୍ଞ ସାହିତ୍ୟ ସୌଧ । ବ୍ୟକ୍ତିତ୍ୱର ଅଭିବ୍ୟକ୍ତି ଓ ଅନୁଭୂତିର ରୂପାୟନ ଉଣା ଅଧିକେ ତାଙ୍କର ପ୍ରତ୍ୟେକ ଉପନ୍ୟାସରେ ଉପଲବ୍ଧ ।

ସାର୍ଥକ ସ୍ରଷ୍ଟାର ଗୌରବ ଲାଭ ପାଇଁ ନିଜର ଅନୁଭୂତି ସହିତ ପାଠକଙ୍କୁ ସମନ୍ୱିତ କରାଇବା ଏକ ଅପରିହାର୍ଯ୍ୟ ଆବଶ୍ୟକତା । ସେଥିପାଇଁ ପ୍ରତିଭାବାନ କଥାକାର ତା'ର ନିଜସ୍ୱ ଭାଷା ଓ ଶୈଳୀ ବାଛି ନିଏ । ପ୍ରଥମତଃ ଉପନ୍ୟାସ ଏକ ଗଣସାହିତ୍ୟ; ତା'ର ଉପାଦାନ ମଣିଷ; ମଣିଷର ସୁଖଦୁଃଖକୁ ଜୀବନ୍ତ ତଥା ଆକର୍ଷଣୀୟ ରୂପ ଦେବାରେ ଉପନ୍ୟାସର ସାର୍ଥକତା । ସେହି ଉପନ୍ୟାସ ହୁଏ ମଣିଷ ପାଇଁ ଏକ ବିଳାସର ସାମଗ୍ରୀ । ଦୁଃଖ ଜଞ୍ଜାଳମୟ ଜୀବନକୁ ସୁଖଶାନ୍ତି ଦେବାପାଇଁ ଏହା ଉଦ୍ଦିଷ୍ଟ, ତେଣୁ ସୁପାଠ୍ୟ ସୁବୋଧ ହେବା ସର୍ବାଦୌ ବାଞ୍ଛନୀୟ । ଅନ୍ୟଥା କ୍ଲିଷ୍ଟତା ଦୋଷଦୁଷ୍ଟ ହୋଇପଡ଼ିଲେ, ଔପନ୍ୟାସିକ କଳାର ମୌଳିକ ଲକ୍ଷ୍ୟ ଭ୍ରଷ୍ଟ ହୁଏ । ସୁତରାଂ ଉପନ୍ୟାସ ସାହିତ୍ୟର ଅନ୍ୟତମ ମୁଖ୍ୟାଙ୍ଗ ଭାଷା ସରଳ, ତରଳ, ସାବଲୀଳ ଓ ଶ୍ରୁତିମଧୁର ହେବା ଦରକାର । ଅଧୁନାତନ ସାହିତ୍ୟରେ ଅବୋଧତା ସୃଷ୍ଟି କରି ତାକୁ ଉଚ୍ଚାଙ୍ଗ କଳା ରୂପେ ପ୍ରତିଷ୍ଠିତ କରାଇବାର, କେବଳ ଭାବ-ପ୍ରବଣତା ନୁହେଁ, ପାଗଳାମୀ ଦେଖା ଦେଇଛି । ସାହିତ୍ୟର ସଙ୍କଟ ନିରୂପଣ କରିବାକୁ ଯାଇ ଅଧ୍ୟାପକ ଗଦାଧର ମିଶ୍ର ଟିପ୍ପଣୀ କରିଛନ୍ତି—" ସାଧାରଣ ମଣିଷ ଯାହାକୁ ବୁଝି ନ ପାରିଲା, ସାଧାରଣ ମଣିଷ ନିକଟରେ ଯାହା କ୍ଲିଷ୍ଟ, ଅବୋଧ ଓ ଅଗମ୍ୟ ହେଲା, ତାହା ସାର୍ବଜନୀନତା ଓ ଲୋକପ୍ରିୟତାର ମାପକାଠିରେ ଅତ୍ୟନ୍ତ ତୁଚ୍ଛ ଓ ହେୟ । ତାହାକୁ ସାହିତ୍ୟ ନ କହି ଅସାହିତ୍ୟ କହିବା ବରଂ ଅଧିକ ଯୁକ୍ତିଯୁକ୍ତ" (ସାହିତ୍ୟର ସଙ୍କଟ) । କାହ୍ନୁବାବୁଙ୍କ କ୍ଷେତ୍ରରେ ଭାଷାଗତ କ୍ଲିଷ୍ଟତା ପ୍ରଶ୍ନାତୀତ । ସମ୍ପ୍ରତି ପରୀକ୍ଷାମୂଳକ ଭାବେ ଭିନ୍ନସ୍ୱାଦର ଅଦ୍ଭୁତ ସୃଷ୍ଟିମାନ ଯେପରି ପ୍ରକାଶ ପାଉଛି, କାହ୍ନୁଚରଣ ସେପରି ଉଦ୍ୟମରୁ ବିରତ । ପୂର୍ବସୂରୀ ପରମ୍ପରା ସହ ସମ୍ପୂର୍ଣ୍ଣ ତାଳ ପକାଇ, ପାଦ ମିଳାଇ ଗତି କରିନଥିଲେ ମଧ୍ୟ ପୂର୍ବପ୍ରତିଷ୍ଠିତ ଶୈଳ୍ପିକ କଳା ବୈଭବର ପ୍ରଭାବକୁ ଏକାବେଳେ ଅବଜ୍ଞା କରି ଦେଇନାହାନ୍ତି ।

Digitized by srujanika@gmail.com

କାହ୍ନୁଚରଣଙ୍କ ସୃଷ୍ଟି ଉପକ୍ରମ ପ୍ରଥମ ପର୍ଯ୍ୟାୟରେ ତତ୍କାଳୀନ ଓଡ଼ିଆ ସାହିତ୍ୟରେ ଫକୀରମୋହନଙ୍କର ଉପନ୍ୟାସ ତାଙ୍କ ଉପରେ ହୁଏତ କିଛି ପ୍ରଭାବ ପକାଇପାରିଥାଏ । ମାତ୍ର ଭାଷା ଶୈଳୀ ଅବଲମ୍ବନରେ ସେ କାହାରି ଠାରେ ଋଣୀ ନୁହନ୍ତି । କେହି କେହି ସମାଲୋଚକ ତାଙ୍କର ପ୍ରବନ୍ଧସୁଲଭ ବର୍ଣ୍ଣନା ଶୈଳୀ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିଥାନ୍ତି । କିନ୍ତୁ ତାହା ଅସାର ଓ ଅଯୌକ୍ତିକ ମନେ ହୁଏ । ସାଧାରଣତଃ ପ୍ରତ୍ୟେକ ଲେଖକ ଜଣେ ବହୁଦର୍ଶୀ । ତା'ର ମାନସ ପଟରେ ବହୁଚିନ୍ତା ଚେତନ ର ରେଖାପାତ ହୋଇଥାଏ; ପରିପ୍ରକାଶ ପାଇଁ ଅବସର ପ୍ରତୀକ୍ଷାରେ ଥାଏ; ସୁଯୋଗ ଘଟିଲେ ସ୍ୱାଭାବିକ ଭାବେ ପ୍ରକାଶ ପାଇଯାଏ । ଗତିଶୀଳତା କେତେକାଂଶରେ ବ୍ୟାହତ ହେଲେ ହେଁ ବିଭିନ୍ନ ରୁଚିର ପାଠକଙ୍କ ଅଭିରୁଚି ଚରିତାର୍ଥ ପାଇଁ ବର୍ଣ୍ଣନା-ବିଳାସ ଔପନ୍ୟାସିକ ପକ୍ଷରେ ଅନିବାର୍ଯ୍ୟ ହୋଇପଡ଼େ । କାହ୍ନୁଚରଣ ଏ ଦିଗରେ କିନ୍ତୁ ବଡ଼ ସଯତ୍ନ । ତାଙ୍କର ବର୍ଣ୍ଣନା ଶୈଳୀ କ୍ଳାନ୍ତିକର ନୁହେଁ, ରୁଚିକର, ମାର୍ଜିତ ଓ ହୃଦୟଗ୍ରାହୀ । ବର୍ଣ୍ଣନାକୁ ଖାପଛଡ଼ା କରି ପାଠକଙ୍କ ପାଖଛଡ଼ା ନ କରିବା ପାଇଁ ସେ ସତତ ସଚେଷ୍ଟ ଓ ସତର୍କ । ଚରିତ ବର୍ଣ୍ଣନାରେ କାବ୍ୟିକତା ଏବଂ ଚରିତ୍ର ଉପସ୍ଥାପନାରେ ନାଟକୀୟତା କାହ୍ନୁଚରଣ ସୃଷ୍ଟିରେ ଏକ ଚମତ୍କାର ଶୈଳିକ ସଂଯୋଜନା । ରସସୃଷ୍ଟି ପାଇଁ ତାଙ୍କୁ କସରତ କରିବାକୁ ପଡ଼ିନାହିଁ । ତାହା ଉଚ୍ଛଳ ଭାବଗର୍ଭରୁ ସ୍ୱତଃ ପ୍ରଧାବିତ ହୋଇଛି । ମୋଟ ଉପରେ କାହ୍ନୁଚରଣଙ୍କ ସୃଷ୍ଟିର ଶୈଳୀ ସ୍ୱାତନ୍ତ୍ର୍ୟ ପ୍ରଶଂସ୍ୟ ଓ ଉପଭୋଗ୍ୟ । ହା ଅନ୍ନ, ଶାସ୍ତି, ଝଞ୍ଜା, କା ଭୃତି ଉପନ୍ୟାସରେ ଭାଷା ଓ ଶୈଳୀ ଚାତୁର୍ଯ୍ୟ ତାଙ୍କର ନିଜସ୍ୱ ।

କାହ୍ନୁଚରଣଙ୍କ ସୃଷ୍ଟି ସମୂହରେ କେତେକ ତ୍ରୁଟି ବିଚ୍ୟୁତି ସମାଲୋଚନାର ଶରବ୍ୟ ହୋଇଥିବା ଲକ୍ଷ୍ୟ କରାଯାଏ । ଏ କିଛି ନୂଆ କଥା ନୁହେଁ । ଯେଉଁଠି ସୃଷ୍ଟି ସେଇଠି ତ୍ରୁଟି । ପୂର୍ଣ୍ଣ ତ୍ରୁଟିହୀନ ସୃଷ୍ଟି କଳ୍ପନାତୀତ । କାଳିଦାସୀୟ ଯୁକ୍ତି ଓ ଉକ୍ତିରେ—'ଏକୋହି ଦୋଷୋ ଗୁଣସନ୍ନିପାତେ, ନିମଜ୍ଜତୀନ୍ଦୋଃକିରଣେଷ୍ୱିବାଙ୍କଃ' । ଏହି ନ୍ୟାୟରେ ବିରାଟ ସୃଷ୍ଟି ମଧ୍ୟରେ ଇତସ୍ତତଃ ପରିଲକ୍ଷିତ ସାମାନ୍ୟ ତ୍ରୁଟି ବିଚ୍ୟୁତି ଉପେକ୍ଷଣୀୟ ।

କାହ୍ନୁଚରଣଙ୍କ ସାମଗ୍ରୀକ ସୃଷ୍ଟି ସୌନ୍ଦର୍ଯ୍ୟର ଯତ୍‌କିଞ୍ଚିତ ଗୁଣାବଧାରଣ କଲା ପରେ ମନୋବିକ ଆବେଦନଭରା, ସମସ୍ୟାସଙ୍କୁଳ, ସମାଜକେନ୍ଦ୍ରିକ ତାଙ୍କର ଅନ୍ୟତମ ସଫଳ କୃତି 'ବଜ୍ରବାହୁ' ଉପରେ କ୍ଷୀଣ ଆଲୋକପାତ କରାଯାଉ । ଏହି ଲୋକପ୍ରିୟ ଉପନ୍ୟାସଟିର ପ୍ରକାଶ କାଳ ୧୯୫୧; ଏକ ପୋଖତ ହାତର ଲେଖା; ଏହାର ଏକାଧିକ ସଂସ୍କରଣ ହୋଇ ସାରିଛି । ଏହି ଉପନ୍ୟାସର ଗଳ୍ପାଂଶଟି ସ୍ୱାଧୀନତା ପ୍ରାପ୍ତିର ଉତ୍ତର କାଳରେ ଗଡ଼ଜାତ ମିଶ୍ରଣ,

Digitized by srujanika@gmail.com

ଜମିଦାରୀ ଉଚ୍ଛେଦ, ରାଜନୈତିକ ଓ ସାମାଜିକ ପରିବର୍ତ୍ତନର ଘଟଣାବଳୀକୁ ଭିତ୍ତି କରି ଗଢି ଉଠିଛି । ଜାତୀୟ ପ୍ରଗତିର ସ୍ୱପ୍ନ ହିଁ ଏହାର ପ୍ରାଣକେନ୍ଦ୍ର । ସମାଜବାଦ, ସାମ୍ୟବାଦ, ସଂସ୍କାରବାଦ ଓ ସର୍ବୋପରି ମାନବବାଦର ଉଦାତ୍ତ ଆହ୍ୱାନ ଏହାର ନିନାଦ । 'ସମାଜର ରୂପ ବଦଳିବା ଦରକାର'— ଏ ଧ୍ୱନି ପ୍ରତିଧ୍ୱନି ତୋଳିଛି କାହ୍ନୁଚରଣଙ୍କର ସୃଜନଶୀଳ ମାନସରେ । ଏଥିରେ ସମସ୍ୟାରୂପେ ଦେଖାଦେଇଛି ପରିବର୍ତ୍ତନବିରୋଧୀ, ପରମ୍ପରାବାଦୀ ଅଭିଜାତ ସମ୍ପ୍ରଦାୟର ଅନମନୀୟ ମନୋଭାବର ପ୍ରଚଣ୍ଡ ପ୍ରତିକ୍ରିୟା ଏବଂ ଅନ୍ୟ ପକ୍ଷରେ ତା'ର ସମାଧାନ ପାଇଁ ଗଠନମୂଳକ ପ୍ରକ୍ରିୟା ମାଧ୍ୟମରେ ପ୍ରଗତିବାଦୀ ଶକ୍ତିର ପ୍ରାଣମୂର୍ଚ୍ଛା ଅହିଂସ ଆନ୍ଦୋଳନ । ଚିର ନିଷ୍ପେଷିତ, ଦଳିତ, ଶୋଷିତ, ସଦ୍ୟଶୃଙ୍ଖଳମୁକ୍ତ ସ୍ୱାଧୀନ ଦେଶର ନାଗରିକ ଅର୍ଥନୈତିକ ସମୃଦ୍ଧି ସାଧନ ଓ ଜାତିଗଠନର ସୁନେଲି ସ୍ୱପ୍ନରେ ବିଭୋର ହୋଇ ଉଠିଛି । ନିଜେ ଔପନ୍ୟାସିକ ତାଙ୍କର ଉତ୍ସର୍ଗ ପତ୍ରରେ ଲକ୍ଷ୍ୟ ଘୋଷଣା କରି କହିଛନ୍ତି—"ସମସ୍ତେ ସୁଖ ଆନନ୍ଦରେ ସଂସାର କରନ୍ତୁ, ପରସ୍ପରକୁ ସ୍ନେହପାଶରେ ବାନ୍ଧି ରଖନ୍ତୁ ।" ଏ ସେହି ବିସ୍ମୃତ ଅତୀତର ଅବିସ୍ମୃତ ଅମର ବାଣୀ—"ସର୍ବେ ଭବନ୍ତୁ ସୁଖିନୋ" ବା "ସହନାବବତୁ ସହନୌଭୁନକ୍ତୁ ସହବୀର୍ଯ୍ୟଂ କରବାବହୈ" —ର ପ୍ରତିଧ୍ୱନି । ଏହି ସ୍ୱପ୍ନକୁ ବାସ୍ତବ ରୂପ ଦେଇଛି 'ବଜ୍ରବାହୁ'—ସମସ୍ତର ପ୍ରାଣସ୍ପନ୍ଦନର ଏକ ଚମତ୍କାର ଆଲେଖ୍ୟ; ଯୋଜନାବଦ୍ଧ ଭାବରେ ସମାଜକୁ କିପରି ପରିବର୍ତ୍ତିତ ରୂପ ଦିଆଯିବ ତା'ର ଏକ ଇସ୍ତାହାର; ସମ୍ବେଦନଶୀଳ ଔପନ୍ୟାସିକଙ୍କ ଦେଶପ୍ରୀତି ଓ ମାନବପ୍ରୀତିର ଏବଂ ସଂସ୍କାରବାଦୀ ପ୍ରୟାସର ପ୍ରମାଣ ପତ୍ର ।

ରଣଗଡ଼ ଜମିଦାର ଅଭିନବ ରଣସିଂହଙ୍କ ପରିବାର ଉପନ୍ୟାସର ମୁଖ୍ୟ ଭୂମିକାରେ ଅବତୀର୍ଣ୍ଣ । ଦିନ ଥିଲା, ଯେତେବେଳେ ରାଜା, ଜମିଦାର, ଧନୀକ ଶ୍ରେଣୀ ଘାସଗଛଟିଏ ନ ଉପାଡ଼ି, ଖଣ୍ଡା ବନ୍ଧୁକ, ପଞ୍ଝା ସନନ୍ଦ ବଳରେ ନାଲି ଆଖି ଦେଖାଇ ନିରୀହ ଦରିଦ୍ର ଜନତାର ପରିଶ୍ରମର ଫଳକୁ ଫାଉ ମାରୁଥିଲେ । ସେଇମାନେ ଆଜି ଦୀର୍ଘଶ୍ୱାସ ଛାଡ଼ି ଦୁନିଆକୁ ଅଭିଶାପ ଦେଉଛନ୍ତି । ପରିବର୍ତ୍ତନର ପ୍ରଖର ପ୍ରବାହ ଛୁଟିଲା ପରେ ଅଭିଜାତ ଜମିଦାର ରଣସିଂହଙ୍କର ମନସ୍ତାତ୍ତ୍ୱିକ ପ୍ରତିକ୍ରିୟା ଉଗ୍ରରୂପ ଧାରଣ କରିଛି । ସେ ଆଜି ହାସ୍ୟାସ୍ପଦ ଓ ଅଳୁବ; କେହି ପଚାରୁ ନାହାନ୍ତି, ଦୂର୍ ଦୂର୍ କରୁଛନ୍ତି; ମୁହଁ ପୋତି ବାଟ ଆଡ଼େଇ ଯାଉଛନ୍ତି । "ଘରେ ମୁଖରା ପତ୍ନୀ, ଅବାଧ୍ୟ ପୁତ୍ରଦ୍ୱୟ, ବାହାରେ ଅପମାନ, ଭିତରେ ଚୂର୍ଣ୍ଣୀଭୂତ ଗର୍ବର ଦୁଃଖ,"— ଏହିପରି ମାନସିକ ଜ୍ୱାଳାରେ ଦଗ୍ଧୀଭୂତ ହେଉଥାନ୍ତି ମଣିହରା ଫଣୀ ରଣସିଂହେ । କୁଳଦେବତା ଗୋପୀକୃଷ୍ଣଙ୍କ ପାଖରେ ସାଜିଛନ୍ତି ମାଳାତିଳକଧାରୀ ଚରଣ୍ଡ ବୈଷ୍ଣବ । ମୁଛ କଟିଛି, କିନ୍ତୁ ଛୁଟି ନାହିଁ କୁଳାଭିମାନର ମୋହ; ସଖୀ ସୁରାର ଉତ୍କଟ ନିଶା ।

Digitized by srujanika@gmail.com

କାଳର ପରିବର୍ତ୍ତନକୁ ମୁଣ୍ଡପାତି ଗ୍ରହଣ କରି ନେବାକୁ ସେ ନାରାଜ । କନିଷ୍ଠ ପୁତ୍ର ସୁରଜିତ ରଣରଙ୍ଗା ସ୍ୱଳ୍ପବୟସ, ଆଭିଜାତ୍ୟର ଅହମିକାରୁ ମୁକ୍ତ, ପ୍ରଗତିବାଦୀ; ତା ପାଇଁ ରାଜପ୍ରାସାଦର ଭୋଗ ବିଳାସଠାରୁ ଶ୍ରମଜୀବୀର ଜୀବନ ମହତ୍ତର; ପରିଶ୍ରମ ହିଁ ଜୀବନର ଅମୃତଧାରା । ଉପସ୍ଥିତ ସମାଜରେ ସେ ଦେଖିଛି ସବଳ ପାଇଁ ସୁଯୋଗ ଓ ଦୁର୍ବଳ ପାଇଁ ଲାଞ୍ଛନା । ଏପରି ବ୍ୟବସ୍ଥା ବିରୁଦ୍ଧରେ ରଣରଙ୍ଗା ହୋଇଛି ରଣୋନ୍ମୁଖୀ । ଶ୍ରମଶକ୍ତିକୁ ମୂଳ କରି ସେ ଗଢ଼ିବ ତା'ର କଳ୍ପନାର ନୂଆ ଦୁନିଆ । ଶ୍ରମଦାନ ଯଜ୍ଞର ସୂତ୍ରପାତ କରି ସେ ଗଢ଼ିଛି 'ଧର୍ମ ବେଠିଆ' ସଙ୍ଘ । ଜାତି ଧର୍ମ, ସ୍ତ୍ରୀ ପୁରୁଷ, ବାଳକ ବାଳିକା, ଶିକ୍ଷିତ ଅଶିକ୍ଷିତ ନିର୍ବିଶେଷରେ ସବୁ ଶ୍ରେଣୀର ଲୋକ ସଙ୍ଘର ସଭ୍ୟ ଶ୍ରେଣୀଭୁକ୍ତ ହୋଇଛନ୍ତି । ବଡ଼ ମୂଳିଆ ସାଜିଛି ରାଜପୁତ୍ର ସୁରଜିତ; ମୁଖ୍ୟ ସହଯୋଗୀ ରାଜପୁରୋହିତ ବଂଶର କୁଳାଙ୍ଗାର ଧର୍ମାନନ୍ଦ । ନୂଆଯୁଗ ପୁରୋହିତଙ୍କର —"ଶରୀରଂ ବା ପାତୟେତ୍, କର୍ମଂ ବା ସାଧୟେତ୍"— ନୂଆ ମନ୍ତ୍ରରେ ସମସ୍ତେ ଦୀକ୍ଷିତ । ଧର୍ମାନନ୍ଦଙ୍କ ପତ୍ନୀ ଆଉ ଆଜି ଘରକୋଣର ଅସୂର୍ଯ୍ୟମ୍ପଶ୍ୟା କୁଳବଧୂ ହୋଇ ନାହିଁ, ନାରୀ ସଙ୍ଗଠନର ନେତ୍ରୀ, ନାରୀ ପ୍ରଗତିର ପ୍ରେରଣା-ଦାୟିନୀ । ପରିବର୍ତ୍ତନର ପଦକ୍ଷେପ ଦ୍ରୁତ ଓ ଅଭୂତପୂର୍ବ । ବଦଳି ଯାଇଛି ଗ୍ରାମର ରୂପ; ଗ୍ରାମ୍ୟ ଜୀବନର ଚିତ୍ର । ଜମିଦାରଙ୍କ ଜ୍ୟେଷ୍ଠ ପୁତ୍ର ସୁବ୍ରତ ବଜ୍ରବାହୁ; ଏମ୍. ଏ. ଉପାଧିଧାରୀ ଉଚ୍ଚଶିକ୍ଷିତ; ନୌକରୀବିମୁଖ । କନିଷ୍ଠ ସୁରଜିତର କୃତିତ୍ୱରେ ଅଭିଭୂତ ହୋଇଛି; ଶତମୁଖରେ ପ୍ରଶଂସା କରିଛି; ଶ୍ରମଦାନ ମହାଯଜ୍ଞରେ ଝାସ ଦେବାକୁ ଉଦ୍ୟତ, କିନ୍ତୁ ପାରି ନାହିଁ । ଆପାତତଃ ଉଚ୍ଚଶିକ୍ଷାର ଅଭିମାନ, ବଂଶ ଆଭିଜାତ୍ୟର ଅନ୍ତର୍ଦ୍ୱନ୍ଦୀ ଅଭିମୁଖ୍ୟ, ବୈପ୍ଳବିକ ପ୍ରଗତିଧାରାରୁ ତାକୁ ଦୂରେଇ ରଖିଛି । କିଞ୍ଚିତ୍ ବିଳମ୍ବରେ ହେଲେ ହେଁ ପିତାଙ୍କର ରକ୍ଷଣଶୀଳତା ଓ ଉଗ୍ର ଆଭିଜାତ୍ୟ ବିରୁଦ୍ଧରେ ନୀରବ ଅଥଚ ତୀବ୍ର ସ୍ୱର ଉତ୍ତୋଳନ କରିଛି । କ୍ଷୁଦ୍ର ରଣଗଡ଼ ରାଜ୍ୟ ଓ ହିଜସିଂହାସନକୁ ଉପେକ୍ଷା କରି ସେ ନିଜର ରାଜ୍ୟ ଦେଖିଛି ନିଜ ଭିତରେ । ଜନତାର ସେବା ହିଁ ତା'ର ସୀମାହୀନ ରାଜ୍ୟ । ଘର ଛାଡ଼ି ଚାଲି ଯାଇଛି ବହୁ ଦୂରକୁ । କେଉଁ ସୁଦୂରାଞ୍ଚଳରେ ପାହାଡ଼ ତଳେ ନାଲି ଖୋଳା ଚାଲିଛି । ହଜାର ହଜାର ଶ୍ରମିକ କର୍ମରତ । ସେଠି ଜାତି, ବର୍ଣ୍ଣ, ଭାଷା, ପ୍ରଦେଶ ଭେଦ ନାହିଁ । ସେହି ମେହେନତି ମଣିଷ ମେଳରେ ସୁବ୍ରତ ବଜ୍ରବାହୁ ଜଣେ । ବଳିଷ୍ଠ ବାହୁରେ ପଥର ଚୂନା କରିଛି; ମାଟି ବୋଝ ଉଠାଇଛି; ସାର୍ଥକ ପ୍ରମାଣିତ ସ୍ୱବାହୁର ବଳଶକ୍ତି । ମାନବିକତା ଓ ଶିକ୍ଷାଗତ ଗୁଣରେ ଶ୍ରମିକମହଲରେ ଅତୀବ ପ୍ରିୟପାତ୍ର । ଫୁଲଦାମୀ ଜଣେ ନାରୀ ଶ୍ରମିକ; ସୁବ୍ରତର ଗୁଣମୁଗ୍ଧା, ନିନ୍ଦା ଅପବାଦର ଘନଘଟା ମଧ୍ୟରେ ତାକୁ ଉପନ୍ୟାସର ପ୍ରତିନାୟିକା ସ୍ତରକୁ ଉନ୍ନୀତ କରାଯାଇଛି । ପାଠକ ପ୍ରାଣରେ ଗଭୀର ଉତ୍କଣ୍ଠା; ସୁବ୍ରତ ସହ ଫୁଲଦାମୀର ଦାମ୍ପତ୍ୟ

Digitized by srujanika@gmail.com

ମିଳନ ପାଇଁ ଅତି ସମ୍ଭାବ୍ୟପୂର୍ଣ୍ଣ ଅବସର ଘଟିଛି । ଏହି ଅବସରରେ ଆହୁତିର ସ୍ମୃତି ସୁବ୍ରତ ପ୍ରାଣରେ ସୃଷ୍ଟି କରିଛି ଗଭୀର ମନସ୍ତାତ୍ତ୍ୱିକ ଦ୍ୱନ୍ଦ୍ୱ । କଲେଜ ଡ୍ରାମାରେ ନଳରାଜା ଭୂମିକାରେ ସୁବ୍ରତ, ଦମୟନ୍ତୀ ଭୂମିକାରେ ଆହୁତି ସେଦିନ ମଞ୍ଚକୁ କରିଥିଲ ପ୍ରାଣବନ୍ତ । ଜୀବନସଂଗିନୀର ପ୍ରତିଶ୍ରୁତି ବନ୍ଧନ କରି ଆହୁତି ସେହି ଦିନୁ ପ୍ରତୀକ୍ଷମାଣା; ସୁବ୍ରତ ମାନସରେ ପ୍ରମୂର୍ତ୍ତି ଅଳଭ୍ୟ ସ୍ମୃତି । ନାୟକ ନାୟିକାଙ୍କର ମଧୁମିଳନ ଘଟାଇବା ପୂର୍ବରୁ ଉଭୟଙ୍କ ଧୈର୍ଯ୍ୟକୁ ସମୟର କଷଟି ପଥରରେ କଷାଇ ଦିଆଯାଇଛି । ଜନସେବୀ ଶ୍ରମଜୀବୀ ସୁବ୍ରତର ଉପଯୁକ୍ତା ଜୀବନସଙ୍ଗିନୀ ଭାବେ ତାକୁ ପ୍ରସ୍ତୁତ କରାଯାଇଛି । ସେବାଧର୍ମରେ ଦୀକ୍ଷିତା ଆହୁତି ରଣଗଡ଼ ଅଞ୍ଚଳର ଜନମାନସରେ ମୂର୍ତ୍ତିମତୀ ଦେବୀ ରୂପେ ଆସନ ପାତି ଦେଇଛି । ସେ'ହିଁ ରଣଗଡ ରାଜଦମ୍ପତିଙ୍କୁ ମହାନର୍କରୁ ଓଟାରି ଆଣି ଦିବ୍ୟାଲୋକରେ ରକ୍ଷା କରିଛି । ଆସିଛି ନବଯୁଗ; ବଦଳିଛି ସମାଜର ରୂପ—ଜନତାର ଭାଗ୍ୟ । ରଣରଙ୍ଗୀ ସୁରତ ସାଜିଛି ଶ୍ରମରଙ୍ଗୀ; ଶ୍ରମର ଅମୃତଧାରା ଆସ୍ୱାଦନରେ ସେ ବିଭୋର । ଜଳି ଉଠିଛି କର୍ମଯଜ୍ଞର ପବିତ୍ର ଅନଳ ଶିଖା; ନିଜେ ଇନ୍ଧନ ହୋଇ ଅନ୍ୟକୁ ଇନ୍ଧନ କରି ପାରିଛି । ସମାଜର ଯେତେ ଯାହା ଅନୀତି, ଅତ୍ୟାଚାର, କୁଶିକ୍ଷା କୁସଂସ୍କାର ଜଳିପୋଡ଼ି ଭସ୍ମ ହୋଇ ଯାଇଛି । ହୃଦୟକୁ ହୃଦୟ ଚିହ୍ନିଛି । ଧନ ଦାରିଦ୍ର୍ୟ, ମାନ ଅଭିମାନ, ହିଂସା ଦ୍ୱେଷ ସବୁ ପଛରେ ପଡ଼ି ଯାଇଛି । ଅତୀତର ସବୁ ଦୁଃଖ ସ୍ମୃତି ଅତୀତ ଗର୍ଭରେ ସମାଧି ପ୍ରାପ୍ତ । ଏତିକି ବେଳେ ପ୍ରବାସୀ ସୁବ୍ରତର କର୍ଣ୍ଣକୁହରରେ ପ୍ରତିଧ୍ୱନିତ ହୋଇଛି ନୂଆ ଯୁଗର ନୂଆ ପୁରୋହିତ ଧର୍ମାନନ୍ଦଙ୍କର ବଜ୍ରଗମ୍ଭୀର ମନ୍ତ୍ରବାଣୀ—

"ଭାଷାଭେଦ, ଧର୍ମଭେଦ, ବର୍ଣ୍ଣଭେଦ ସ୍ୱାହା
ସ୍ପୃଶ୍ୟାସ୍ପୃଶ୍ୟ ଭେଦ, ଜାତି ଭେଦ, ଶ୍ରେଣୀଭେଦ, ସ୍ୱାହା,
ଅଶିକ୍ଷା, କୁଶିକ୍ଷା, କୁସଂସ୍କାର ସ୍ୱାହା,
ଅପ୍ରମାଦ, ଆଳସ୍ୟ, ଆତ୍ମାଭିମାନ ସ୍ୱାହା,
ଭୟ, ସଂକୋଚ, ସନ୍ଦେହ ସ୍ୱାହା,
ଦାରିଦ୍ର୍ୟ, ଅସମତା ସ୍ୱାହା,
ସ୍ନେହ, ମମତା, ଭ୍ରାତୃଭାବ ଅକ୍ଷୟ ହେଉ,
ସମଭାବ, ସହନଶୀଳତା ଅକ୍ଷୟ ହେଉ,
ଓଁ, ସର୍ବେ ସୁଖୀନୋ ଭବନ୍ତୁ— ।"

ପଦ୍ମତୋଳା ଶୁଣିଲେ ନାଗ କି ଗର୍ତ୍ତରେ ରହିପାରେ ? ସୁବ୍ରତ ଫେରି ଆସିଛି ରଣଗଡ଼କୁ । ପ୍ରଶସ୍ତ ତା'ର କର୍ମ କ୍ଷେତ୍ର । ପ୍ରଗତିର ବିଜୟବାନା ଉଡ଼ାଇ ସୁଦୃଢ଼ ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇଛି ଋଷୀ ମଲ୍ଲଅଭି ସମାଜ । ସେମିତି ଧାଡ଼ି

Digitized by srujanika@gmail.com

ରୂପ, ଗୀତ, ନାଚ, ମୁକ୍ତପ୍ରେମ, ଅଛୁ କର୍ମ ଅନୁଗତ୍ୟ, ମମତା ଓ ସର୍ବସହିଷ୍ଣୁପଣ । ଧରାବନ୍ଧା ଗତରେ ଗ୍ଲୁଥିବା ସମାଜକୁ ବଦଳାଇବାର ଉଦ୍ୟମ ବହୁ ବାଧାବିଘ୍ନର ସମ୍ମୁଖୀନ ହେବା ନିଶ୍ଚିତ । କଳାକୁଶଳୀ କାହ୍ନୁଚରଣ ଆଭିଜାତ୍ୟକୁ ପ୍ରଚଣ୍ଡ ଆଘାତ କରି ସମ୍ଭ୍ରାନ୍ତ ରାଜକୁଳାଙ୍କୁର ସୁବ୍ରତ, ସୁରଜଙ୍କୁ ଆଣି ମୂଳଆକୁଳର ମଉଡ଼ମଣି ରୂପେ ପ୍ରତିଷ୍ଠିତ କରି ଦେଇଛନ୍ତି । ବଳପ୍ରୟୋଗ ଦ୍ୱାରା ସାମାଜିକ ସମସ୍ୟାର ସମାଧାନ ପନ୍ଥା ନିର୍ଦ୍ଦେଶ ନ କରି ଚରିତ୍ରମାନଙ୍କୁ ଗଠନମୂଳକ ମାର୍ଗରେ କର୍ମପ୍ରବୃତ୍ତ କରାଇଛନ୍ତି । ଧ୍ୱଂସାତ୍ମକ ବିପ୍ଳବ ବା ରକ୍ତପାତ ବିନା ଆଭିଜାତ୍ୟପୂର୍ଣ୍ଣ ସମାଜର ରୂପ ବଦଳାଇଛନ୍ତି । ନାୟକ ନାୟିକାଙ୍କ ମିଳନରେ ଉପନ୍ୟାସର ସାର୍ଥକତା । ଗଳ୍ପର ମନସ୍ତାତ୍ତ୍ୱିକ ଦ୍ୱନ୍ଦ୍ୱ ଭିତରେ ଉଭୟଙ୍କ ଜୀବନରେ ବହୁ ଆବେଗମୟ ମୁହୂର୍ତ୍ତ ସୃଷ୍ଟି ହୋଇଛି । ସମସ୍ତ ଆବେଗ ଉଚ୍ଛ୍ୱାସର ଅବସାନ ଘଟାଇ ଆସିଛି ମଧୁମୟ ମିଳନ ଲଗ୍ନ । ସମସ୍ତ ସୀମାର ଦୀର୍ଘତା ଉପନ୍ୟାସର କଳାଗତ ବୈଶିଷ୍ଟ୍ୟକୁ ବ୍ୟାହତ ନ କରି ରସାଣିତ କରିଛି, ତେଣୁ ଏହା ପ୍ରଶଂସନୀୟ । ସୁବ୍ରତ ପ୍ରାଣରେ ଦୀର୍ଘକାଳ ଆସନପାତି ରହିଥିବା ସେଦିନର ମଞ୍ଚସଙ୍ଗିନୀ ଆଜିଠାରୁ ସାଜିଛି ତା'ର ଜୀବନସଙ୍ଗିନୀ । ଏହି ଲାବଣ୍ୟ ପ୍ରତିମା, ଅଜ୍ଞାତ କୁଳଶୀଳାର କଣ୍ଠମଣ୍ଡନ କରିଛି, ପୁରୁଷାନୁକ୍ରମେ ରଣଗଡ଼ ରଣସିଂହ ବଂଶର କୁଳଲକ୍ଷ୍ମୀମାନଙ୍କର କଣ୍ଠଭୂଷଣ— 'ରାମାଭିଷେକ ହାର' ।

ସୃଜନଶୀଳ କାହ୍ନୁଚରଣଙ୍କ ସୃଷ୍ଟିନିଷ୍ଠା ତାଙ୍କର ସମଗ୍ର ସୃଷ୍ଟି ବିଭବକୁ ଦିବ୍ୟ ସୌନ୍ଦର୍ଯ୍ୟରେ ସର୍ଜ୍ଜିତ କରିଛି । ସର୍ବତ୍ର ଭାବପ୍ରାଚୁର୍ଯ୍ୟ ସଙ୍ଗେ ପ୍ରାଣପ୍ରାଚୁର୍ଯ୍ୟ ଉଚ୍ଛଳ ଓ ଉଜ୍ଜ୍ୱଳ । ସାହିତ୍ୟ କଳାଶିଳ୍ପର ଚରମ ସାର୍ଥକତା ପ୍ରତିପାଦିତ କରି କଳ୍ପନା ପରିଗ୍ରହ କରିଛି ବାସ୍ତବ ରୂପ ।

ସୃଷ୍ଟି ସଙ୍ଗେ ସ୍ରଷ୍ଟା ହୁଅନ୍ତୁ ଦୀର୍ଘାୟୁ—

ଜାତିର କାମନା ।



୪ ଆର୍—୨୮୩
ଗଙ୍ଗାନଗର,
ଭୁବନେଶ୍ୱର-୧ ।

Digitized by srujanika@gmail.com

# ଟ୍ରାଜେଡ଼ି : ପ୍ରସଂଗ—
## କାହ୍ନୁଚରଣ ମହାନ୍ତି

ମନୋରଂଜନ ପ୍ରଧାନ

ମାର୍ଗ ଟ୍ରାଜେଡ଼ି ( Classical : ଶ୍ରେଷ୍ଠ ) ଓ ଆଧୁନିକ ଟ୍ରାଜେଡ଼ି ମଧ୍ୟରେ ପାର୍ଥକ୍ୟ କେବଳ କାଳଗତ ନୁହେଁ, ଗୁଣଗତ ମଧ୍ୟ । ସାହିତ୍ୟର ଇତିହାସରେ ଯେଉଁ ଯୁଗ କାବ୍ୟୋତ୍କର୍ଷର ଯୁଗ, ମାର୍ଗ ଟ୍ରାଜେଡ଼ି ସେହି ଯୁଗରେ ରଚିତ । ପ୍ରତ୍ୟେକ ସାହିତ୍ୟର ଇତିହାସରେ ସାମନ୍ତଯୁଗ କାବ୍ୟୋତ୍କର୍ଷର ଯୁଗ-ରୂପେ ଚିହ୍ନିତ ହୋଇଛି । ଯେଉଁ ଦେଶରେ ଟ୍ରାଜେଡ଼ିର ଆସର ଦେଶୀୟ ଧର୍ମ ସଂସ୍କାର, ଆଶା-ଆକାଂକ୍ଷା ମାଧ୍ୟମରେ ପ୍ରାଚୀନକାଳଠାରୁ ପ୍ରତିଷ୍ଠିତ ହୋଇଛି, ମାର୍ଗ ଟ୍ରାଜେଡି ସେହି ଦେଶର ସାମନ୍ତଶାସନର ହିଁ ସୁବର୍ଣ୍ଣ ଫସଲ । ପରେ ସାମନ୍ତ ଯୁଗର ପରାଭବ ଏବଂ ଧନିକତନ୍ତ୍ରର ଅଭ୍ୟୁଦୟରେ କାବ୍ୟ ପରିବର୍ତ୍ତେ ଯେତେବେଳେ ଗଦ୍ୟମାଧ୍ୟମ ପ୍ରବଳ ଭାବରେ ଆତ୍ମପ୍ରକାଶ କଲା, ମାର୍ଗ-ଟ୍ରାଜେଡ଼ି ମଧ୍ୟରେ ମଧ୍ୟ ସେତେବେଳେ ପରିବର୍ତ୍ତନର ଚିହ୍ନଗୁଡ଼ିକ ସ୍ପଷ୍ଟ ହୋଇ ଉଠିଲା । ଫଳରେ ପରେ ଏମିତି ଗୋଟିଏ ଗୋଟିଏ ଧରଣର ଟ୍ରାଜେଡି ବିଭିନ୍ନ ଦେଶର ସାହିତ୍ୟରେ ସ୍ୱତଃସ୍ଫୂର୍ତ୍ତି ଭାବରେ ରଚିତ ହେବାକୁ ଆରମ୍ଭ କଲା ଯେଉଁ ଗୁଡ଼ିକୁ ମାର୍ଗ ଟ୍ରାଜେଡ଼ି କହିବା କଷ୍ଟକର । କିନ୍ତୁ ଯୁଗର ପରିବର୍ତ୍ତନରେ ଯେଉଁ ଜୀବନ ଓ ଜୀବନ ବିଶ୍ୱାସର ପରିବର୍ତ୍ତନ, ସେହି ପରିବର୍ତ୍ତନ-ଧର୍ମ ଯଦି ଟ୍ରାଜେଡ଼ି ମଧ୍ୟରେ ପ୍ରବେଶ କରି ଟ୍ରାଜେଡ଼ି ମଧ୍ୟରେ ପରିବର୍ତ୍ତନ ଆଣେ, ତେବେ ସେଇ ପରିବର୍ତ୍ତନକୁ ବିଭ୍ରାନ୍ତି ନାମରେ ଅସ୍ୱୀକାର କରାଯିବ ନାହିଁ । ପରିବର୍ତ୍ତନ ଏ କ୍ଷେତ୍ରରେ ବିଚ୍ୟୁତି ନୁହେଁ, ବିବର୍ତ୍ତନ, ଯାହା ବିଜ୍ଞାନ ସମ୍ମତ, ସୁତରାଂ ମାନ୍ୟ । ଏଣୁ ଧନିକତନ୍ତ୍ରର ହାତ ଧରି ଯେଉଁ ଗଦ୍ୟଟ୍ରାଜେଡ଼ିର ଆବିର୍ଭାବ ବିଭିନ୍ନ ଦେଶର ସାହିତ୍ୟରେ ଘଟିଛି; ତା ମଧ୍ୟରେ ଟ୍ରାଜେଡ଼ି ଚେତନାର ଆଧୁନିକ ରୂପଟି ଶିଳ୍ପରୂପ ପରିଗ୍ରହ କରିଛି ।

ସୁତରାଂ ବିଶ୍ୱର ଶ୍ରେଷ୍ଠ ଟ୍ରାଜେଡ଼ି ଗୁଡ଼ିକୁ ଯେଉଁ ସ୍ଥିର ଭାଗରେ ଭାଗ କରାଯାଏ, ତା ମଧ୍ୟରେ ଖ୍ରୀ: ପୂ: ୫ମ ଶତାବ୍ଦୀର ଗ୍ରୀକ୍ ଟ୍ରାଜେଡ଼ି, ୧୫୫୮ ଠାରୁ ୧୬୨୫ର ମଧ୍ୟବର୍ତ୍ତୀ ପ୍ରଥମ ଏଲିଜାବେଥ ଓ ପ୍ରଥମଜେମସ ଙ୍କ ସମକାଳୀନ ଇଂରାଜୀ

Digitized by srujanika@gmail.com

ଟ୍ରାଜେଡ଼ି ଏବଂ ସପ୍ତଦଶ ଶତାବ୍ଦୀର ଫରାସୀ ଟ୍ରାଜେଡ଼ିକୁ ମାର୍ଗ ଟ୍ରାଜେଡ଼ି ନାମରେ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧଠାରୁ ଆରମ୍ଭ କରି ବିଂଶଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ବିଭିନ୍ନ ଦେଶୀୟ ଟ୍ରାଜେଡ଼ିକୁ ଆଧୁନିକ ଟ୍ରାଜେଡ଼ି ଆଖ୍ୟା ଦିଆଯାଇ ପାରେ । କହିବା ବାହୁଲ୍ୟ, ଏହି ଆଧୁନିକ ଟ୍ରାଜେଡ଼ି ମଧ୍ୟରେ ବିବର୍ତ୍ତନର ପ୍ରକ୍ରିୟା ଅବ୍ୟାହତ ଭାବରେ କ୍ରିୟାଶୀଳ ।

ଆଧୁନିକ ଟ୍ରାଜେଡ଼ି କେବଳ କାବ୍ୟ ମାଧ୍ୟମକୁ ହିଁ ପରିତ୍ୟାଗ କଲାନି, ନାଟକର ବନ୍ଧନକୁ ସ୍ୱୀକାର କରି ରହିବାର ବାଧ୍ୟବାଧକତାକୁ ମଧ୍ୟ ଅସ୍ୱୀକାର କଲା । ଫଳରେ ଆଧୁନିକ ଟ୍ରାଜେଡ଼ି କହିଲେ କେବଳ ନାଟକ ବୁଝାଏ ନାହିଁ । ଉପନ୍ୟାସ ମଧ୍ୟ ବୁଝାଏ । ଆଧୁନିକ ଯୁଗରେ ଜନପ୍ରିୟତା ଉପନ୍ୟାସର, ସୁତରାଂ ଆଧୁନିକ ଯୁଗର ଟ୍ରାଜେଡ଼ି ଚେତନା ଉପନ୍ୟାସ ମଧ୍ୟରେ ମଧ୍ୟ ଶିଳ୍ପରୂପ ପାଇବାକୁ ଚାହିଁବହିଁ ଚାହିଁବ ।

ନାଟକ ମୂଳତଃ ଅଭିନୟ ନିମିତ୍ତ ରଚିତ ହେଲେ ହେଁ, ଯେଉଁ ମୁହୂର୍ତ୍ତରୁ ତାହାପାଠ୍ୟ ସାହିତ୍ୟ ରୂପେ ଗୃହୀତ ହୋଇଛି, ସେହି ମୁହୂର୍ତ୍ତରୁ ହିଁ ନାଟକର ଆଙ୍ଗିକରେ ଟ୍ରାଜେଡ଼ିର ଦୃଶ୍ୟରୂପ ଲାଭ କରିଛି ପାଠକ ନିକଟରେ । ଟ୍ରାଜେଡ଼ିର ଏହି ଶ୍ରବ୍ୟରୂପ ହିଁ ଆଧୁନିକ କାଳର ଶିଳ୍ପୀବର୍ଗ ଉପନ୍ୟାସରେ ପ୍ରକାଶ କରି ପ୍ରଭୂତ ଶିଳ୍ପସିଦ୍ଧି ଅର୍ଜନ କରିଛନ୍ତି । ଯାହା ଅନସ୍ୱୀକାର୍ଯ୍ୟ । ଊନବିଂଶ ଶତାବ୍ଦୀର ନାଟ୍ୟକାରମାନଙ୍କ ତୁଳନାରେ ଔପନ୍ୟାସିକ ମାନେ ହିଁ ଟ୍ରାଜେଡ଼ି ରଚନାରେ ଅଧିକତର ସାଫଲ୍ୟ ଅର୍ଜନ କରିଛନ୍ତି । (୧) ସୁତରାଂ ଆଧୁନିକ କାଳର ଟ୍ରାଜେଡି କହିଲେ ନାଟକ ଏବଂ ଉପନ୍ୟାସ ଉଭୟକୁ ହିଁ ବୁଝିବାକୁ ହେବ । ତେବେ ସଙ୍ଗେ ସଙ୍ଗେ ଏକଥା ମଧ୍ୟ ପ୍ରଣିଧାନଯୋଗ୍ୟ ଯେ, ଟ୍ରାଜେଡ଼ିର ଦୃଶ୍ୟରୂପ ଓ ଶ୍ରବ୍ୟରୂପ ମଧ୍ୟରେ ପାର୍ଥକ୍ୟ ରହିଛି । ନାଟକର ଦର୍ଶକଙ୍କ ନିକଟରେ ଯେଉଁ ପ୍ରତିକ୍ରିୟା, ଉପନ୍ୟାସର ପାଠକ ବା ଶ୍ରୋତା ନିକଟରେ ଟ୍ରାଜେଡିର ଶ୍ରବ୍ୟରୂପ ବା କଳ୍ପରୂପର ପ୍ରତିକ୍ରିୟା ତା ଠାରୁ ଭିନ୍ନତର ହେବ । ନାଟକର ପ୍ରକାଶ୍ୟଉଗ୍ରତା ଉପନ୍ୟାସ ମଧ୍ୟରେ ସ୍ତିମିତ ହୋଇ ଆସିବ । ହୁଏତ ଆଧୁନିକ ମନୁଷ୍ୟର ରୁଚିବୋଧରେ ଉଗ୍ରତା ପରିହାରର ପ୍ରବଣତା ରହିଛି । ତେଣୁ ଜୀବନର ଟ୍ରାଜେଡିକୁ ସେ ଉଗ୍ରଭାବରେ ନୁହେଁ, ସ୍ତିମିତ ଭାବରେ ପ୍ରକାଶ କରେ । ଏହା କୃତ୍ରିମତା ନୁହେଁ, ଯୁଗଧର୍ମାନୁଯାୟୀ ସ୍ୱାଭାବିକତା । ଏବଂ ହୁଏତ ଏହି ରୁଚିବଶବର୍ତ୍ତିତାହିଁ ଆଧୁନିକ କାଳର ଶିଳ୍ପୀ, ନାଟକରେ ନୁହେଁ, ଉପନ୍ୟାସରେ ଟ୍ରାଜେଡ଼ିକୁ ଅଧିକତର ସାଫଲ୍ୟର ସହିତ ଫୁଟାଇ ପାରିଛି ।

---

(୧) Clifford Leech : Tragedy (1972) P. 31.

Digitized by srujanika@gmail.com

ଟ୍ରାଜେଡ଼ିର ଏଇ ଗ୍ରିମିଭ ରୂପ ଆଧୁନିକ ଟ୍ରାଜେଡ଼ି-ଚେତନାର ବିଶେଷତ୍ୱ। ଏଥିଯୋଗୁଁ ମାର୍ଗ-ଟ୍ରାଜେଡି ପରିପ୍ରେକ୍ଷୀରେ ଏ ଯୁଗର ଟ୍ରାଜେଡି ମଧ୍ୟରେ କିଛି ଗୋଟାଏ ପରିମାପ ଅଛି। ଏଠାରେ ମନୁଷ୍ୟର ଦୁଃଖଭାବର ବାସ୍ତବକାରଣ ପ୍ରଦର୍ଶନ କରାଯାଇଥାଏ ବୋଲି କେତେବେଳେ ମନେହୁଏନା ଯେ, ତାହା ପ୍ରତିକାରବିହୀନ। ଯାହାର ବାସ୍ତବଗତ କାରଣ ଅଛି, ତାର ବସ୍ତୁଗତ ମିମାଂସା ମଧ୍ୟ ଅଛି, ଏହାହିଁ ଆମମାନଙ୍କର ବିଶ୍ୱାସ। କାର୍ଯ୍ୟତଃ ସେହି ମିମାଂସା ବା ପ୍ରତିକାର ଅନାୟତ୍ତ ରହିଯାଏ, ଏବଂ ତା ଫଳରେହିଁ ଟ୍ରାଜେଡି ଅନିବାର୍ଯ୍ୟ ହୁଏ। କିନ୍ତୁ କେତେବେଳେ ମନେ ହୁଏନା ଯେ, ମିମାଂସା ବା ପ୍ରତିକାର ଅସମ୍ଭବ। ଏଇ ସମ୍ଭାବନାର ଦ୍ୟୋତନା ଟ୍ରାଜେଡିର ଦୁଃଖର କାରଣ ଓ ଶୋକକୁ ଅନାୟତ୍ତ ପରିମିତ ଲାଭ କରିବାକୁ ଦିଏନା। ଫଳରେ ଯେଉଁ admiration ଟ୍ରାଜେଡ଼ି ନାୟକର ପ୍ରାପ୍ୟ, ଆଧୁନିକ ଟ୍ରାଜେଡ଼ି ତାର କୌଣସି ସୁଯୋଗ ସୃଷ୍ଟି କରି ପାରେ ନାହିଁ। ସେହି ଅର୍ଥରେ ଏଠାରେ ନାୟକ ନାମରେ ବିଶେଷ କେହି ଅଛି କି ନା ସନ୍ଦେହ। ଏଠାରେ ଟ୍ରାଜେଡି ସଂଘଟିତ ନୁହେଁ, ପୂର୍ବଠାରୁ ବିଦ୍ୟମାନ। ତେଣୁ ଯାହା ଜୀବନ ଉପରେ ଟ୍ରାଜେଡିର ଝଡ଼ ବହିଯାଏ ତାକୁ ଆମେ ନାୟକ କହିପାରୁନା, କହିପାରୁ ଟ୍ରାଜେଡିର 'ଶିକାର'। ଶିକାର ପରି ସେ ଅସହାୟ, ଗ୍ରିମିଭ, କ୍ଷୁଦ୍ର। ତାର ପତନ ବା ବିପର୍ଯ୍ୟୟ ଯୋଗୁଁ ଭଲଆନର ପ୍ରୟୋଜନ ହୁଏନା, ପରିସ୍ଥିତିର ପ୍ରତାରଣା ସେଠାରେ ଭିଲଆନ୍‌ର ଭୂମିକା ନିଏ। ନେମେସିସ୍ (Nemesis) ସେଠାରେ ରାଷ୍ଟ୍ର ବା ସମାଜ। ଆଉ hamartia ବା ଟ୍ରାଜେଡ଼ି ଭ୍ରାନ୍ତି ସେଠାରେ ଏକ ବୁର୍ଜ୍ଜୋୟ ରହସ୍ୟମୟତା ମଧ୍ୟରେ ପରିଚ୍ଛନ୍ନ ଭାବରେ ଟ୍ରାଜିକ ଚରିତ୍ର ମଧ୍ୟରେ ଅକସ୍ମାତ ଆସି ଦେଖା ଦିଏନା, ଜୀବନ ଧାରଣ ଯୋଗୁଁ ସହଜ ସରଳ ବା ଦୁର୍ବଳ ବୁଦ୍ଧି ପ୍ରଣୋଦିତ କର୍ତ୍ତବ୍ୟ ମଧ୍ୟରେ ଘଟିଥାଏ। ଅର୍ଥାତ୍ ସାଧାରଣ ମନୁଷ୍ୟର ପାର୍ଥିବ କାରଣରୁ ସଂଘଟିତ ବସ୍ତୁ ସମ୍ମତ ଦୁଃଖ-ବେଦନାର କାହାଣୀ ହିଁ ଆଧୁନିକ ଟ୍ରାଜେଡ଼ିର ବିଷୟ। ଆରିଷ୍ଟଟଲଙ୍କ ମତ ଅନୁଯାୟୀ ଟ୍ରାଜେଡିର ପ୍ରକୃତ ଅଂଗ ପ୍ରତ୍ୟଙ୍ଗ ଗୁଡ଼ିକ ମଧ୍ୟ ଅବିକଳ ନ ମିଳି ପାରେ, ଯଦିଓ ତାର କାର୍ଯ୍ୟ ଗୁଡ଼ିକ କୌଣସି କୌଣସି ଭାବରେ ସଂପାଦିତ ହୋଇଥାଏ। ଅବଶ୍ୟ ପ୍ରତ୍ୟାଶା, ବିପର୍ଯ୍ୟୟ, ଆଶାଭଂଗ ବା Peripeteia ଏଠାରେ ବିଦ୍ୟମାନ ରହେ, ଯେହେତୁ ଟ୍ରାଜିକ ଚରିତ୍ରର ବେଦନା ବୋଧ ଅନେକ ହିଁ ଏହା ଉପରେ ନିର୍ଭର କରେ। ଏଇ ଭାବରେ ଆଧୁନିକ ଟ୍ରାଜେଡି ମାର୍ଗ-ଟ୍ରାଜେଡିର କଠିନତାକୁ ବିଗଳିତ କରି ଆମ ସାମାଜିକ, ପାରିବାରିକ ଜୀବନ ମଧ୍ୟରେ ପ୍ରବାହିତ ହୋଇଛି। ଫଳରେ ଆଧୁନିକ ଟ୍ରାଜେଡ଼ି ମଧ୍ୟରେ ଆମର ସାମାଜିକ ବା ପାରିବାରିକ ପରିଚୟ ହିଁ ଅଧିକତର ସ୍ପଷ୍ଟ ଭାବରେ ଅଂକିତ ହୋଇଛି, ଯାହା ମାର୍ଗ-ଟ୍ରାଜେଡ଼ିରେ କେବେ ମଧ୍ୟ ସମ୍ଭବ ହୋଇ

Digitized by srujanika@gmail.com

ପାରନାହିଁ । ଏଣୁ ମାର୍ଲ-ଟ୍ରାଜେଡ଼ିରେ ବାହାରର କଥା ମୁଖ୍ୟ, କିନ୍ତୁ ଆଧୁନିକ ଟ୍ରାଜେଡିରେ ମୁଖ୍ୟ; ଭିତରର କଥା ।

( ଦୁଇ )

ସୁତରାଂ ଆଧୁନିକଟ୍ରାଜେଡ଼ିର ଆନୁକୂଲ୍ୟରେ ଆମ ସାଂସାରିକ ବା ପାରିବାରିକ ଜୀବନରେହିଁ ଦେଖାଦେଲ ଟ୍ରାଜେଡ଼ିର ବିଷୟ । ପାରିବାରିକ ଜୀବନ ସେକସ୍‌ପିଅରଙ୍କ ନାଟକରେ ମଧ୍ୟଥିଲା, କିନ୍ତୁ ସେଠାରେ କାହାଣୀର ବୃହତ୍ତର ତାତ୍ପର୍ଯ୍ୟ ଏବଂ ଚରିତ୍ର ଗୁଡ଼ିକର ନିଜସ୍ୱ ପଦମର୍ଯ୍ୟାଦା ଟ୍ରାଜେଡ଼ିକୁ ପାରିବାରିକ ସୀମାମଧ୍ୟରେ ଆବଦ୍ଧ ରହିବାକୁ ଦେଇନ । ପିତା ପୁତ୍ରର ସମ୍ପର୍କ, ପିତା କନ୍ୟାର ସମ୍ପର୍କ, 'ହ୍ୟାମଲେଟ୍' ଓ 'କିଂଲିୟର' ନାଟକ ଦୁଇଟିରେ ପାରିବାରିକ ମାଧୁର୍ଯ୍ୟ ଓ ବେଦନାଭାବକୁନେଇ ସରୁସମୟରେ ବଜାୟ ଅଛୁ ।

'ମ୍ୟାକବେଥ' ନାଟକ ମଧ୍ୟରେ ଡାନକାନଦେ ସହିତ ମ୍ୟାକବେଥର ପାରିବାରିକ ଆତ୍ମୀୟତା ପାରିବାରିକ ଆବହାଓ୍ୱା-ରଚନାର ଯଥେଷ୍ଟ ସୁଯୋଗ ପ୍ରଦାନ କରିଛୁ । 'ଅଥେଲେ' ନାଟକର ଚରିତ୍ର ଆରମ୍ଭରୁ ଶେଷପର୍ଯ୍ୟନ୍ତ ଗୋଟିଏ ପାରିବାରିକ ଚରିତ୍ର ବ୍ୟତୀତ ଅନ୍ୟ କିଛୁ ନୁହେଁ । 'ଜୁଲିୟସ୍‌ସିଜାର୍' ନାଟକରେ ମଧ୍ୟ ଏଇ ପାରିବାରିକ ଚରିତ୍ର ରହିଛୁ । କିନ୍ତୁ ଏଇସବୁ ନାଟକର ପ୍ରତ୍ୟେକଟି ମୁଖ୍ୟଚରିତ୍ର ରାଜପରିବାର ଭୁକ୍ତହୋଇଯାଇଛନ୍ତି ଏବଂ ରାଷ୍ଟ୍ରୀୟ ପଦମର୍ଯ୍ୟାଦାବୃତ ଥିଲେ ହେଁ ଟ୍ରାଜେଡ଼ି ପାରିବାରିକ ସୀମାକୁ ଛାଡ଼ି ବୃହତ୍ତର ପରିଧି ତଟରେ ବିସ୍ତୃତ ହୋଇଛୁ ପୁଣି ରାଜ୍ୟବ୍ୟାପୀ ପ୍ରତିକ୍ରିୟା ସୃଷ୍ଟି କରିଛୁ । ଏତଦ୍ଭିନ୍ନ ସେକସ୍‌ପିଅର ପ୍ରତିଟି ନାଟକରେ, ନ୍ୟାୟ-ଅନ୍ୟାୟ, ଭଲ-ମନ୍ଦ, ପ୍ରବୃତ୍ତି ନିବୃତ୍ତି ଶାଶ୍ୱତ ଓ ବିଶ୍ୱଜେତ ପ୍ରଶ୍ନ ଉତ୍ଥାପନ କରି ଦୃଏତ ନାଟକଗୁଡ଼ିକ ଉପରେ ପାରିବାରିକତାର ଚିହ୍ନଗୁଡ଼ିକୁ ଲେପିଦେଇଛନ୍ତି, କିନ୍ତୁ ତାଙ୍କ ଟ୍ରାଜେଡ଼ି ଗୁଡ଼ିକୁ ପାରିବାରିକ ଟ୍ରଜେଡ଼ି କୁହାଯାଇ ନାହିଁ କି ଯିବନାହିଁ ମଧ୍ୟ ।

କିନ୍ତୁ ଏଇ ନାଟକର ଚରିତ୍ର ଗୁଡ଼ିକୁ ଯଦି ରାଜକୀୟ ପଦମର୍ଯ୍ୟାଦାରୁ ମୁକ୍ତକରି ଅଣାଯାଏ ଏବଂ ନାଟ୍ୟକାରଙ୍କ ଶାଶ୍ୱତବାଣୀକୁ ଯଦି କ୍ଷୁଦ୍ରତର ତାତ୍ପର୍ଯ୍ୟ ପ୍ରଦାନ କରାଯାଏ ତେବେ ଏଇ ମାର୍ଲଟ୍ରାଜେଡ଼ି ଗୁଡ଼ିକୁ ମଧ୍ୟ ପାରିବାରିକ ଟ୍ରାଜେଡ଼ିରେ ପରିଣତ କରାଯାଇପାରେ । ଏଇ ସମ୍ଭାବନା ତତ୍କାଳୀନ ଶିଳ୍ପୀକୁ ଅନୁପ୍ରାଣିତ କରିଛୁ ଏବଂ ସେ ମନୁଷ୍ୟ ଟ୍ରାଜେଡ଼ିର ବୃହତ୍ତର ପ୍ରତିକ୍ରିୟା ଓ ତାତ୍ପର୍ଯ୍ୟ କଥା ନ ଭାବି ନିଜର ସାଧାରଣ ପରିମିତ କଥା ମନେରଖି ତଦନୁଯାୟୀ ଟ୍ରାଜେଡ଼ି

Digitized by srujanika@gmail.com

ରଚନା କରିଛୁ । ଇଂଲଣ୍ଡରେ ଏଇ ଜାତୀୟ ଟ୍ରାଜେଡି କିଛୁ ରଚିତ ହୋଇଛୁ । ଏଇ ଟ୍ରାଜେଡିର ଶିଳ୍ପୋତ୍କର୍ଷ ବେଶୀ ନୁହେଁ ଏବଂ ମାର୍ଗଟ୍ରାଜେଡିର ଆକର୍ଷଣୀୟତାର ପରିପ୍ରେକ୍ଷୀରେ ଏ ଗୁଡ଼ିକ ନିତାନ୍ତ ବିବର୍ଣ୍ଣ ବୋଲି ମନେହୁଏ । କିନ୍ତୁ ଏଭି ଟ୍ରାଜେଡି ଗୁଡିକହିଁ ଇଉରୋପରେ ଆଧୁନିକ ଟ୍ରାଜେଡ଼ିର ସୂଚକ । ସୁତରାଂ ଏଇ ଟ୍ରାଜେଡି ଯେଉଁ ମାନେ ରଚନା କଲେ, ସେମାନେ ନିଜେ କିଛି ସାଫଲ୍ୟ ଅର୍ଜନ କରିପାରିଲେନି,କିନ୍ତୁ ଊନବିଂଶ-ବିଂଶଶତାବ୍ଦୀର ଅନେକ ଶିଳ୍ପୀଙ୍କ ସାଫଲ୍ୟଲାଭର ପଥନିର୍ମାଣ କରିଦେଲେ । (୨) ୧୭୩୧ ଖ୍ରୀ:ରେ ଜର୍ଜଲିଲୋ 'ଲଣ୍ଡନ ମାର୍ଚେଣ୍ଟ' ରଚନାରେ ଇଂଲଣ୍ଡରେ ପାରିବାରିକ ଟ୍ରାଜେଡିର ପରିଚୟଦେଲେ । ମାତ୍ର ଇଂଲଣ୍ଡରେ ପୁସ୍ତକଟି ସମାଦର ପାଇଲାନି, କିନ୍ତୁ ୧୭୪୮ ଖ୍ରୀ: ରେ ଏ ପୁସ୍ତକଟି ଫରାସୀ ଅନୁବାଦ ହେଲା ଏବଂ ୧୭୫୫ରେ ଏହାର ଅନୁସରଣରେ ଲେସିଂ ଜର୍ମାନରେ 'ମିସ୍ ସାରା ସ୍ୟାମ୍ପସନ' ରଚନା କରି ଜର୍ମାନ ନାଟ୍ୟାମୋଦୀଙ୍କର ମନ ଜୟ କରିଥିଲେ ।

ଲିଲୋ ନିଜେ 'ଲଣ୍ଡନମାର୍ଚେଣ୍ଟ' ପୁସ୍ତକର ମୁଖବନ୍ଧରେ ଯୁଗ ପରିବର୍ତ୍ତନର ଗୁରୁତ୍ୱକୁ ଅନୁଧାବନକରି ଯେଉଁ ମୀତବାଦକୁ ପ୍ରତ୍ୟାଶା କରିଛନ୍ତି, ଆଧୁନିକ ଟ୍ରାଜେଡ଼ିର ରଚୟିତାଗଣ ସେଇଦିଗକୁ ଲକ୍ଷ୍ୟଦେଇନାହାଁନ୍ତି । କିନ୍ତୁ ସେମାନେ ପ୍ରାଥମିକ ପ୍ରତ୍ୟାଶାକୁ-ସାଧାରଣ ମନୁଷ୍ୟକୁ ଟ୍ରାଜେଡ଼ି ମଧ୍ୟରେ ଗ୍ରହଣକରି ଟ୍ରାଜେଡ଼ିର ପରିସର ବର୍ଦ୍ଧିତ କରିବାରେ,—ଏଇ ପ୍ରାଥମିକ ପ୍ରତ୍ୟାଶାକୁ ସଯତ୍ନରେ ପୂରଣ କରିଛନ୍ତି । ଧନିକତନ୍ତ୍ରର ଅଭ୍ୟୁଦୟ ସଙ୍ଗେସଙ୍ଗେ ସାଧାରଣ ମନୁଷ୍ୟର ଯେଉଁ ଜୀବନଗତ ମୂଲ୍ୟବୃଦ୍ଧି ଆଧୁନିକ ଟ୍ରାଜେଡ଼ିର ରଚୟିତାଗଣଙ୍କ ସାହିତ୍ୟରେ ଅନିବାର୍ଯ୍ୟଭାବରେ ପ୍ରତିଷ୍ଠିତ କରିଛୁ ଏବଂ ଏଇ ଭାବରେ ହିଁ ସୃଷ୍ଟି ହୋଇଛୁ ଅଷ୍ଟାଦଶ ଶତାବ୍ଦୀର ଇଉରୋପୀୟ 'ବୁର୍ଜୋୟାଡ଼୍ରାମା' ଏବଂ ଏଇପଥରେ ହିଁ ରଚିତ ହୋଇଛୁ ଆଧୁନିକ କାଳର ନାଟକରେ ଓ ଉପନ୍ୟାସରେ ପାରିବାରିକ ଟ୍ରାଜେଡ଼ି ।

ଆରିଷ୍ଟଟଲ୍ ଟ୍ରାଜେଡିର ସଂଜ୍ଞାଦେଲେ । ରେନେସାଁର ସମାଲୋଚକଗଣ ଏଇ ସଂଜ୍ଞାକୁ ଆଇନରେ ପରିଣତକଲେ, ଫଳରେ ଆରିଷ୍ଟଟଲଙ୍କ ସଂଜ୍ଞା ସମାଲୋଚନା ଆସରରେ ସୁଦୃଢ଼ରୂପେ ପ୍ରତିଷ୍ଠିତ ହେଲା । କିନ୍ତୁ, ପ୍ରକୃତ ପାରିବାରିକ ଟ୍ରାଜେଡ଼ିର ସେମିତି କିଛି ପ୍ରତିଷ୍ଠିତ ସଂଜ୍ଞା ନାହିଁ । ରଚନା ମଧ୍ୟରେ ଏହାର ପରିଚୟ ବିଧୃତ ଥାଏ । ଏବଂ ସେ ପରିଚୟ ମଧ୍ୟ ସର୍ବଦା ଏକପ୍ରକାର ନୁହେଁ । କିନ୍ତୁ ପ୍ରକୃତ ପାରିବାରିକଟ୍ରାଜେଡ଼ି ଯେ କାହିଁକି ଏକ ଗ୍ରନ୍ଥରେ ଗଢାନୁହେଁ ତା'ର ମଧ୍ୟ ଯଥେଷ୍ଟ

(୨) Dramatic Essays of the Neoclassic Age, Ed. H. H. Adams and B. Hathaway New york. 1965. p. 270

Digitized by srujanika@gmail.com

କାରଣ ରହିଛି । ଜନୈକ ସମାଲୋଚକ ଏଲିଜାବେଥ ଯୁଗର ତିନିଖଣ୍ଡ ପାରିବାରିକ ଟ୍ରାଜେଡି ସମ୍ପର୍କରେ ଆଲୋଚନା କରିବାକୁ ଯାଇ ଏହି କାରଣ ଗୁଡ଼ିକୁ ନିର୍ଦ୍ଦେଶ କରିଛନ୍ତି । ତାଙ୍କ ମତରେ–ସାମାଜିକ ପରିବେଶକୁ ବାସ୍ତବ ରୂପଦେଇ ସୌନ୍ଦର୍ଯ୍ୟ-ଚେତନାରେ ଆଧୁନିକ ଦର୍ଶକ ବା ପାଠକଙ୍କୁ ଯାହା ପ୍ରଦାନ କରାଯାଏ ତାହା ପାରିବାରିକ ଟ୍ରାଜେଡ଼ିର ଅନ୍ତର୍ଭୁକ୍ତ । ପୁନଶ୍ଚ ମନୁଷ୍ୟର ବିଦ୍ରୋହକୁ ଜୟପରାଜୟ ମଧ୍ୟରେ ଶଙ୍କୁର ନିକଟବର୍ତ୍ତୀ କରାଇ ଆଶାନିରାଶା ସହିତ ପରିଚୟ ଘଟାଇବା ହିଁ ପାରିବାରିକ ଟ୍ରାଜେଡ଼ିର ଗୁଣ । (୩)

ଏଠାରେ ସମାଲୋଚକ ଏଲିଜାବେଥ୍ ଯୁଗର ପାରିବାରିକ (ସାମାଜିକ) ଟ୍ରାଜେଡ଼ିର ଯେଉଁ ମୌଳଧର୍ମକୁ ପ୍ରତିପାଦନ କରିଛନ୍ତି, ତାହା ଆଧୁନିକ ଯୁଗର ସମସ୍ତ ଟ୍ରାଜେଡ଼ି ମଧ୍ୟରେ ପ୍ରାୟ ପ୍ରାପ୍ତବ୍ୟ । ନାଟକ ହେଉ କିମ୍ବା ଉପନ୍ୟାସ ହେଉ, ଆଧୁନିକ ଯୁଗର ସମସ୍ତ ଟ୍ରାଜେଡ଼ି ମଧ୍ୟରେ ସାମାଜିକ ଜୀବନ ପ୍ରଧାନ । ବର୍ତ୍ତମାନ ମନୁଷ୍ୟ ନିକଟରେ ମନୁଷ୍ୟର ସାମାଜିକ ଜୀବନର ମୂଲ୍ୟ କମ୍ ନୁହେଁ । ତେଣୁ ଆନୁପୂର୍ବିକ ସାମାଜିକ ଜୀବନ ବା ଯେଉଁସବୁ ମନୋଭାବ ଆବେଗ ପ୍ରଭୃତିକୁ ନେଇ ସାମାଜିକ ଜୀବନ ରଚିତ ସେ ସବୁହିଁ ଆଧୁନିକ ଟ୍ରାଜେଡ଼ିର ବିଷୟବସ୍ତୁରୂପେ ଗୃହୀତ ହୋଇଛି ।

( ତିନି )

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଓଡ଼ିଆ ସାହିତ୍ୟରେ ଯେଉଁ ଟ୍ରାଜେଡ଼ି ଚେତନାର ପରିଚୟ ମିଳେ ସେଗୁଡ଼ିକ ମୁଖ୍ୟତଃ ପାରିବାରିକ ଜୀବନକୁ ଅବଲମ୍ବନକରି ପ୍ରକାଶ ହୋଇନ । ମାତ୍ର ଏ ସମୟର ଟ୍ରାଜିକକାବ୍ୟ ନାଟକ ଗୁଡ଼ିକ ପ୍ରକୃତ ଟ୍ରାଜେଡ଼ିର ଧର୍ମକୁ ଗ୍ରହଣ କରିନଥିଲେ ମଧ୍ୟ ସେସବୁ ଟ୍ରାଜେଡି ଅନ୍ତର୍ଗତ ରଚନା-ବୋଲି ଗଣ୍ୟ କରାଯାଏ । ଅବଶ୍ୟ ଏସବୁ କାବ୍ୟ ନାଟକରେ ପାରିବାରିକ ଟ୍ରାଜେଡ଼ି ଜୀବନର ଚିତ୍ର ଆଦୌ ନାହିଁ ବୋଲି କହିହେବନାହିଁ, ବରଂ ପାରିବାରିକ ଜୀବନର ଚିତ୍ର ଚିହ୍ନଟ ଜୀବନଜଳିତ ସମ୍ପର୍କଗୁଡ଼ିକ ଏଇ ସମୟର କୃତି ଗୁଡ଼ିକରେ ଉଲ୍ଲେଖ ଯୋଗ୍ୟ ଭାବରେ ନାହିଁ । କିନ୍ତୁ ପାତ୍ର-ପାତ୍ରୀଙ୍କର ପଦମର୍ଯ୍ୟାଦା ବା ବଂଶପରିଚୟର ବିଶେଷତ୍ୱ ସେମାନଙ୍କ ସୁଖଦୁଃଖ ପରିବାରର ଚତୁଃସୀମାରେ ଆବଦ୍ଧ ରହିପାରିନି,

---

(୩) Three Elizabethan Domestic Tragedies : Keith Strugess, 1969— P. P 18-19.

Digitized by srujanika@gmail.com

ଗୁଷ୍ଟୀୟ ପର୍ଯ୍ୟାୟରେ ବିସ୍ତୃତ ହୋଇଛି ଏବଂ ବ୍ୟାପକ ତାତ୍ପର୍ଯ୍ୟ ଲାଭକରିଛି । ସେକ୍ସ୍‌ପିଅରଙ୍କ ନାଟକଗୁଡ଼ିକରେ ପାରିବାରିକତା ଅନୁଲ୍ଲେଖଯୋଗ୍ୟ ହୋଇଯିବାର ଯେଉଁ କାରଣ ପ୍ରଦର୍ଶିତ ହୋଇଛି ଏଠାରେ ମଧ୍ୟ ସେହି କାରଣ । ପୁନଶ୍ଚ ଏସମୟରେ ମଧ୍ୟ କେତେକ ବିଶୁଦ୍ଧ ପାରିବାରିକ ଟ୍ରାଜେଡି ରଚିତ ହୋଇଛି ଯେଉଁ ଗୁଡ଼ିକରେ ପରିବାର ଜୀବନକୁ ଛାଡ଼ି କୌଣସି ବ୍ୟାପକତର ତାତ୍ପର୍ଯ୍ୟ ଅନୁପସ୍ଥିତ । ସୁତରାଂ ଏ ସବୁ କାବ୍ୟ, ନାଟକରେ ଯେଉଁ ଟ୍ରାଜେଡି ତାକୁ ପାରିବାରିକ ଟ୍ରାଜେଡି କହିଲେ ଚଳିବ ।

ଉନବିଂଶ ଶତାବ୍ଦୀର ଓଡ଼ିଆ ଉପନ୍ୟାସ ଗୁଡ଼ିକ ମୁଖ୍ୟତଃ ଥିଲା ଐତିହାସିକ ରୋମାନସ୍ ଧର୍ମୀ । ଏ ଗୁଡ଼ିକରେ ସତ୍ୟ ସହିତ କଳ୍ପନା ପ୍ରଲେପର ଆଧିକ୍ୟ ହେତୁ ଟ୍ରାଜେଡିର ନ୍ୟୂନତା ସ୍ୱାଭାବିକ ଭାବରେ ପରିଲକ୍ଷିତ । ତଥାପି ଓଡ଼ିଆ ସାହିତ୍ୟର ପ୍ରଥମ ଉପନ୍ୟାସ ପଦ୍ମମାଳୀ (୧୮୮୮) ଓ ପରେ ବିବାସିନୀ (୧୮୯୧)ରେ ଦେଖିବାକୁ ମିଳୁଥିବା ଟ୍ରାଜେଡିକୁ ପ୍ରକୃତ ଟ୍ରାଜେଡି ନ କହି ଟ୍ରାଜେଡିର ଆଭାସ କହିଲେ ଠିକ୍ ହେବ । ମାତ୍ର, ଓଡ଼ିଆ ଉପନ୍ୟାସର ଜନକ ଫକୀର ମୋହନ-ସେନାପତିଙ୍କ 'ଛମାଣଆଠଗୁଣ୍ଠ' ଏକ ସାମାଜିକ ଉପନ୍ୟାସ ହୋଇ ଥିବାରୁ ଏଥିରେ ନାୟକ ନାୟିକାଙ୍କ ଜୀବନଧାରାରେ ଦେଖା ଦେଇଥିବା ଟ୍ରାଜେଡି ହିଁ ପ୍ରକୃତ ଦୁଃଖାତ୍ମକର ଚିତ୍ର । ଫକୀର ମୋହନଙ୍କ ଅନ୍ୟ ଉପନ୍ୟାସ ଗୁଡ଼ିକରେ ଏ ଚିତ୍ର ବିରଳ ନ ହେଲେ ହେଁ, ସ୍ପଷ୍ଟ ନୁହେଁ, କିନ୍ତୁ ସେନାପତିଙ୍କ ପରେ ଅନ୍ୟ ଯେଉଁ ଉପନ୍ୟାସ ସବୁ ରଚିତ ସେ ଗୁଡ଼ିକ ପୁନଶ୍ଚ ଐତିହାସିକ ଓ ସାମାଜିକ । ମାତ୍ର; ଏଗୁଡ଼ିକ ଟ୍ରାଜେଡିଠାରୁ ଭୟରେ ଦୂରେଇ ଯାଇଥିବା ପରି ଜଣାଯାନ୍ତି । ଅତଏବ, କାହ୍ନୁଚରଣ ମୁଖ୍ୟତଃ ସାମାଜିକ ଉପନ୍ୟାସ ଲେଖିଥିବାରୁ ତାଙ୍କ ଉପନ୍ୟାସରେ ପାରିବାରିକ ଟ୍ରାଜେଡିର ଯଥୋପଯୁକ୍ତତାକୁ ଉପଲବ୍ଧି କରାଯାଇଥାଏ ।

## ଭୂମି :

ସାଧାରଣ ମନୁଷ୍ୟର ଘର ସଂସାରର ଚିତ୍ର ହିଁ କାହ୍ନୁଚରଣଙ୍କ ଉପନ୍ୟାସରେ ଚିତ୍ରିତ । ତେବେ ଏହା ମଧ୍ୟରେ ଯେଉଁ ବିଷୟର ବିଶ୍ଳେଷଣରେ କାହ୍ନୁଚରଣଙ୍କ କୃତିତ୍ୱ ତାହା ହେଉଛି ପ୍ରେମ ଏବଂ ମୁଖ୍ୟତଃ ନାରୀର ପ୍ରେମ । ଏହି ନାରୀପ୍ରେମର ସ୍ୱରୂପ, ଗତି, ପ୍ରକୃତି ଏବଂ ନାରୀର ପ୍ରେମକୁ ଅବଲମ୍ବନ କରି ବାହ୍ୟ ସଂସାରରେ ଓ ଦାମ୍ପତ୍ୟ ଜୀବନରେ ଯେଉଁ ଦୁଃଖର ଅସହନୀୟଭାବ ବା ସର୍ବନାଶ ଦେଖାଯାଏ କାହ୍ନୁଚରଣ ତାକୁ ହିଁ ଚିତ୍ରିଛନ୍ତି । ଏଠାରେ ସମାଜ ଅଛି ବ୍ୟକ୍ତି ମଧ୍ୟ ଅଛି । ସମାଜ ସହିତ ବ୍ୟକ୍ତିର ସଂଘାତ ଏବଂ ବ୍ୟକ୍ତି ମଧ୍ୟରେ ପରସ୍ପର ବିପରୀତ ଦୁଇ ମନୋଭାବର ସଂଘାତର ଚିତ୍ର ଅଛି । ଏଇ ସଂଘାତ ଯୋଗୁଁ ହିଁ ମନୁଷ୍ୟ ଜୀବନରେ ନାନା

Digitized by srujanika@gmail.com

ଉଦ୍ଭ୍ରାନ୍ତ ଓ ସଂଶୟ, ଯାହାର ପ୍ରକୋପରେ ଜୀବନରେ କେତେ ବେଦନା, କେତେ ଅଶାନ୍ତି । ଆଧୁନିକ ଜୀବନ ଯାତ୍ରା ମଧ୍ୟରେ ମନୁଷ୍ୟର ଏଇ ଟ୍ରାଜେଡ଼ି ନିହିତ ଏବଂ କାହ୍ନୁଚରଣ ହିଁ ତାଙ୍କ ଉପନ୍ୟାସରେ ମନୁଷ୍ୟ ଜୀବନର ଏଇ ଟ୍ରାଜେଡ଼ିକୁ ସ୍ପଷ୍ଟ କରିଛନ୍ତି । ଏଠାରେ ମନୁଷ୍ୟର ଭୁଲ-ଭ୍ରାନ୍ତି, ଦୁଃଖ-ଦୁର୍ଦ୍ଦଶା ଯେମିତି ତାର ବାସ୍ତବ ମଧ୍ୟରେ ହିଁ ସଂପୂର୍ଣ୍ଣ, ଯେମିତି ସେଇ ଭୁଲ୍-ଭ୍ରାନ୍ତି, ଦୁଃଖ-ଦୁର୍ଦ୍ଦଶାର ପରିଣାମରେ ଯେଉଁ ଟ୍ରାଜେଡି, ସେଇ ଟ୍ରାଜେଡ଼ି ହିଁ ବାସ୍ତବ ମଧ୍ୟରେ ସୀମାବଦ୍ଧ । ଲେଖକଙ୍କ ବସ୍ତୁଚେତନା ଏଠାରେ ଲେଖକଙ୍କୁ ବସ୍ତୁବାହାରକୁ ଯିବାକୁ ଦେଇ ନି । ତାହା ଏଠାରେ ସର୍ବଦା 'Real' ହୋଇ ରହିଛି, 'Idea' ହୋଇ ଉଠିନି । କାହ୍ନୁଚରଣଙ୍କ ଉପନ୍ୟାସରେ ଟ୍ରାଜେଡ଼ିର ଏହାହିଁ ବିଶେଷତ୍ୱ । ପାରିବାରିକ ଜୀବନକୁ ଅବଲମ୍ବନ କରି ରଚିତ ଏଇ ଟ୍ରାଜେଡ଼ି ମଧ୍ୟରେ ଆଧୁନିକ ଟ୍ରାଜେଡ଼ିର ସମସ୍ତ ଲକ୍ଷଣ ହିଁ ବର୍ତ୍ତମାନ ।

ଆଧୁନିକ ଟ୍ରାଜେଡ଼ିରେ ଅନୈସର୍ଗିକଶକ୍ତିକୁ ସ୍ୱୀକାର କରାଯାଏ ନାହିଁ । କାହ୍ନୁଚରଣ ମଧ୍ୟ ସେହିପରି ତାଙ୍କ ଉପନ୍ୟାସରେ ଦୈବ ବା ଆକସ୍ମିକ ଘଟଣା ଉପରେ ନିର୍ଭର କରି ନାହାଁନ୍ତି । ତେବେ ସେ ସମାଜ ଓ ସାମାଜିକ ସଂସ୍କାରକୁ ସ୍ୱୀକାର କରିଛନ୍ତି । ଏଇ ପରିଚିତ ବାସ୍ତବ-ଶକ୍ତି ଯେଉଁ ମନୁଷ୍ୟର ଆକାଂକ୍ଷା ଚରିତାର୍ଥର ଅନ୍ତରାୟ, ତାହା କାହ୍ନୁଚରଣ ପ୍ରଦର୍ଶନ କରିଛନ୍ତି । ତେବେ କାହ୍ନୁ-ଚରଣଙ୍କ ଉପନ୍ୟାସରେ ସାମାଜିକ ସଂସ୍କାର ଏଇ ବଳିଷ୍ଠତା ପୁରୁଷ ଓ ନାରୀ ଚରିତ୍ରଙ୍କ ମଧ୍ୟରେ ସମାନ ଭାବରେ ପ୍ରତିଷ୍ଠିତ । ସଂସ୍କାରର ବଶବର୍ତ୍ତିତା ଉଭୟଙ୍କ ମଧ୍ୟରେ ପ୍ରବଳ । ମାତ୍ର କାହ୍ନୁଚରଣଙ୍କ ନାରୀ ଚରିତ୍ର ବେଶୀ ପ୍ରେମମୟୀ, ତା ହୃଦୟ ମଧ୍ୟରେ ପ୍ରେମପ୍ଲାବନ ଦୁର୍ନିବାର । ସୁତରାଂ ପ୍ରେମର ଉଦ୍ଦୀପନା ଓ ବଳିଷ୍ଠତା ନାରୀମଧ୍ୟରେ ଅଧିକ ଥାଇ ନାରୀକୁ ନିରନ୍ତର ଅସ୍ଥିର ଓ କ୍ଷତବିକ୍ଷତ କରିଛି । ଏଣୁ କାହ୍ନୁଚରଣଙ୍କ ଉପନ୍ୟାସରେ ଟ୍ରାଜେଡ଼ି ମୂଳତଃ ନାରୀର । ଯଦିଓ ବାଲିରାଜା, ଶାସ୍ତି, ଅନ୍ତରାୟ, ଭୁଲ ହୁଏନା ପ୍ରଭୃତି ଉପନ୍ୟାସରେ ପୁରୁଷର ଟ୍ରାଜେଡିକୁ ଅସ୍ୱୀକାର କରାଯାଏ ନା, ତଥାପି ସାମଗ୍ରିକ ଭାବରେ କାହ୍ନୁଚରଣଙ୍କ ଉପନ୍ୟାସରେ ନାରୀର ଟ୍ରାଜେଡି ହିଁ ପ୍ରଧାନ । କାହ୍ନୁଚରଣ ନାରୀକୁ ସର୍ବାଧିକ ଲାଞ୍ଛିତ ମନେ କରିଛନ୍ତି । ପୁରୁଷ ପ୍ରଧାନ ସମାଜରେ ନାରୀର ବିଡ଼ମ୍ବନା ଓ ଅବସ୍ଥାର ସହଜରେ ତାଙ୍କ ମମତାକୁ ଆକର୍ଷି ନେଇଛି । ଆହୁରି ମଧ୍ୟ ଶ୍ରେଷ୍ଠ ମାନବିକ ଗୁଣାବଳୀ ଗୁଡିକୁ ସେ ନାରୀ ମଧ୍ୟରେ ହିଁ ଖୋଜି ପାଇଛନ୍ତି ବୋଲି ନାରୀପ୍ରତି ଶ୍ରଦ୍ଧା ମଧ୍ୟ ରହିଛି ସମ-ପରିମାଣରେ । ସୁତରାଂ ନାରୀର ଟ୍ରାଜେଡ଼ି ଅଙ୍କିବାକୁ ଯାଇ ମମତା ଓ ଶ୍ରଦ୍ଧାରେ କାହ୍ନୁଚରଣ ତାଙ୍କ ଶିଳ୍ପୀମନର ସମସ୍ତ ଅନୁକୂଳ୍ୟ ପ୍ରଦାନ କରିଛନ୍ତି ହେଇ ଶିଳ୍ପ-କର୍ମରେ । ଫଳରେ କାହ୍ନୁଚରଣଙ୍କ ଉପନ୍ୟାସରେ ନାରୀର ଟ୍ରାଜେଡ଼ି ସ୍ୱାଭାବିକତା ଗୁଣରେ ସର୍ବଦା ହିଁ ଆକର୍ଷଣୀୟ ।

Digitized by srujanika@gmail.com

ପଞ୍ଚ :

ପ୍ରସଂଗ କ୍ରମେ କାହ୍ନୁଚରଣଙ୍କ ଉପନ୍ୟାସରେ ନାରୀ ପ୍ରେମରେ ଟ୍ରାଜେଡ଼ି ସୃଷ୍ଟି କରୁଥିବା କାରଣ ଗୁଡ଼ିକୁ ଦର୍ଶାଯାଉ । ୧- ପ୍ରକୃତି / ବିଧାତା ୨- ବୟସ/ଯୌବନ ୩- ନାୟକ / ନାୟିକା ୪- ଖଳନାୟକ/ଖଳନାୟିକା ୫- ସମାଜ / ପରିବେଶ/ପରିସ୍ଥିତି । ସାଧାରଣତଃ ପ୍ରତ୍ୟେକ ଉପନ୍ୟାସରେ ଟ୍ରାଜେଡ଼ି ସୃଷ୍ଟି ହେବା ମୂଳରେ ଉପରୋକ୍ତ କାରଣ ଗୁଡ଼ିକ ନିହିତ ଥିଲେ ହେଁ କାହ୍ନୁଚରଣଙ୍କ ଉପନ୍ୟାସରେ ଏ ସବୁର ବୈଶିଷ୍ଟ୍ୟ ଲକ୍ଷଣୀୟ ।

'ଅଦେଖା ହାତ' ଦାରିଦ୍ର୍ୟ ନିଷ୍ପେଷିତା ଗୀତାର କରୁଣ କାହାଣୀ, ଏ ଉପନ୍ୟାସରେ ଟ୍ରାଜେଡ଼ି ସୃଷ୍ଟି କରିବାରେ ଏକାସଙ୍ଗରେ ପ୍ରକୃତି ଓ ସମାଜର ମେଳ ଘଟିଛି । ଦୁଃଖ ମଧ୍ୟରେ ମଧ୍ୟ ଗୀତା ଆଶାବାଦୀ ହୋଇଛି, ଦାମଭାଇଙ୍କୁ ଭଲ ପାଇଛି । ପିତାଙ୍କ ଇଚ୍ଛା ତଥା ସମାଜର ତାଡନାରେ ଦାମ ଅନ୍ୟକୁ ବିବାହ କଲେ ମଧ୍ୟ ଗୀତାର ଆକର୍ଷଣ କମି ଯାଇନି । ନିଜ ପିତାଙ୍କ ମୃତ୍ୟୁ ପରେ ପୁନର୍ବାର ଗୀତା ଜୀବନରେ ଦୁଃଖର ଢେଉ ଉଠିଛି । ଦାମଭାଇଙ୍କୁ ସମ୍ପୂର୍ଣ୍ଣ ହରାଇବାର ଆଶା ତାର ମଉଳି ଯାଇଛି । କ୍ରମେ ନୈରାଶ୍ୟ ଭିତରେ ମଧ୍ୟ ଗୀତାଙ୍କୁ ଦାମଭାଇଙ୍କ ଆଲୋଚନା ଗୀତା ପ୍ରତି ଘୋର ସହାନୁଭୂତିଶୀଳତାକୁ ପ୍ରମାଣ କରିଛି । ଖଳ ଲୋକଙ୍କ ତୁଚ୍ଛା ଅପବାଦରେ ମଧ୍ୟ ଗୀତା ସର୍ବସଂହା ଧରିତ୍ରୀ ପରି ଅଟଳ ରହିଛି । ଏଣୁ ଭାଗ୍ୟ ଓ ଭଗବାନଙ୍କ ଉପରେ ଗଭୀର ଆସ୍ଥା ପୋଷଣ କରି ସେ ଆଶାବାଦୀ ହେବା ସ୍ୱାଭାବିକ । ଏଠାରେ ପ୍ରତ୍ୟକ୍ଷ ଭାବରେ ଔପନ୍ୟାସିକ ଗୀତା ଜୀବନର ଟ୍ରାଜେଡ଼ିକୁ ଉପସ୍ଥାପନ କରି ନାହାଁନ୍ତି କି ? ପୁନଃବାର ଏଥିରେ ମଧ୍ୟ ଔପନ୍ୟାସିକ ଗୀତା ଜୀବନର ପ୍ୟାଥେଟିକ୍ ଟ୍ରାଜେଡ଼ିକୁ ଶେଷ କରି ଦେଇ ନାହାଁନ୍ତି, କାରଣ ସେ ଉତ୍ତମ ରୂପରେ ଜାଣି ନେଇଛନ୍ତି ପାଠକ ଅଧିକ ଅନେକ ଜାଣିବାକୁ ଚାହୁଁଛି, ତେଣୁ କାହ୍ନୁଚରଣ ଗୀତା ସହ ରଜମଣ୍ଡ ଗୁଲିଆ ଜଟିଆର ନିର୍ବନ୍ଧ ଘଟାଇଛନ୍ତି । ଗୀତା ଭଲ ଭାବରେ ଜାଣେ ଜଟିଆ ସହିତ ତା ର ବିବାହ ହେଲେ ସେ ସାମାନ୍ୟ ମଧ୍ୟ ଶାନ୍ତି ପାଇ ପାରିବନି । କିନ୍ତୁ ଗାଁର ଦୁର୍ନାମକୁ ଆଖି ଆଗରେ ରଖି ସେ ବାଧ୍ୟ ହୋଇଛି । ସବୁ ସମୟରେ ଅତୀତ ଆଶାର ପ୍ରେତାତ୍ମା ତା ପାଖରେ ଠିଆ ହୋଇଛି । ହେଲେ ସେ ନିରୁପାୟ । ଏ ସବୁର ଅର୍ଥ କେବଳ ଦାମଭାଇ ବୁଝିନ୍ତି ଯେମିତି ଟ୍ରାଜେଡି ନାୟକର ଦୁଃଖକୁ ବି ଜଣେ ସମବେଦନା ଜଣାଏ ଠିକ୍ ସେଇ ନ୍ୟାୟରେ ।

'ଭୁଣ୍ଡବାଇଦ' ଉପନ୍ୟାସରେ ନାରୀ (ତୁଳସୀ) ହୃଦୟରେ ଯେଉଁ ଭାବଧାରା କାର୍ଯ୍ୟ କରୁଛି ତାହା କେବଳ ସାମାଜିକ ନିନ୍ଦା ଭୟରେ । ଲୋକନିନ୍ଦା ନାରୀକୁ ତାର

Digitized by srujanika@gmail.com

ଅଭିପ୍ରାୟ ବିରୁଦ୍ଧରେ ପ୍ରବେଶ କରିଛି । ତୁଳସୀ ଅନେକ ଦ୍ୱିଧା-ଦ୍ୱନ୍ଦ୍ୱ ସତ୍ତ୍ୱେ ସୁରର ଇଚ୍ଛା ପରିପନ୍ଥୀ ଯେଉଁ କାର୍ଯ୍ୟ କରି ପାରିଥିଲା ତାହା କେବଳ ସମାଜ ଭୟରେ । ବିଧବାର ପ୍ରେମରେ କୌଣସି ସାମାଜିକ ସ୍ୱୀକୃତି ନାହିଁ, ବରଂ ନିନ୍ଦା ଅଛି । ସୁତରାଂ ସମାଜର ମାରାତ୍ମକ ନିନ୍ଦାଠାରୁ ଆତ୍ମରକ୍ଷା କରିବାକୁ ତୁଳସୀକୁ ପ୍ରମାଣ କରିବାକୁ ହେବ ଯେ ସେ ସୁରର ପରିତ୍ୟକ୍ତା ନୁହେଁ ଏବଂ ସେଇ ଉଦ୍ଦେଶ୍ୟରେ ତାକୁ ସୁର ବିରୁଦ୍ଧରେ ଯିବାକୁ ହେଉଛି । ସମାଜର ରକ୍ତଚକ୍ଷୁ ନିକଟରେ ପ୍ରେମର ଏଇ ଲାଞ୍ଛନା, ଆପଣାର ଲୋକପ୍ରତି ଏ ବିଡ଼ମ୍ବନା— ଏହା ମଧ୍ୟରେ ଯେଉଁ ଗଭୀର ବେଦନାଟି ରହିଛି, ବିଧବା ନାୟିକାର ଟ୍ରାଜେଡ଼ି ହିସାବରେ କାହ୍ନୁଚରଣ ତା ପ୍ରତି ଆଙ୍ଗୁଳି ଦେଖାଇଛନ୍ତି ।

ତୃତୀୟ ବାଇଦ ସହସ୍ର କୋଶ । ସମାଜ ସମସ୍ତ ସମସ୍ତରେ ଭଲକୁ ମନ୍ଦ ଭାବରେ ଗ୍ରହଣ କରେ । ଫଳରେ ନିଜର ଲୋକଙ୍କୁ ତୁଳସୀ ପର ବିଧବା ଭୁଲି ଯିବାକୁ ଚେଷ୍ଟା କରୁଛି, ହେଲେ ତାର ମର୍ମବେଦନା ବୁଝିବାକୁ କେହି ଆଗେଇ ଆସୁ-ନାହାଁନ୍ତି । ଏ ପ୍ରକାର ବର୍ଣ୍ଣନାରେ କାହ୍ନୁଚରଣ ପୁରୁଖା ଶିଳ୍ପୀପରି ଜଣା ଯାଆନ୍ତି ।

ଏମିତି ଭାବରେ କାହ୍ନୁଚରଣଙ୍କ ସୁବିଶାଳ ଉପନ୍ୟାସସୌଧ ଉପରେ ପଲ୍ଲବ ସ୍ପର୍ଶ ସ୍ୱରୂପ ସଂକ୍ଷିପ୍ତ ମନ୍ତବ୍ୟ ଦେଇ ତାଙ୍କ ଉପନ୍ୟାସରେ ଟ୍ରାଜେଡ଼ିର ସ୍ୱରୂପ-ବୈଶିଷ୍ଟ୍ୟ ସଂପର୍କରେ ସ୍ପଷ୍ଟ ଧାରଣା କରିବା ସଂଭବ ନୁହେଁ । ତେଣୁ ଏ ଚେଷ୍ଟା ପରିବର୍ତ୍ତି କେତୋଟି ଉପନ୍ୟାସର ବିସ୍ତୃତ ଆଲୋଚନା କଲେ ବରଂ କିଛି ଲାଭ ଅଛି । ଏ ଉଦ୍ଦେଶ୍ୟରେ ଆମେ 'ହା-ଅନ୍ନ', 'ଏପାରି ସେପାରି', 'ଝଂଜା', 'ଡମଯା ତୀରେ', ଉପନ୍ୟାସକୁ ବାଛି ନେଇପାରୁ । ଏଇ କେତୋଟି ଉପନ୍ୟାସରେ କାହ୍ନୁଚରଣ ନାରୀ ପ୍ରେମର ଟ୍ରାଜେଡ଼ି ଆଙ୍କିଛନ୍ତି । ଏଇ ପ୍ରେମଚିତ୍ର ଅଙ୍କନରେ ବିଶେଷତଃ ଟ୍ରାଜିକ୍ ଚିତ୍ର ପ୍ରଦାନରେ କାହ୍ନୁଚରଣଙ୍କ କୃତିତ୍ୱ ଅପରିସୀମ ।

କେତେକ ସମାଲୋଚକଙ୍କ ମତରେ ହା-ଅନ୍ନ' କାହ୍ନୁଚରଣଙ୍କ ପ୍ରତିଭାର ବଳିଷ୍ଠ ସ୍ୱାକ୍ଷର । କାରଣ ଏହାର ବାସ୍ତବତା ହିଁ ସାମାଜିକ ବାସ୍ତବବାଦଭଳି ନୂଆ ଧାରାର ପରିଚୟ ଦେଲା । ଏହାଅବଶ୍ୟ ଅନସ୍ୱୀକାର୍ଯ୍ୟ ଯେ ୧୮୬୬ ମସିହାର ନଅଙ୍କ ଦୁର୍ଭିକ୍ଷର ପଟ୍ଟଭୂମିକୁ ନେଇ ରଚିତ ଯେତେସବୁ କୃତି ତା ମଧ୍ୟରେ 'ହାଅନ୍ନ'ର ଭୂମିକା ଏକ ସ୍ୱତନ୍ତ୍ରଆସନ ଦାବୀ କରେ, କେବଳ ତାର ମାର୍ମିକ ଆବେଦନ ଆଉ କଳାପୂର୍ଣ୍ଣ ସଙ୍ଗଠନ ଓ ବିମୋଚନ ଯୋଗୁଁ । ବର୍ତ୍ତମାନ ଓଡ଼ିଆ ସାହିତ୍ୟରେ ସାମାଜିକବାସ୍ତବ ବାଦନେଇ ଅନେକ ଗ୍ରନ୍ଥ ଲେଖା ହେଲଣି । ଏଣୁ 'ହାଅନ୍ନ'କୁ

Digitized by srujanika@gmail.com

ବାସ୍ତବବାଦ ଦୃଷ୍ଟିକୋଣରୁ ସମାଲୋଚନା ନ କରି, ଏହା ଅର୍ଦ୍ଧ ସମ୍ପର୍କରେ ବା ଶିଳ୍ପ-ସିଦ୍ଧି ସମ୍ପର୍କରେ ଆଲୋଚନା କରାଯାଉ । ପ୍ରତ୍ୟେକ ଶିଳ୍ପର ଗୋଟିଏ ରସ-ପରିଣାମ ଥାଏ । ଗୋଟିଏ ସୁସ୍ପଷ୍ଟ ରସସୃଷ୍ଟି ଦିଗକୁ ଲକ୍ଷ୍ୟରଖି ସମସ୍ତ ଶିଳ୍ପ ରଚିତ ହୋଇଥାଏ, ସେଇ ରସର ବସ୍ତୁର ହିଁ ଶିଳ୍ପର ବସ୍ତୁର । 'ହ୍ରାଅନ୍ନ' ଉପନ୍ୟାସର ଏଇ ରସ-ପରିଣାମ କେତେକାଂଶରେ ଟ୍ରାଜିକ୍ । ସୁତରାଂ ଏଇ ଉପନ୍ୟାସର ଟ୍ରାଜିକ୍ ରସର ବସ୍ତୁର ଏ ଉପନ୍ୟାସର ଶିଳ୍ପବସ୍ତୁରର ହିଁ ଗୋଟିଏ ପର୍ଯ୍ୟାୟ ।

ମୂଳତଃ ଏ ଉପନ୍ୟାସରେ ଦୁଇଟି ଚରିତ୍ରକୁ ଅବଲମ୍ବନକରି ଟ୍ରାଜେଡ଼ି ସ୍ଥାନ ଲାଭ କରିଛି । ଗୋଟିଏ ଉମା ଅନ୍ୟଟି ଦୀନବନ୍ଧୁ ଜମିଦାର । ଏ ଉପନ୍ୟାସରେ ଟ୍ରାଜେଡି ସୃଷ୍ଟି କରିବାରେ ପ୍ରେମର ଭୂମିକା ଗୌଣ ହେଲେ ହେଁ ଏହା ସ୍ଥିର ନିଶ୍ଚିନ୍ତ ଯେ କାହ୍ନୁଚରଣଙ୍କ ଏହ ପ୍ରେମ ହିଁ ସାର୍ଥକ ଚରିତ୍ର ସୃଷ୍ଟି କରିବାରେ ସମର୍ଥ କରାଇଛି । ପ୍ରକୃତିର ଅଟ୍ଟହାସ୍ୟକୁ ସଂଗ୍ରାମ ଉମା ଓ ଜଗୁର ପ୍ରେମ ବଢ଼ିଚାଲେ । ମାତ୍ର ଏଥିପାଇଁ ପ୍ରତିବନ୍ଧକ ହୋଇ ଦେଖାଦିଅନ୍ତି ଜଗୁର ବାପା ଦୀନବନ୍ଧୁ ପ୍ରଧାନ ।

ଉମା ପିଲାଦିନରୁ ଦୁଃଖିନୀ, ପିତୃହରା ବାଳିକା । ଆତ୍ମଚେତନା ତା ମଧ୍ୟରେ ପ୍ରବଳ ହେଲେହେଁ ଚିରାଚରିତ ଔଚିତ୍ୟ-ଅନୌଚିତ୍ୟକୁ ସେ ଅସ୍ୱୀକାର କରିପାରେ ନାହିଁ । ସମଷ୍ଟି ମଧ୍ୟରେ ବ୍ୟକ୍ତିସତ୍ତାକୁ ସିଏ ଗୁରୁତ୍ୱ ଦିଏ । ଏଣୁ ଜଗୁକୁ ଭଲପାଇବା ମଧ୍ୟରେ ସୃଷ୍ଟିହୁଏ ଆଭିଜାତ୍ୟ ଓ ଜାତିର ବ୍ୟବଧାନ । ଏଇ ଟ୍ରାଜିକ୍ ସଙ୍କଟକାଳରେ ଜଗୁ ତାକୁ ସମାଜ-ନିରପେକ୍ଷ ଭାବରେ ବିବାହ କରିବାକୁ ଚାହେଁ, ମାତ୍ର ତ ର ବାପା ଏଥିରେ ଅମ୍ମତ ହେବାରୁ ଜଗୁ ଘରଛାଡ଼ି ମାମୁଁ ଘରକୁ ଚାଲିଯାଏ । ଏ ସମସ୍ତର ବିପର୍ଯ୍ୟସ୍ତ ଟ୍ରାଜେଡ଼ି ଉମା ପକ୍ଷରେ କମ୍ କଷ୍ଟ ତଥା ଦୁଃଖଦାୟକ ନୁହେଁ । ଉମା ଜଗୁପାଇଁ ସବୁ ସମୟରେ ଚିନ୍ତାକରେ, ହେଲେ ମନର ମଣିଷକୁ ନ ପାଇ ବିରହରେ ଘାରିହୁଏ । ପୁନଃଶ୍ଚ ତା'ର ଏ ବିରହ ବେଳାରେ ତା'ଉପ୍ ଦାଦା ଓ ଖୁଡ଼ୀଙ୍କର ଅତ୍ୟାଚାର ଦିନକୁ ଦିନ ବଢିଚାଲେ । ତା'ର ଅବହେଳିତା ବୋଧ ମୁକ୍ତିବରଣ କରେ । ବର୍ତ୍ତମାନ ଦୁର୍ଭିକ୍ଷର ସର୍ବଗ୍ରାସୀ କରାଳ ପ୍ରକୃତି ଉମାକୁ ଘରୁ ଅଲଗା କରିଦିଏ । ସଂପ୍ରତି ଉପନ୍ୟାସର ଶେଷପର୍ବ ପ୍ରାୟ ଆଗତ । ମାତ୍ର ରସସୃଷ୍ଟି ନିମିତ୍ତ ଔପନ୍ୟାସିକ ମଠ ମହନ୍ତ ସଦାନନ୍ଦର ସାନ୍ନିଧ୍ୟ ଲୋଡ଼ନ୍ତି । ଉମା ସଦାନନ୍ଦକୁ ମନ ନଦେଇ ଦେହଦିଏ । ଏଠାରେ ପ୍ରେମନାହିଁ, ଅଛି କେବଳ ଦୈହିକ ଲାଳସା, ଯାହା ଉମା ପକ୍ଷରେ ଏଡ଼ାଇଦେବା ସହଜସାଧ୍ୟ ନଥିଲା । ଉମାକୁ ଖୋଜିବାକୁ ଯାଇ ଜଗୁ ଉପସ୍ଥିତ ହୁଏ ସେଇ ମଠରେ । ଉମା ଜଗୁର ନିସ୍ତେଜ ମୁହଁକୁ ଚାହିଁପାରି ଦୁଃଖ କରେ ପୁଣି ଖୁସି ହୁଏ, ଆଉ ଜଗୁ ମଧ୍ୟ ଉମାକୁ ଆଦର କରେ ।

Digitized by srujanika@gmail.com

ଏଇ ଯେଉଁ ଦୁଃଖକର ଆତ୍ମଜୟ, ଏହା ଦୁଃସହ ସଂଗ୍ରାମଜର୍ଜର । ଉମା ଏ ସଂଗ୍ରାମ ମଧ୍ୟଦେଇ ଅବଶେଷରେ ଜୀଇଁଛନ୍ତି । ତାର ବିଜୟ ତାକୁ ଯେତକ ସମ୍ମାନ ଦେଇଛି, ସେତକ ଦୁଃଖମଧ୍ୟ ଦେଇଛି । ଫଳରେ ସେ ଲାଭ କରିଛି ଆମମାନଙ୍କର ପ୍ରଶଂସା ଓ ସହାନୁଭୂତ ଦୁଇଟି । ଏଇ ଦୁଇଟି, ଉଚ୍ଚାଙ୍ଗ ଟ୍ରାଜିକ୍ ଚରିତ୍ରର ଲକ୍ଷଣ । ଏଠାରେ ଯେଉଁ ଶକ୍ତି ଉମାକୁ ଟ୍ରାଜେଡ଼ି ମଧ୍ୟରେ ନେଇ ଯାଇଥିଲା, ତାର ବର୍ତ୍ତମାନ ଅବସ୍ଥାନ ଉମା ହୃଦୟରେ ହେଲେ ହେଁ ତାର ଉତ୍ସ ସାମାଜିକପ୍ରଥା ଓ ସଂସ୍କାର । ଯଦିଓ କାହ୍ନୁଚରଣ ଏ ସଂସ୍କାରରେ ସଫଳ ନୁହଁନ୍ତି ତଥାପି ସେ ସଂପୂର୍ଣ୍ଣ ପ୍ରସ୍ତାସୀ ଥିବାପରି ଜଣାଯାନ୍ତି । ଆଧୁନିକ ଇଉରୋପୀୟ ଟ୍ରାଜେଡ଼ିରେ ସମାଜର ଅବସ୍ଥା ଓ ବ୍ୟବସ୍ଥାକୁ ହିଁ ମନୁଷ୍ୟର ଶତ୍ରୁରୂପେ ଦେଖାଇ ଦିଆଯାଇଛି । କିନ୍ତୁ କାହ୍ନୁଚରଣଙ୍କ ଉପନ୍ୟାସରେ ସମାଜର ଶକ୍ତି ମନୁଷ୍ୟର ବିବେକବୁଦ୍ଧିକୁ ବାଧାଗ୍ରସ୍ତ କରେ; ଫଳରେ କାହ୍ନୁଚରଣଙ୍କ ଉପନ୍ୟାସରେ ଦ୍ୱନ୍ଦ୍ୱ-ଯନ୍ତ୍ରଣାର ଅବକାଶ ସୃଷ୍ଟ ହୋଇ ଟ୍ରାଜେଡ଼ିର ସଂଭାବନା ବୃଦ୍ଧି ପାଇଛି ।

ସର୍ବୋପରି 'ହାଅନ୍ନ' ର ଟ୍ରାଜେଡି ସଂପର୍କରେ ଏତକ କହିଲେ ବୋଧହୁଏ ଠିକ୍ ହେବ ଯେ ଏହା ଏକ ପୁନରୂପିତ ଆତ୍ମତନରେ ସଂଘଟିତ ରୋମାଣ୍ଟିକ୍ ଟ୍ରାଜେଡ଼ି ।

'ଏପାରି ସେପାରି' ଉପନ୍ୟାସ କାହ୍ନୁଚରଣଙ୍କ ଅନ୍ୟତମ ଅମଳିନକୀର୍ତ୍ତି 'ଶାସ୍ତି' ସମୟରେ ଲିଖିତ ଆଉ ପ୍ରକାଶିତ (୧୯୪୭) ମଧ୍ୟ ଗୋଟିଏ ସମୟରେ । ମାତ୍ର ଏ ଦୁଇଟିରେ ତଫାତ୍ତି ଅନେକ । ମୁଖ୍ୟ ତଫାତଟି ହେଲା 'ଶାସ୍ତି'ରେ ନାୟକ ସନିଆଁ ନାୟିକା ଧେ ବାକୁ ବେଶି ଭଲ ପାଇଛି ଆଉ 'ଏପାରି ସେପାରି' ରେ ନାୟିକା ପେଚ ଅଧିକ ଭଲ ପାଇଛି ନିଜର ନାୟକ ମଣିଆକୁ । ଏତଦ୍‌ବ୍ୟତୀତ ଅନ୍ୟ ପାର୍ଥକ୍ୟଗୁଡ଼ିକ ଆଲୋଚନା କରିବା ଦରକାର ନାହିଁ ।

ପେଚ ଗ୍ରେଣୀ ହେଲେ ବି ପ୍ରେମ ତାର କାମନା । ବିବାହିତା ହୋଇ ମଧ୍ୟ ସେ ହୋଇଛି ସ୍ୱାମୀପରିତ୍ୟକ୍ତା । ଆଉ ଯେଉଁ ଆଦର୍ଶଟି ତା ପାଟରେ ନିହିତ ତାହାହେଲା ପରିତ୍ୟକ୍ତା ହୋଇ ମଧ୍ୟ ସ୍ୱାମୀର ଶୁଭକାମନା କରିବା । ମଣିଆଁର ସ୍ତ୍ରୀ ଚଂପାର କାଚ ଚିକ୍କ ହେଉ, ସଂସାରର ସବୁ ଅଭିଶାପ ଭଗବାନ ତା ନିଜ ମୁଣ୍ଡରେ ଓଜାଡ଼ିଦିଅନ୍ତୁ—ଏହାଥିଲା ତାର ଭଗବାନଙ୍କ ନିକଟରେ ମିନତି । ପେଚ ଥିଲା ଦଶ ବର୍ଷ ବୟସରୁ ମାତୃହରା । ତେଣୁ କମାବ ସାନଭାଇ ଚଇଁଆକୁ ମଣିଷ କରିବା ଦାୟିତ୍ୱ ତା ଉପରେ ପଡ଼ିଥିଲା । ଚଇଁଆ ବଡ଼ହୋଇ ବାହାହେଲା ପୁଣି ସ୍ତ୍ରୀ ବୁଦ୍ଧିରେ ଘଡ଼ି ପେଚକୁ ମାଡ଼ଦେଲା । ମାତ୍ର ଚଇଁଆର ମାଡ଼ ହେଲା ପେଚ ପାଇଁ ଦେହସୁହା ।

Digitized by srujanika@gmail.com

ଯାଇ ପତ୍ନଶାରେ ତାହାରି ନିକଟରେ ମାଡ଼ ଖାଇବା କଥା ଲୁହେ ନାହିଁ, ଏମିତ କି ଗାଁ ମାଇପେ ପସ୍ତରିଲା ପରେ ବି ସେ ଏକଥା ତାହା ଆଗରେ ପ୍ରକାଶ କରେନାହିଁ । ଚଇଁଆକୁ ତୁଆ ଭଳେ ଗଣନା କରି ସବୁକଥା ଲୁଚେଇ ରଖେ । କିନ୍ତୁ ଏସବୁ ଭିତରେ ପେଟର ଅନ୍ତରଗ୍ନାମଣିଆଁ ପାଇଁ ବ୍ୟାକୁଳ ହୋଇ ମଧ୍ୟ ନିରୁପାୟ । ବସ୍ତୁସ ସହିତ ମନ ବର୍ଦ୍ଧି ଅତୀତର କଥାକୁ ମନେ ପକାଇ ଦୁଃଖ କରେ ।

ଉକ୍ତ ଉପନ୍ୟାସରେ ପ୍ରେମର ଟ୍ରାଜେଡ଼ି ମୁଖ୍ୟ ନ ହେଲେ ମଧ୍ୟ ଗୌଣ ନୁହେଁ । କାରଣ କେବଳ ସଚେତନ ପାଠକ ହିଁ ଏ ପ୍ରକାର ଟ୍ରାଜେଡ଼ିକୁ ଗ୍ରହଣ କରି ପାରେ ।

'ଝଂଜା'ରେ ସୃଷ୍ଟ ଟ୍ରାଜେଡ଼ିକୁ ନାରୀ ପ୍ରେମର ଟ୍ରାଜେଡ଼ି ବୋଲି କୁହାଯାଇ ନ ପାରେ । ଯଦିଓ ଏଥିରେ କ୍ଷଣପ୍ରଭାଙ୍କ ପ୍ରେମ ଅଂଧ ସ୍ୱାମୀ ତୁଷାର କାନ୍ତଙ୍କ ପ୍ରତି ଅକପଟ । ଏ ଉପନ୍ୟାସରେ ନାରୀ ପ୍ରତି ବୃଥା ସନ୍ଦେହ ହିଁ ହୋଇଛି ଟ୍ରାଜେଡ଼ିର କାରଣ । 'ଝଂଜା'ର ନାୟିକା କ୍ଷଣପ୍ରଭା ଶିକ୍ଷିତା ଓ ଧୈର୍ଯ୍ୟଶୀଳା । ଭଲ ମନ୍ଦ ଚିନ୍ତାକରି ସବୁ କଥା କରନ୍ତି । ଦୁଃଖୀ ଦରିଦ୍ରଙ୍କ ସେବାରେ ମନପ୍ରାଣ ଢାଳି ଦିଅନ୍ତି, ଏସବୁ ସତ୍ତ୍ୱେ ସେ ହୁଅନ୍ତି ନିନ୍ଦାର ଶିକାର । ସ୍ୱାଙ୍କ ନାଁରେ ଦୁର୍ନାମ ରଟନା କରିବାରେ ଦେଖା ଦିଅନ୍ତି ହେମାଙ୍ଗିନୀ । ଭଲକୁ ମନ୍ଦ ନକହିଲେ ଖଲଲୋକଙ୍କର ଖାଦ୍ୟ ହଜମ ହୁଏ ନାହିଁ । ଏହା ସଂସାରର ଅନ୍ୟ ଏକ ନିୟମ । କ୍ଷଣପ୍ରଭା ଭଲ ହୋଇ ଖରାପ ହୋଇଛି ହେମାଙ୍ଗିନୀଙ୍କ ପରି କେଇଜଣ ଖଲ ଲୋକଙ୍କ ଚକ୍ଷୁରେ । କ୍ଷଣପ୍ରଭା ଆତ୍ମତ୍ୟାଗ ଓ ସେବାର ଏକ ମୂର୍ତ୍ତି ପ୍ରତୀକ । ମାତ୍ର ଦୁନିଆ ନିନ୍ଦା ତାଙ୍କ ଅବଚେତନ ମନରେ ବାଧା ଦେଇଛି । ଅନ୍ୟ ପକ୍ଷରେ ଅନ୍ଧ ସ୍ୱାମୀଙ୍କ ନିକଟରେ ବିପରୀତ ଗୁଣକୁ ଦେଇ ଔପନ୍ୟାସିକ କ୍ଷଣପ୍ରଭାଙ୍କୁ ଅଧିକ ଦୁଃଖ ଦେଇଛନ୍ତି । ଏ ପ୍ରକାର ଟ୍ରାଜେଡ଼ି ସଂଯୋଜନାରେ ଔପନ୍ୟାସିକଙ୍କ ବାଧ୍ୟବାଧକତା ଢ଼ଙ୍ଗ ଜଣା-ଯାଇଥାଏ ।

କେବଳ ବନ୍ଧୁ ହେମାଙ୍ଗିନୀଠାରୁ କ୍ଷଣପ୍ରଭା ନିନ୍ଦା ସହି ନାହାଁନ୍ତି, ଅତି ଆଦରର ନଣନ୍ଦ ନିହାରିକା ମଧ୍ୟ ସନ୍ଦେହ କରିଛି କ୍ଷଣପ୍ରଭାଙ୍କୁ । ତାହିଁକି ଭାଉଜ ଦୁଷ୍ମନ୍ତ ବାବୁଙ୍କ ସହିତ ମିଶନ୍ତି ? ଏ ପ୍ରକାର ସନ୍ଦେହ ଭିତରେ ନିହାରିକାର ଉଦ୍ଦେଶ୍ୟ ଥାଏ ଭାଉଜ ଭାଇଙ୍କୁ ସ୍ୱାମୀ ଭାବରେ ଆଦର୍ଶ କରି ଦୁଷ୍ମନ୍ତଙ୍କୁ ପତି ଭାବରେ ପାଇଛନ୍ତି । ହେଲେ ସବୁ ନିନ୍ଦା, ସନ୍ଦେହକୁ ସହ୍ୟକରି କ୍ଷଣପ୍ରଭା ନିଜ କର୍ତ୍ତବ୍ୟରେ ଆଗେଇ ଯାଇଛନ୍ତି, କେବଳ ସ୍ୱାମୀ ତୁଷାରକାନ୍ତଙ୍କଠାରୁ ଆଦର ପାଇବା ପାଇଁ ! କିନ୍ତୁ ଆଦର ମିଳିଲା କେଉଁଠି ? ଆଦର ନ ପାଇ କ୍ଷଣପ୍ରଭାଙ୍କ ଟ୍ରାଜେଡ଼ି ଦ୍ୱିଗୁଣିତ

Digitized by srujanika@gmail.com

ହୋଇଯାଇ ନାହିଁ କି ? ଅଭ ମଧ୍ୟ ନନ୍ଦାସୀକା ଓ ହେମାଙ୍ଗିନୀଙ୍କର ସନ୍ଦେହକୁ ଏହି ଅନାଦାର ବଢେଇ ଦେଇ ନାହିଁ କି ? ଏଣୁ ପରିବାର ଗ୍ରନ୍ଥି ଦାଣ୍ଡକୁ ଆସିବା ପାଇଁ କ୍ଷଣପ୍ରଭା ବାଧ୍ୟ ହୋଇଛନ୍ତି ।

ପୂର୍ବ ଆଲୋଚନା ଅନୁଯାୟୀ ଏ ଉପନ୍ୟାସ କାହ୍ନୁଚରଣଙ୍କ ପାରିବାରିକ ଟ୍ରାଜେଡ଼ିର ସ୍ରଷ୍ଟା ଭାବରେ ପ୍ରତିଷ୍ଠା ଦିଏ । କ୍ଷଣପ୍ରଭା ପରି ନାରୀ ଚରିତ୍ର ନିକଟରେ ଏ ପ୍ରକାର ଦୁଃଖ ଦେଖିବା ପାଇଁ ପାଠକ ଅନିଚ୍ଛୁକ ଥିବା ସମୟରେ ଔପନ୍ୟାସିକ ଗୋଟିଏ ପରିବାରର ଘନଘଟା ମଧ୍ୟରେ ଟ୍ରାଜେଡିର ଚିତ୍ର ଦେଇଛନ୍ତି । ଉପନ୍ୟାସର କେତୋଟି ପରିଚ୍ଛେଦପରେ ଏ ଟ୍ରାଜେଡିର ସ୍ୱରୂପ ସ୍ପଷ୍ଟ ହୋଇ ଯାଉଥିଲେ ହେଁ କାହ୍ନୁଚରଣ ନାଟକୀୟ ଭାବରେ ପାଠକର ମନକୁ ଧରି ରଖିବା ପାଇଁ ଏହି ଟ୍ରାଜେଡ଼ିକୁ ଆଗେଇ ନେଇଛନ୍ତି ।

ବର୍ତ୍ତମାନ କାହ୍ନୁଚରଣଙ୍କ ଉପନ୍ୟାସର ଟ୍ରାଜେଡି ପ୍ରସଙ୍ଗରେ 'ତମସାତୀରେ' ଉପନ୍ୟାସକୁ ନିଆଯାଉ । 'ତମସାତୀରେ' ଉପନ୍ୟାସରେ ରୋମାଣ୍ଟିକ ପ୍ରେମର ଟ୍ରାଜେଡ଼ି ନାହିଁ, ଅଛି କେବଳ ନିଜ ଦୁଃଖକୁ ପ୍ରକାଶଗତ ଟ୍ରାଜେଡି । ଏଠାରେ ଦୁଇ ଜଣ ନାରୀଙ୍କ ପାଖରେ ଟ୍ରାଜେଡ଼ି ସ୍ପଷ୍ଟ ହୋଇଛି । ସେମାନେ ହେଲେ ଅନ୍ନମାଦେବୀ ଆଉ କମଳାଦେବୀ । ଅନ୍ନମାଦେବୀ ସର୍ବହରା, ମାତ୍ର ଗୋଟିଏ ପୁଅକୁ ଓ ଝିଅକୁ ଦାଅର ଓ କନ୍ୟାରୂପେ ପାଇ ନିଜ ଜୀବନର ଦୁଃଖକୁ ଭୁଲି ଯାଇଛନ୍ତି । ଏକ ଭଦ୍ରବାସ୍ତୁ ସମାଜରେ ରହି ବିଭିନ୍ନ ଲୋକଙ୍କ ସଂପର୍କରେ ଆସି ହାସଲ କରିଥିବା ଅଭିଜ୍ଞତା ତାଙ୍କୁ ସହିବାପଣ ଶିଖାଇଛି । ବିଶେଷକରି କମଳାଦେବୀଙ୍କ କହିବା 'ଦିଅରମାନେ ତ ପତିଙ୍କ ସମାନ, ତମେ ତାଙ୍କୁ ନିଜର କରିନେଲେ କଣ ଚଳନ୍ତା ନାହିଁ' କୁ ସେ ସହିଛନ୍ତି । କମଳାଦେବୀ ନିଜର ଭୁଲ୍ ବୁଝି ଅନ୍ନମାଙ୍କୁ କଲ୍ୟାଣ କରିଛନ୍ତି "ସତୀ ସାଧ୍ୱୀ ସାନ ଭଉଣୀ ରୁ ମୋର । ମୁଁ କଲ୍ୟାଣ କରୁଛି, ତୋ ହାତର କାଚ ବଜ୍ରହେଉ, ତୋ ମୁଣ୍ଡର ସିନ୍ଦୂର ସକାଳର ଲାଲ ସୂର୍ଯ୍ୟପରି ଚିରଦିନ ଝଟକୁ ଥାଉ ।" କିନ୍ତୁ ଏ ପ୍ରକାର ପ୍ରଶଂସାରେ ଅନ୍ନମାଦେବୀ ଆତ୍ମବିଭୋର ହୁଅନ୍ତି କି ? ବରଂ ପଞ୍ଚବଟୀ ବଣରେ ସମତ୍ୟାଗୀ ସୀତାଙ୍କ ସଦୃଶ ତାଙ୍କ ହୃଦୟର କୋହ ତାଙ୍କୁ ଅତୀତ ସ୍ମୃତିକୁ ମନେପକାଇଦିଏ । ସେ ମନେମନେ ନିଜର ପତିଦେବତା ଅଧରମଣ୍ଡଳଙ୍କ ଫେରିବା କଥା ଚିନ୍ତାକରନ୍ତି । ଟ୍ରାଜେଡ଼ିର ଉଦ୍ଦେଶ୍ୟ ବିଦଗ୍ଧପାଠକକୁ ଆନନ୍ଦ ଦେବା, ଏଣୁ କମଳାଦେବୀଙ୍କ ଉକ୍ତି ଅନ୍ନମାଦେବୀଙ୍କ ଉପରେ କୌଣସି ପ୍ରଭାବ ନ ପକାଇବା ସ୍ୱାଭାବିକ୍ । ଅନ୍ନମାଙ୍କ ପାଖରେ ଦେଖାଦେଇଥିବା ଦୁଃଖ ପ୍ରକୃତରେ ଆର୍ଟସମ୍ମତ ହୋଇପାରିଛି । ଆଉ ଏଇଥିପାଇଁ ମଧ୍ୟ ଅନ୍ନମାଦେବୀ ପାଠକଙ୍କ ସହାନୁଭୂତି ହାସଲ କରି ପାରିଛନ୍ତି । ଅନ୍ୟଦିଗରେ ଔପନ୍ୟାସିକ କମଳାଦେବୀଙ୍କ କଳଙ୍କିତ ଜୀବନର

Digitized by srujanika@gmail.com

ପର୍ଯ୍ୟାଲୋଚନା କରି ଜଣେ ପ୍ରକୃତ ଶରଣାର୍ଥିନୀର ଜୀବନକୁ ଉପସ୍ଥାପନ କରିଛନ୍ତି । ପରିସ୍ଥିତିରେ ବାଧ୍ୟହୋଇ ସାଧନ ସନ୍ନ୍ୟାସୀଙ୍କୁ ପତିଭାବରେ ଗ୍ରହଣ କରି ତାଙ୍କ ସହିତ ଘାର୍ ତୋଡ଼ିଏ ବର୍ଷ ବିତେଇଦେବା'କୁ ମନେପକାଇ ଦୁଃଖିତା ନହେଲେ ମଧ୍ୟ ସୁଖୀ ନୁହନ୍ତି । କମଳାଦେବୀ ପ୍ରଥମେ ଖଳନାୟିକା ସଦୃଶ ଅବତୀର୍ଣ୍ଣ ହୋଇଥିଲେ ହେଁ ନିଜଭୁଲର ଦୋଷ ସାବ୍ୟସ୍ତ କରିଛନ୍ତି ।

ପାରିବାରିକ ଟ୍ରାଜେଡ଼ି ପାରିବାରିକ ଜୀବନ ଯାହାକୁ ନେଇ ସୃଷ୍ଟିହୁଏ । ଏହାର ଉତ୍କର୍ଷ ସର୍ବସାଧାରଣଙ୍କ ନିମିତ୍ତ ଉଦ୍ଦିଷ୍ଟ । ମାତ୍ର ଉତ୍କର୍ଷରେ ଅପକର୍ଷର ମିଶ୍ରଣ ହେଲେ ଏହା ସାର୍ଥକ ରୂପନେଇପାରେ ନାହିଁ । ଦୈନନ୍ଦିନ ଜୀବନର ଚିତ୍ର ରହିବ, କିନ୍ତୁ ସମସ୍ତର ସ୍ପନ୍ଦନରେ ଏହା ପରିବର୍ତ୍ତିନଶୀଳ । 'ତମସାତୀରେ' ଉପନ୍ୟାସରେ କମଳାଦେବୀ ଓ ଅନ୍ନମାଦେବୀଙ୍କ ଟ୍ରାଜେଡ଼ିକୁ ନିରୀକ୍ଷଣକଲେ ଏହା ଏକଭଳି ମନେହେଲେ, ବି ଚରିତ୍ରଗତ ପାର୍ଥକ୍ୟ ଯୋଗୁଁ ଦୁହେଁ ଗୋଟିଏ ପଥର ଯାତ୍ରୀ ହୋଇନାହାଁନ୍ତି । ଅନ୍ନମାଦେବୀ ଇଚ୍ଛାକରିଥିଲେ ହୁଏତ ଅମିସ୍ତ ମଣ୍ଡଳକୁ ପତିଭାବରେ ଗ୍ରହଣ କରିପାରିଥାନ୍ତେ, ମାତ୍ର ତାଙ୍କ ଆଦର୍ଶ ତାଙ୍କୁ ବାଧା ଦେଇଛି ଏଣୁ ସମାଲୋଚକ ଖଗେଶ୍ୱର ମହାପାତ୍ରଙ୍କ ମତରେ ସେମାନେ (କାହ୍ନୁ ବାବୁଙ୍କ ନାୟୀଚରିତ୍ର) ଜଣେ ଜଣେ ବଧୂଗ୍ରୁ ପ୍ରେମିକା । ମାତ୍ର ତାଙ୍କ ପ୍ରେମରେ ଧୈର୍ମାନସ୍ ନାହିଁ, ଅଛି ସମସ୍ୟା । ସେମାନଙ୍କ ମନରେ ସ୍ନେହ ଓ ପ୍ରେମ, ଦେହରେ କାମନା ଓ ଉତ୍ତେଜନା; କିନ୍ତୁ ଆଗରେ ସାମାଜିକ ନୀତିନିୟମ ଓ ଆଦର୍ଶର ପ୍ରତିବନ୍ଧକ ।" (୧)

ଛଅ:

ସମାଜର ସର୍ବାଧିକ ନିପୀଡ଼ିତ, ନିର୍ଯ୍ୟାତିତ ନାରୀଙ୍କ ଜୀବନକୁ ଅବଲମ୍ବନକରି କାହ୍ନୁଚରଣ ତାଙ୍କ ଉପନ୍ୟାସରେ ଟ୍ରାଜେଡ଼ିଚିତ୍ର ଅଙ୍କନ କରିଛନ୍ତି । ମୁଖ୍ୟତଃ ଉପନ୍ୟାସରେ ଟ୍ରାଜେଡ଼ି କହିଲେ ସେ ବୁଝିଛନ୍ତି ନାରୀର ଟ୍ରାଜେଡ଼ି । ତେଣୁ ନାରୀ-ପ୍ରେମପାଇଁ ପ୍ରକୃତି, ସମାଜ, ପରିସ୍ଥିତି ଆଦିକୁ ସେ ଦର୍ଶାଇଛନ୍ତି । କାହ୍ନୁଚରଣ ଏ ସବୁ ଟ୍ରାଜେଡ଼ି ସଙ୍କଟର ସମାଧାନ ପାଇଁ ପଥ ଦେଖାଇ ନାହାଁନ୍ତି, ବରଂ; ନାୟକ ନାୟିକାକୁ ଏକତ୍ର କରିଦେଇଛନ୍ତି । ଗୀତା ଆଦି ଉମା ସମାଜସଂସ୍କାର ସଙ୍କଟରେ ଯଥାପୋଚିତ ନିଜର ଟ୍ରାଜେଡ଼ି ବରଣକରିଛନ୍ତି, କିନ୍ତୁ ସମାଜ ସ୍ୱରପକ୍ଷ ରୋମାଣ୍ଟିକତାର କୌଣସି ଆଦର୍ଶ ପ୍ରଦାନ କରି ନାହାଁନ୍ତି । ବୋଧହୁଏ ତାହାମଧ୍ୟ କେବେ ସଂଭବ ନୁହେଁ । ଊନବିଂଶ-ବିଂଶ ଶତାବ୍ଦୀର ଇଉରୋପୀୟ ଟ୍ରାଜେଡ଼ିରେ-ନାଟକ ଓ ଉପନ୍ୟାସରେ-ସମାଜ ହିଁ ବ୍ୟକ୍ତିର ପ୍ରତିପକ୍ଷ । ସମାଜର କାରଣ ହିଁ

---

(୧) ମହାପାତ୍ର ଖଗେଶ୍ୱର: ଆସନ୍ନାକାଳ, ୧୯୬୮-ମଇ ପୃଷ୍ଠା:୩୪.'ଶାନ୍ତି: ଏକ ସମାଜତାତ୍ତ୍ୱିକ ଉପସ୍ଥାପନା ।

Digitized by srujanika@gmail.com

ବ୍ୟକ୍ତିର ଟ୍ରାଜେଡି । ତଥାପି ସମାଜକୁ କେହି ଉପେକ୍ଷା କରିପାରି ନାହାଁନ୍ତି । ସମସ୍ତେ ଯେମିତି ଏଇ ସତ୍ୟକୁ ମାନି ଚଳିଛନ୍ତି, ସମାଜର ଅଭ୍ୟନ୍ତରରେ ବ୍ୟକ୍ତିର ଅବସ୍ଥାନ ମଧ୍ୟରେ ରହିଛି ଟ୍ରାଜେଡିର ସଂଭାବନା । କାହ୍ନୁଚରଣ ସେଇ ସଂଭାବନାକୁ ହିଁ ଗୋଟିଏ ବିଶେଷ କ୍ଷେତ୍ରରେ ମୂର୍ତ୍ତିକରିଛନ୍ତି ।

ଏ କ୍ଷେତ୍ରରେ କାହ୍ନୁଚରଣଙ୍କର ଗୋଟିଏ ବିଶେଷ କୃତିତ୍ୱ ଏଇ ଯେ, ସେ ଯେତେବେଳେ ନାରୀଚରିତ୍ର ଗୁଡ଼ିକୁ ଟ୍ରାଜେଡି ଚରିତ୍ରରୂପରେ ଗ୍ରହଣ କରିଛନ୍ତି ସେତେବେଳେ କେବଳ ସେ ସେମାନଙ୍କୁ ଚରିତ୍ର-ହିସାବରେ ଗ୍ରହଣ କରିଛନ୍ତି, ସତୀ ବା ଅସତୀର ମାର୍କାଦେଇ ଗ୍ରହଣ କରିନାହାଁନ୍ତି, ଏବଂ ଗୋଟିଏ ଚରିତ୍ରର ଯେଉଁ ଶିଳ୍ପଗତ ପରିମାପ (Dimension) ପ୍ରାପ୍ୟ କାହ୍ନୁଚରଣ ତାହା ପ୍ରଦାନକରିଛନ୍ତି । ଏଣୁ କାହ୍ନୁଚରଣଙ୍କ କାହାଣୀରେ ଚରିତ୍ରର ମନ୍ଦଗୁଣଥିଲେ ମଧ୍ୟ ବଡ଼ହୋଇଛି ତା'ର ମନୁଷ୍ୟତ୍ୱ, ଫଳରେ କୌଣସି ପ୍ରେମ ଅନୁଚିତ ହୋଇନାହିଁ । ପ୍ରେମର ଏଇ ସାଧାରଣୀକୃତ ମଧ୍ୟରେ କାହ୍ନୁଚରଣଙ୍କ ଉପନ୍ୟାସରେ ଟ୍ରାଜେଡିର ନାରୀଚରିତ୍ର ଗୁଡ଼ିକ ପାଠକର କରୁଣା ଆକର୍ଷଣରେ ସକ୍ଷମ ହୋଇଛନ୍ତି । ଏଇ କରୁଣାକୁ ଅଧିକାଂଶ ଟ୍ରାଜେଡିର 'ମୂଳମନ୍ତ୍ର' କହନ୍ତି । କିନ୍ତୁ ଟ୍ରାଜେଡି-ଚରିତ୍ରର ଦୁଃଖ ବର୍ଣ୍ଣନା ବ୍ୟତୀତ ଏଇ କରୁଣାକୁ ଆକର୍ଷଣ କରାଯାଇ ପାରେ ନା । ସୁତରାଂ ଦୁଃଖ ବର୍ଣ୍ଣନା ଆବଶ୍ୟକ । (୧) ତାହା ମାନସିକ ହେଉ କିମ୍ବା ଶାରୀରିକ ହେଉ ଏଥିପାଇଁ କିଛି ନିର୍ଦ୍ଦିଷ୍ଟ ନିୟମ ନାହିଁ । କାହ୍ନୁଚରଣ ତାଙ୍କ ଉପନ୍ୟାସରେ ନାରୀପ୍ରେମକୁ ଏଇ ସାଧାରଣୀକୃତ କରି ସେଇ ପ୍ରେମପ୍ରତି ପାଠକର ସହାନୁଭୂତି ସଂପନ୍ନ କରାଇଛନ୍ତି ଏବଂ ତାପରେ ସେଇ ପ୍ରେମପାଇଁ ନାରୀର ଦୁଃଖଭୋଗ, ବିପର୍ଯ୍ୟସ୍ତ ପ୍ରକୃତିର ବିବରଣ ଉପସ୍ଥାପନକରି ପାଠକର କରୁଣାକୁ ଉଦ୍‌ବୋଧିତ କରିଛନ୍ତି । ଏଇଠାରେ ହିଁ କାହ୍ନୁଚରଣଙ୍କ ଉପନ୍ୟାସରେ ଟ୍ରାଜେଡିର ଶିଳ୍ପସିଦ୍ଧି ! ଅନ୍ୟପକ୍ଷରେ କହିବାକୁଗଲେ ଇଏହିଁ ହେଉଛି ଟ୍ରାଜେଡ଼ିର ସେଇ ଖଣ୍ଡରୂପ, ଯାହା ଆମର ନବ୍ୟସାହିତ୍ୟରେ ଦେଖାଦେଇଛି ଏବଂ ଯାହା ଇଉରୋପୀୟ ନବ୍ୟସାହିତ୍ୟରେ ବିଗତ ଶତାବ୍ଦୀରେ ଦେଖାଦେଇଥିଲା । ଆଧୁନିକ ମନୁଷ୍ୟ ନିକଟରେ ଟ୍ରାଜେଡିର ଏଇ ଖଣ୍ଡରୂପରେ ହିଁ ଶିଳ୍ପମାଧୁର୍ଯ୍ୟବେଶୀ ଏବଂ ଏଥିଯୋଗୁଁ ହିଁ ଟ୍ରାଜେଡିର ଏଇ ରୂପଗତ ପରିବର୍ତ୍ତନ ।



ଗବେଷକ, ଓଡ଼ିଆ ବିଭାଗ, ବିଶ୍ୱଭାରତୀ
ଶାନ୍ତିନିକେତନ, ପଶ୍ଚିମବଂଗ-୭୩୧୨୩୫

(୧) W B. Worsfold: Judgement of Literature, 1957, P- 89

Digitized by srujanika@gmail.com

# କାହ୍ନୁଚରଣଙ୍କ ଔପନ୍ୟାସିକ ପ୍ରତିଭା : ଏକ ପ୍ରୟୋଗାତ୍ମକ ବିଚାର

ଶଇଳେନ୍ଦ୍ର ଲେଙ୍କା

ଚଳିତ ଦଶକରେ ଔପନ୍ୟାସିକ କାହ୍ନୁଚରଣ ଜଣେ ଯୁଗାନ୍ତକାରୀ ପୁରୁଷ । ସମସାମୟିକ ଚେତନାରେ ତାଙ୍କ ରଚନାର ପ୍ରଧାନ ବୈଶିଷ୍ଟ୍ୟ ହେଉଛି ସମାଜ ସଂଘାତ ମନୋବୃତ୍ତି । ଆଧୁନିକ ଉପନ୍ୟାସ ଜଗତର ଭିତ୍ତିସ୍ଥାପକ ଥିଲେ ଫକୀରମୋହନ । ସେନାପତିଙ୍କ ପରମ୍ପରାର ଜଣେ ବଳିଷ୍ଠ ପ୍ରତିନିଧିଭାବେ କାହ୍ନୁଚରଣ ଗର୍ବ ଓ ଗୌରବର ସାମଗ୍ରୀ ବହନ କରିଥାନ୍ତି । ବିଂଶ ଶତାବ୍ଦୀର ଜଣେ ଉଜ୍ଜ୍ୱଳ ଔପନ୍ୟାସିକ ଭାବେ ସୂକ୍ଷ୍ମ ମନସ୍ତାତ୍ତ୍ୱିକ କ୍ରିୟା-ପ୍ରତିକ୍ରିୟାର ବସ୍ତୁର ବିଶ୍ଳେଷଣ ନେଇ ତାଙ୍କର ପ୍ରତ୍ୟେକଟି-ସୃଷ୍ଟି ସ୍ୱତନ୍ତ୍ରଭାବେ ଚିହ୍ନିତ । ଆଧୁନିକ ଓଡ଼ିଆ ଉପନ୍ୟାସ ଜଗତରେ ଅପ୍ରତିଦ୍ୱନ୍ଦ୍ୱୀ ସ୍ରଷ୍ଟା ଭାବେ କାହ୍ନୁଚରଣଙ୍କର ଆବିର୍ଭାବ—ଅସହଯୋଗ ଆନ୍ଦୋଳନ ପରଠାରୁ । ଔପନ୍ୟାସିକ କାହ୍ନୁଚରଣଙ୍କର ଚିନ୍ତା ଓ ଭାବନା; କାଳ ଏବଂ ପରିବେଶ ଦ୍ୱାରା ନିୟନ୍ତ୍ରିତ ହୋଇ ମୁକ୍ତ ସଂଗ୍ରାମରେ ସ୍ଥାନ ଦେଇଛି । ସାଂପ୍ରତିକ ସମାଜ ଚେତନାକୁ ଭିତ୍ତି କରି ତାଙ୍କର ଉପନ୍ୟାସ ସମୂହ ଶ୍ରେଷ୍ଠ କଥାଶିଳ୍ପର ପରିଚୟ ଦିଅନ୍ତି । "ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ସେ ଅଗ୍ରଜ କହିଲେ, ଅତ୍ୟୁକ୍ତି ହେବ ନାହିଁ—କେବଳ ବୟସ ଦୃଷ୍ଟିରୁ ନୁହେଁ, ସୃଷ୍ଟି ପ୍ରାଚୁର୍ଯ୍ୟ ଦୃଷ୍ଟିରୁ ମଧ୍ୟ ।"(୧)

କାହ୍ନୁଚରଣଙ୍କୁ ମାତାଙ୍କ ସ୍ନେହ ଓ ଆଦର ପଠନେଚ୍ଛାହିଁ ପ୍ରେରଣା ଦେଇଥିଲା, ସେହି ପ୍ରେରଣା ହିଁ ଏବେ ତାଙ୍କ ପ୍ରତିଷ୍ଠାର ଭିତ୍ତିସ୍ଥାପକ । ଏ ପ୍ରସଙ୍ଗରେ କାହ୍ନୁଚରଣଙ୍କ ବାଲ୍ୟସ୍ମୃତି ସମ୍ପର୍କିତ ଗୋଟିଏ ଉକ୍ତିକୁ ଉଦ୍ଧାର କରାଯାଇପାରେ—

"ସୋନପୁର ଯେତେବେଳେ ଗଲି ବାପାଙ୍କ ପାଖରେ ପଢ଼ିବାକୁ—ସାତ, ଆଠ ବର୍ଷ ବୟସରେ, ସେତେବେଳେ ମୁଁ ପୁରାଣ ପଢ଼ୁଥିବା ଅବସ୍ଥାରେ ଗ୍ରନ୍ଥ କବିତାଟିଏ ବି ଲେଖିଥିଲି । ତା, ନାଁ 'ଜୟଦ୍ରଥ ବଧ' । ମୋର ଯାହା ମନେ

---

(୧) ଓଡ଼ିଆ ସାହିତ୍ୟର କ୍ରମବିକାଶ—ସୁରେନ୍ଦ୍ର ମହାନ୍ତି (ପୃ-୪୪୩)

Digitized by srujanika@gmail.com

ପଡ଼ୁଛୁ, ତା ପରଠାରୁ ସାହିତ୍ୟ କ୍ଷେତ୍ରରେ ମୁଁ ବହିଷ୍କୃତ ହୋଇ ନାହିଁ ।  × × ମୁଁ ଆଜି ପର୍ଯ୍ୟନ୍ତ ଲେଖା ଛାଡ଼ିପାରୁ ନାହିଁ ।''(୨) ଏଣୁ ଅର୍ଦ୍ଧଶତ ବର୍ଷରୁ ଊର୍ଦ୍ଧ୍ୱକାଳ ହେବ ଲେଖନୀ ତାଙ୍କର ୫୧ ଖଣ୍ଡ (ଏକାବନ ଖଣ୍ଡ) ଉପନ୍ୟାସ, ପାଞ୍ଚ ଖଣ୍ଡ ଗଳ୍ପ ଓ ଖଣ୍ଡିଏ କବିତା ଗ୍ରନ୍ଥ ସୃଷ୍ଟି କରିବାରେ ସମର୍ଥ ହୋଇପାରିଛି । କାହ୍ନୁଚରଣଙ୍କ ନାଟ୍ୟକ୍ଷେତ୍ର ଜୀବନରେ ଲେଖିବାର ପ୍ରେରଣାଦାତ୍ରୀ ଥିଲେ ତାଙ୍କ ଜନନୀ । କାହ୍ନୁଚରଣ ଜଣେ ଜୀବନବାଦୀ କଥାକାର । ତାଙ୍କ ଉପନ୍ୟାସ ସମୂହରେ ଚରିତ୍ର-ମାନେ ଅତୀବ ସୁନ୍ଦର ଓ ସ୍ୱାଭାବିକ ରୂପ ନେଇ ଜୀବନ୍ତ ଭାବେ ଆତ୍ମପ୍ରକାଶ କରିଛନ୍ତି । ବହୁବିଧ ଚରିତ୍ରର ସମାବେଶ ତାଙ୍କ ଉପନ୍ୟାସକୁ ବାସ୍ତବତା ପ୍ରଦାନ କରିଛି । ତାଙ୍କ କଳାତ୍ମକ ରଚନାଗୁଡ଼ିକ ସୁରୋଚିତ ।

ଔପନ୍ୟାସିକ କାହ୍ନୁଚରଣଙ୍କ ନୂତନ ସମାଜ ପରିକଳ୍ପନାରେ ସଂପୂର୍ଣ୍ଣ ମୌଳିକ ଚିନ୍ତା ପ୍ରସୂତ ଦୃଢ଼ କାର୍ଯ୍ୟ କରିଛି ତା' ନୁହେଁ, ଧାର ଓ ଉଧାର ସୂତ୍ରରେ ମଧ୍ୟ ସେ ତାଙ୍କ କଳାକୁ କରି ପାରିଛନ୍ତି ବୈଚିତ୍ର୍ୟପୂର୍ଣ୍ଣ ଓ ଅଭିନବ । ଅନୁଭୂତିବହୁଳ ଜୀବନରେ ବିବିଧ ଅଭିଜ୍ଞତା ଧରି ଉପନ୍ୟାସ ସମୂହ କ୍ରମବିବର୍ତ୍ତିତ ଧାରାରେ ୧୯୨୩ ଠାରୁ ଗତି କରିଛି ଆଧୁନିକ ସମାଜ ଆଡ଼କୁ । ଝଡ଼ ବହୁଛି, ଝଞ୍ଜା ଆସିଛି, ହା ଅନ୍ନର ଚିତ୍କାର ଶୁଣାଯାଇଛି, ତଥାପି ମଥାପାତି ଠିଆ ହୋଇଛି 'ନିଲଟ ଲଗନ୍' । କାହ୍ନୁଚରଣଙ୍କ ଉପନ୍ୟାସ କ୍ରମବିଚାର ଗତି ୧୯୨୩ଠାରୁ ଏ ପର୍ଯ୍ୟନ୍ତ ଗତିଶୀଳ । ଓଡ଼ିଆ ଉପନ୍ୟାସ ସାହିତ୍ୟରେ କଥାକାର କାହ୍ନୁଚରଣଙ୍କର ଅନବରତ ଲେଖନୀ ମଣିଷ ଜୀବନ ସଂଗ୍ରାମର ଶାଶ୍ୱତ ଚିତ୍ର ନେଇ ହୋଇ ପାରିଛି ମହୋଜ୍ଜ୍ୱଳ । ପ୍ରାଚୀନ ରୁଚିବୋଧ ଓ ନୈତିକ ମାନଦଣ୍ଡ ଉପରେ ତାଙ୍କର ଅନେକ ଉପନ୍ୟାସର ଦୃଷ୍ଟି ସଂପୂର୍ଣ୍ଣ ସାମାଜିକ । ଆଧୁନିକ ଜନଜୀବନର ଦୋଷ ଦୁର୍ବଳତା ମଧ୍ୟ ତାଙ୍କ ଅନୁଭୂତିବହୁଳ ଅଭିଜ୍ଞତାରେ ସ୍ପଷ୍ଟ ହୋଇ ପାରିଛି । ତାଙ୍କର ଅଧିକାଂଶ ଉପନ୍ୟାସ ପ୍ରଣୟ ପ୍ରଧାନ । ବିଧବା ନାରୀ, ଜୀବନ ପ୍ରଣୟ ଓ ପରିଣାମର କରୁଣ ପରିଣତିକୁ ନେଇ 'ତୁଣ୍ଡ ବାଇଦ', 'ଶାସ୍ତି', 'ଅଭିନେତ୍ରୀ','ନଷ୍ଟଜ୍ୟୋତି' ଓ''ପଲାତକ' ପ୍ରଭୃତି ଉପନ୍ୟାସର ବିଷୟ କଳ୍ପନା । ଆତ୍ମକଥା ଛଳରେ— 'ଭଲ ପାଇବାର ଶେଷ କଥା' ଭିତରେ ଔପନ୍ୟାସିକ ଆଧୁନିକ ଉପନ୍ୟାସର ମର୍ମକଥା ସହ ପରିଚିତ ଥିବା ପରି ଜଣା ଯାଆନ୍ତି । କଥାକାର କାହ୍ନୁଚରଣଙ୍କର ବିଷୟବସ୍ତୁର ପରିସର ଅତ୍ୟନ୍ତ ବ୍ୟାପକ । ଦୀର୍ଘ ଶହେ ବର୍ଷକୁ ଭିତ୍ତି କରି ତାଙ୍କ ଉପନ୍ୟାସର ଚରିତ୍ରସମୂହ ରୂପାୟିତ । ପଲ୍ଲୀ ଜୀବନକୁ କେନ୍ଦ୍ର କରି କାହ୍ନୁଚରଣଙ୍କ ସର୍ଜନଶୀଳତାର ଉଜ୍ଜ୍ୱଳ ସ୍ୱାକ୍ଷର ବହୁ ଉପନ୍ୟାସରେ ଦେଖିବାକୁ ମିଳେ ।

---

(୨) ଚିଠି—ବିଶ୍ୱରଞ୍ଜନ (କାହ୍ନୁଚରଣ- ୧୫।୧।୮୩)

Digitized by srujanika@gmail.com

ଔପନ୍ୟାସିକଙ୍କ ପ୍ରଥମ ପର୍ଯ୍ୟାୟର ରଚିତ ଉପନ୍ୟାସ 'ତଥାସ୍ତୁ' ଠାରୁ 'ସ୍ୱପ୍ନ ନା ସତ୍ୟ' ପର୍ଯ୍ୟନ୍ତ ଉପନ୍ୟାସରେ ଅତି ବାସ୍ତବ କଳ୍ପନା ଅନୁରଞ୍ଜିତ ହୋଇଛି । କଳ୍ପନାର ପ୍ରଲେପ ଦେଇ ଚେଷ୍ଟାକୃତ ଭାବେ ତାଙ୍କ ଲେଖନୀ ଜନପ୍ରିୟତା ଆଡ଼କୁ ଆଗେଇ ଚାଲିଛି । ଦ୍ୱିତୀୟ ପର୍ଯ୍ୟାୟରେ 'ଦୁନିଆର ଦାହ'ଠାରୁ 'ଅଦେଖାହାତ' ପର୍ଯ୍ୟନ୍ତ ଲମ୍ବିଥିବା ଦୌଡ଼ ଭିତରେ କାହ୍ନୁଚରଣଙ୍କ ଲେଖନୀ ରୋମାଣ୍ଟିକ୍ ଓ ବାସ୍ତବବାଦର ମୂକସାକ୍ଷୀ । ପ୍ରାକ୍ ସ୍ୱାଧୀନତା କାଳରେ ଅର୍ଥାତ୍ 'ପ୍ରତୀକ୍ଷା' ଠାରୁ 'ଏପାରି ସେପାରି' ପର୍ଯ୍ୟନ୍ତ ତାଙ୍କ ଆଦର୍ଶ ଓ ଅଗ୍ରଗାମୀ ମନର ବାସ୍ତବ ପରିପ୍ରକାଶ ଘଟିଛି । 'ଶାସ୍ତି'(୧୯୪୭)ଠାରୁ 'ହଜିଲ ସ୍ୱପ୍ନ' (୧୯୫୫) ଯାଏ ଉପନ୍ୟାସରେ ସମସ୍ୟାବହୁଳ ସମାଜ ବିରୋଧରେ ସ୍ୱାଧୀନଚିନ୍ତା ପ୍ରଚାର କରିବା ପାଇଁ ଔପନ୍ୟାସିକ ବ୍ୟଗ୍ର ଥିବା ପରି ଜଣା ଯାଆନ୍ତି । ପଞ୍ଚମ ପର୍ଯ୍ୟାୟରେ 'ଢେଉ ଢେଉକା' (୧୯୬୨)ରୁ ସଂପ୍ରତି 'ତାପସୀ' (୧୯୮୨)ରେ ବିଭିନ୍ନ ପ୍ରୟୋଗବାଦୀ ପରୀକ୍ଷା ନିରୀକ୍ଷା ମାଧ୍ୟମରେ ଉପନ୍ୟାସ ଗୁଡ଼ିକ ଗତିଶୀଳ । ସାଂପ୍ରତିକ ମଣିଷର ହୃଦ୍‌ବୋଧକୁ କାହ୍ନୁଚରଣ ପ୍ରତ୍ୟକ୍ଷଦର୍ଶୀ ଭାବେ ଉପନ୍ୟାସ କ୍ଷେତ୍ରରେ ଉପସ୍ଥାପନ କରି ଦ୍ରଷ୍ଟବାଦୀ କଥାକାରର ଭୂମିକା ନେଇଛନ୍ତି ।

ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ କାହ୍ନୁଚରଣ ଜଣେ ନବୀନ ଔପନ୍ୟାସିକର ମାନ୍ୟତା ଓ ଯୋଗ୍ୟତା ନେଇ ସମସ୍ୟା ଓ ଚରିତ୍ର ସକଳକୁ ଏକ ଅଦ୍ଭୁତ ବାସ୍ତବତାର ଆଚ୍ଛନ୍ନରେ ପାଠକ ସମ୍ମୁଖରେ ଛିଡ଼ା କରିଛନ୍ତି । ବିଭିନ୍ନ ମାନସିକ କ୍ରିୟା ପ୍ରତିକ୍ରିୟା ନେଇ ତାଙ୍କ ରୂପାନ୍ୱେଷଣର କଳାପୂର୍ଣ୍ଣ ସୃଷ୍ଟିସବୁ ମୂଲ୍ୟସଂଗ୍ରାମରେ ଝାସ ଦେଇଛନ୍ତି । ମାନବର ପ୍ରକୃତ ସ୍ୱରୂପ ଉଦ୍‌ଘାଟନ କରିବା ପାଇଁ ତାଙ୍କର ଲେଖନୀ ଅକୃତ୍ରିମ ଗତିରେ ସାର୍ଥକ ହୋଇଛି । 'ବଗଲ ବଗୁଲି' ଏକ ମନସ୍ତତ୍ତ୍ୱଧର୍ମୀ, 'ଢେଉ ଢେଉକା' ଏକ ଚେତନପ୍ରବାହ ଧର୍ମୀ, 'ଶବଶ୍ୱ' ଏକ ଐତିହାସିକ ଧର୍ମୀ ଓ 'ସତ୍ୟବତୀ' ଏକ ପୌରାଣିକ ପ୍ରଧାନ ରଚନା । 'ସ୍ୱପ୍ନା' ଓ 'ମମତାର ମାୟା'କୁ ତାଙ୍କ ଶ୍ରେଷ୍ଠ ଉପନ୍ୟାସ ଓ ବଡ଼ ଗଳ୍ପ ଭାବରେ ଗ୍ରହଣ କରାଯାଇପାରେ । ଏହି ଦୁଇଟି ଉପନ୍ୟାସ ଗଳ୍ପର ଯେତିକି ନିକଟବର୍ତ୍ତୀ, ଉପନ୍ୟାସର କାହାଣୀ ପରେ କାହାଣୀ ଯୋଡ଼ି କହିବାରେ ସେତିକି ସଫଳଧର୍ମୀ ସୃଷ୍ଟି ନୁହେଁ । କାହ୍ନୁଚରଣ—'ଶ୍ୱେତବ୍ରହ୍ମାଣୀ'କୁ ବିସର୍ଜନ କରିଦେଲେ ପରେ ତାଙ୍କର ତିନୋଟି ଗଳ୍ପସଙ୍କଳନ ଯଥା—'ନାମଟି ତାର ଚମ୍ପା' 'ଉଷା' ଓ 'କ୍ଷଣିକା' ରୂପେ ଚିହ୍ନିତ । ଏହା ବ୍ୟତୀତ ଅନ୍ୟ ଦୁଇଟି ଗଳ୍ପସଂକଳନ ଯଥା— 'ଅତି ଗୋପନୀୟ' ଓ 'ମୁଁ ମନ୍ଦ କାଣେ' ତାଙ୍କ ଶୈଳ୍ପିକ ପ୍ରତିଭାର ପରିଚାୟକ । ସ୍ୱାଧୀନତା ପରବର୍ତ୍ତୀ କାଳରେ କଥାକାର ବିଷୟବସ୍ତୁ ନିର୍ବାଚନ କ୍ଷେତ୍ରରେ ଯଥେଷ୍ଟ

Digitized by srujanika@gmail.com

ସରେଚନ ଅଥବା ପର ଜଣାଯା'ନ୍ତି । 'ମାନସୀ' (୧୯୩୧) ତାଙ୍କ ଯୌବନୋଦ୍ଦୀପ୍ତ କବି ପ୍ରତଭାର ଅଦ୍ୟାକ୍ଷର ବହନ କରିଥାଏ ।

ଦୁର୍ଭାଗ୍ୟବଶତଃ ଔପନ୍ୟାସିକଙ୍କ ପ୍ରଥମ ଉପନ୍ୟାସ 'ଉତ୍ସବେ ବ୍ୟସନ' (୧୯୨୩-୨୪), 'ଅରୁଣା' (୧୮୨୮-୨୯) ଓ 'ପରଚସ୍ତ'(୧୯୩-)ର ପାଣ୍ଡୁଲିପି ହଜି ଯାଇଥିଲେ ବି ଲେଖକ ତାଙ୍କର ଏବେ ମଧ୍ୟ ଅଜସ୍ର ସ୍ରାବୀ । "ମୋର ଶେଷ ପ୍ରକାଶିତ ଉପନ୍ୟାସ (୧୯୮୨) 'ତାପସୀ' । 'ତାପସୀ'ର ପରବର୍ତ୍ତୀ ଉପନ୍ୟାସ 'ଲଳାଟ ଲିଖନ' ବର୍ତ୍ତମାନ ଯନ୍ତ୍ରସ୍ଥ । ତାପରେ ବି ଆଉ ଗୋଟିଏ ଉପନ୍ୟାସ ଲେଖୁଛି ।"(୩)କାହ୍ନୁଚରଣଙ୍କ ପ୍ରାପ୍ତ ଅଧିକାଂଶ ଉପନ୍ୟାସ ପଲ୍ଲୀଜୀବନ ଅବଲମ୍ବନରେ ରଚିତ । ତାଙ୍କ ପରପଲ୍ଲୀ-ମନର ଶିଳ୍ପସମ୍ଭାର ସବୁ ପ୍ରକାସ୍ତ ମହିମାରେ ମହିମାନ୍ୱିତ ଓ ବାସ୍ତବ ସଜ୍ଜାରେ ବର୍ଣ୍ଣୋଜ୍ଜ୍ୱଳ । ଈଶ୍ୱର ସୃଷ୍ଟ ଜଗତ ଅପେକ୍ଷା ଅଧିକ ବାସ୍ତବ ଜଗତର ଜୀବନକୁ ସେ ନିର୍ମାଣ କରିଛନ୍ତି ଜୀବନର ସୁବିସ୍ତୃତ କାହାଣୀକୁ ନେଇ ଅବହେଳିତ ଓ ଅବଦମିତ ଜନତାର ଚରିତ୍ରକୁ ଚିହ୍ନାଇବାରେ କାହ୍ନୁଚରଣଙ୍କର ସିଦ୍ଧ ହସ୍ତତା ସହଜେ ଅନୁମେୟ । ସହର ଜୀବନର ଋକ୍ଷତା ମନୁଷ୍ୟଙ୍କୁ ପଲ୍ଲୀମୁଖୀ କରିଥିବାରୁ ଉପନ୍ୟାସଗୁଡ଼ିକ ପ୍ରାୟଶଃ ପଲ୍ଲୀ କେନ୍ଦ୍ରିକ ହୋଇ ପାରିଛି ।

କାହ୍ନୁଚରଣ ତାଙ୍କ ଉପନ୍ୟାସରେ ପୁରୁଷ ଅପେକ୍ଷା ନାରୀ ଚରିତ୍ରକୁ ଅଧିକ ଉତ୍କୃଷ୍ଟ କରି ଗଢ଼ିଛନ୍ତି । 'ଅଦେଖା-ହାତ'ରେ 'ଗୀତା', 'କା'ରେ 'ସୁନନ୍ଦା' ଓ 'ଶାସ୍ତି'ରେ ଧୋବୀ ଅନ୍ତରର କାହାଣୀକୁ ଔପନ୍ୟାସିକ ଆତ୍ମନିୟୋଗ ଦେଇ ପ୍ରତିଷ୍ଠା କରିଛନ୍ତି । 'ଶାସ୍ତି'ରେ ଧୋବୀର ପୂର୍ଣ୍ଣ ବିଶ୍ଳେଷଣ ନ କରି ପଥର ପାଖରେ ଲମ୍ବେଇ ଦେଇଛନ୍ତି । 'ଅଦେଖା ହାତ'ରେ ଗୀତାକୁ ନ କନ୍ଦାଇ ନିଜେ କାନ୍ଦିଛନ୍ତି । ଯାନ୍ତ୍ରିକ ସଭ୍ୟତା ଆଜି ନାରୀ ଜାତିର ମନରେ ଭରି ଦେଇଚି ଘୃଣା ଓ ଛଳନା । ଯେମିତି ଏକ ବିବଦମାନ ଚରିତ୍ର ଭାବେ 'ପଳାତକ'ର ସାଧୁ ହୋଇଛି ପଳାତକ ମାତ୍ର । ନାରୀର ମନସ୍ତାତ୍ତ୍ୱିକ ବିଶ୍ଳେଷଣକୁ ଭିତ୍ତି କରି ସ୍ୱାର୍ଥ, ଶୋଷଣ, ଅତ୍ୟାଚାର ଓ ପୁଂଜିବାଦୀ ବିରୁଦ୍ଧରେ ଅନେକ ଚରିତ୍ର ମଥା ଟେକି କଥା କହୁଚନ୍ତି । ଅନେକ ଚରିତ୍ରକୁ ଦେଶ କାମରେ ଅନୁବର୍ତ୍ତୀ କରାଇ ଉପକାରୀର ଋଣ ପରିଶୋଧ କରିଛନ୍ତି ନିଜ ନିଜର ଆତ୍ମବଳିଦାନରେ । କାହ୍ନୁଚରଣ ବାସ୍ତବ ଜୀବନ ଓ ଲୋକାଲୟର ଚରିତ୍ରକୁ ସମାଜ ଓ ପରିସ୍ଥିତିରେ ରୋପଣ କରି କଳ୍ପନା ସମାଜରେ ଛୁଡ଼ା କରିଛନ୍ତି ।

"କାହ୍ନୁଚରଣ ଜଣେ ଦରଦୀ ଶିଳ୍ପୀ । ଦୁଷ୍ଟ ହେଉ କି ଶାନ୍ତ ହେଉ ତାଙ୍କର ମାନସ ସନ୍ତାନ ପ୍ରତ୍ୟେକ ଚରିତ୍ର ପ୍ରତି ସେ ସ୍ୱଭାବତଃ ସହାନୁଭୂତିଶୀଳ ।

---

(୩) ଚଠି, ବିଶ୍ୱରଞ୍ଜନ (କାହ୍ନୁ ଚରଣ ୧୫।୧।୮୩)

Digitized by srujanika@gmail.com

ସମସ୍ତ ଭିତରେ ସେ ସନ୍ଧାନ କରନ୍ତି ମଣିଷ ପଣିଆଁର ଲକ୍ଷ୍ୟ । ତାଙ୍କ ଉପନ୍ୟାସର ଖଳ ଚରିତ୍ର ମଧ୍ୟ ପାଠକର ସହାନୁଭୂତି ଲାଭରୁ ବଂଚିତ ହୁଏନା ।"(୪)

କାହ୍ନୁଚରଣଙ୍କ ଚରିତ୍ରଗୁଡ଼ିକ ସମସ୍ତେ ଗୋଟିଏ ଗୋଟିଏ ଟାଇପ୍ । ଗଠନ-ନୈପୁଣ୍ୟ କାହ୍ନୁଚରଣଙ୍କ ଉପନ୍ୟାସର ଅନ୍ୟ ଏକ ବୈଶିଷ୍ଟ୍ୟ । ଉପନ୍ୟାସମାନଙ୍କରେ କୌଣସି ଆଲୋଡ଼ନ ସୃଷ୍ଟି କାରି ସଂଳାପ ସଂଯୋଜନା ହୋଇନି । ବରଂ ଗ୍ରାମ୍ୟ ଲୋକ ଚଳଣି ଭାଷାରେ ସମସ୍ତ ବକ୍ତବ୍ୟ ସରଳ ଗତିରେ ହୋଇପାରିଛି ଜାଣନ୍ତି । ତାଙ୍କ ଉପନ୍ୟାସମାନଙ୍କରେ ବହୁ ଚରିତ୍ରଙ୍କ ସମାବେଶ ହେଲେ ମଧ୍ୟ ଚରିତ୍ରଚିତ୍ରଣରେ ଏକ ନୂତନ ଶୈଳୀ ପରିଲକ୍ଷିତ ହୁଏ । ଜୀବନର ଆଢ଼ ସମସ୍ୟା ପ୍ରେମଚିତ୍ର ମଧ୍ୟ ତାଙ୍କର ଅଧିକାଂଶ ଉପନ୍ୟାସକୁ ଆଚ୍ଛନ୍ନ କରି ରଖିଛି । ଭାଷା ବ୍ୟବହାର କ୍ଷେତ୍ରରେ ପ୍ରଚଳିତ କଥାକୁ ଭାଷାର ନିପ୍ରୟୋଗରେ ନିର୍ବାଚନ କରିଚନ୍ତି । ଗ୍ରାମ୍ୟ ସ୍ତରର ଭାଷା ସଂଯୋଜନାରେ ଚରିତ୍ର ସବୁ ଗୋଟିଏ ଗୋଟିଏ ଟାଇପ୍ । କାହ୍ନୁଚରଣ ଦୀର୍ଘ-ବାକ୍ୟ ଓ ସମାସ ବହୁଳତା ସଂସ୍କୃତର ବାଣଭଟ୍ଟୀ ଓ କାଦମ୍ବରୀ ସ୍ତରକୁ ସଂପୂର୍ଣ୍ଣ ପରିହାର କରିଚନ୍ତି । ଶୈଳୀ ଅତି ନାଟକୀୟ ଭାବେ ପାଠକର ମନକୁ ହରଣ କରିପାରେ । ଔପନ୍ୟାସିକ କଳା ଓ ସୌନ୍ଦର୍ଯ୍ୟକୁ ଆଧାର କରି ତାଙ୍କ ଉପନ୍ୟାସ କଳାର ଗଠନ ଶିଳ୍ପ ଓ ରଚନା ଭଙ୍ଗୀକୁ ଏକସୂତ୍ରରେ ବାନ୍ଧି ରଖି ପାରିଛନ୍ତି । ଜଣେ ଦକ୍ଷ କଥାକାର ଓ ମୌଳିକ କଳାଶିଳ୍ପୀ ଭାବେ ତାଙ୍କର ଉପନ୍ୟାସର ପରିଣତି ଦିଗ ପ୍ରତି ଅଧିକ ସଚେତନ ଥିବାର ସ୍ପଷ୍ଟ ସୂଚନା ମିଳିଥାଏ ।

ସାମଗ୍ରିକ ଦୃଷ୍ଟିକୋଣରୁ ବିଚାର କଲେ କାହ୍ନୁଚରଣଙ୍କ ଉପନ୍ୟାସ ନିବେଳ ପଲ୍ଲୀଭିତ୍ତିକ ଭାବ ଓ ଭାଷା ଶିଳ୍ପସାଫଲ୍ୟର ଅପୂର୍ବ କଳାକୃତି । ବାସ୍ତବ ଚେତନାର ଜଣେ ଯଥାର୍ଥ ରୂପକାର ଭାବେ କାହ୍ନୁଚରଣଙ୍କ ଲେଖାରେ ଜାତି-ଭେଦର ସଂକୀର୍ଣ୍ଣତା ସ୍ଥାନ ପାଇ ନାହିଁ । ନାରୀ ମନସ୍ତାତ୍ତ୍ୱିକ ବିଶ୍ଳେଷଣରେ ନାରୀ ମନର ଗଭୀର ମାନବିକତାର ଫଲ୍‌ଗୁକୁ ଫୁଟାଇବାରେ କାହ୍ନୁଚରଣ ହୋଇଛନ୍ତି ଦକ୍ଷ । ବିଧବା ବିବାହ ସପକ୍ଷରେ ସଫଳ ଆଲୋଚନାର ଚିତ୍ର 'ଅଭିନେତ୍ରୀ' ଓ 'ନିଷ୍ପତ୍ତି' ଉପନ୍ୟାସରେ ସୁସ୍ପଷ୍ଟ । "ଯେଉଁ ଜୀବନକଳ୍ପନା ନୂତନଭାବରେ ଅସ୍ୱାଦ୍ୟ ତଥା ଅଭିବ୍ୟକ୍ତିରେ ପ୍ରଭାବଶାଳୀ କାହ୍ନୁଚରଣଙ୍କ ସେହି ସେହି ଚରିତ୍ର ହିଁ ଅବିସ୍ମରଣୀୟ ହୋଇ ପାରିଛି । ସେ ମୁଖ୍ୟତଃ ଚରିତ୍ରଶିଳ୍ପୀ । ତାହାଙ୍କର ଅଧିକାଂଶ ଉପନ୍ୟାସ ଚରିତ୍ରପ୍ରଧାନ । ଔପନ୍ୟାସିକ କାହ୍ନୁଚରଣଙ୍କ ନୂତନ ସମାଜ କଳ୍ପନା ମୁଖ୍ୟତଃ ନିର୍ଭର କରିଛି ଏହି ଜୀବନ କଳ୍ପନା ଉପରେ । (୫)

---

(୪) ସମାଲୋଚନାର ଦିଗ ଦିଗନ୍ତ — ୨ (ପୃ-୨୧) ଡଃ ଖଗେଶ୍ୱର ମହାପାତ୍ର

(୫) କୃତି ଓ କୀର୍ତ୍ତି (ପୃ-୮୦) ଡଃ ବାଳକୃଷ୍ଣ ଶତପଥୀ ।

Digitized by srujanika@gmail.com

ଗ୍ରାମୀଣ ସାଧାରଣ ଜୀବନକୁ ଅସାଧାରଣ ଭାବ ଅଂକିଛନ୍ତି ତାଙ୍କ ଉପନ୍ୟାସରେ । ମାନବିକ ଦୃଷ୍ଟି ଦେଇ ସମାଜର ଅବହେଳିତ ଚରିତ୍ରଙ୍କ ପ୍ରାଣରେ ଜୀବନ ସଂଚାର କରିଛନ୍ତି । "ଯୌନ ପ୍ରବୃତ୍ତିକୁ ଭିତ୍ତି କରି, ବିଶେଷତଃ ନାରୀ ପ୍ରାଣରେ ମଗ୍ନ ଚୈତନ୍ୟ ଓ ଚେତନମନର ସଂସ୍କାର ମଧ୍ୟରେ ସଂଘର୍ଷ, କାହ୍ନୁ-ଚରଣଙ୍କ ଉପନ୍ୟାସର ଆଉ ଏକ ପ୍ରବୃତ୍ତି । (୬)" 'ଜା' ଉପନ୍ୟାସରେ ଏହି ପ୍ରତିନବାଣୀତା ଅତି ଚମତ୍କାର ଓ ଜୀବନ୍ତ ରୂପ ନେଇଛି । ଲଳିତା ମନରେ ସହୋଦରୀ ନନ୍ଦିକା ସମ୍ପର୍କରେ ଈର୍ଷାଜନିତ ଦ୍ୱନ୍ଦ୍ୱ, ଲୁଣ୍ଡିବାଇଡରେ ବିଧବା ତୁଳସୀର ଜୀବନ ସ୍ୱର୍ଗ-ଅନୁଜ ପ୍ରଥମ 'ସୁର' ପ୍ରତି ଶ୍ରଦ୍ଧା ଭିତରେ ଦ୍ୱନ୍ଦ୍ୱ, ଭାଗ୍ୟ ଓ ଭଗବାନଙ୍କର ଅଦୃଶ୍ୟ ହାତରେ 'ଅଦେଖା ହାତ'ର ଗୀତା ଜୀବନର ପଟ୍ଟଭୂମିରେ ଦାମ ଭାଇ, ଝଂଜାର ପ୍ରଳୟଙ୍କରୀ ବିଶ୍ରୁତିକା ଶିକ୍ଷିତ ଅନ୍ଧ ତୁଷାରକାନ୍ତର ସ୍ତ୍ରୀ କ୍ଷଣପ୍ରଭା ପ୍ରତି ଦେଶବ୍ରତୀ ଦୁଷ୍ମନ୍ତର ବ୍ୟକ୍ତିତ୍ୱ ହୋଇଛି ଆସକ୍ତ । 'ପରକୀୟା'ଉପନ୍ୟାସରେ ପରକୀୟା ପ୍ରୀତିର ଭୟଙ୍କର କରୁଣ ପରିଣତି ସ୍ୱରୂପ ସ୍ୱାମୀ 'ବୃନ୍ଦାବନ' ଓ 'ଘନଭାଇ'ଙ୍କୁ ନେଇ 'ସରସୀ' ସୁସ୍ଥ ସମାଧାନ କରିଛି । କାହ୍ନୁଚରଣଙ୍କ ଅଧିକାଂଶ ଉପନ୍ୟାସ ଦେହ ପାଇଁ ମନର ଦ୍ୱନ୍ଦ୍ୱ ଓ ଫ୍ରୟେଡ଼ୀୟ ଚିନ୍ତା ଚେତନାର ପରିସରଭୁକ୍ତ । ପରବର୍ତ୍ତୀ କାଳରେ ମଣିଷ ସଭ୍ୟତା ଓ ଜାତିକୁ ନେଇ ଲେଖକ ସାମ୍ୟବାଦର ସ୍ୱରରେ ମଗ୍ନ ହୋଇଛନ୍ତି । ଜୀବନ ପ୍ରତି ପ୍ରକୃଷ୍ଟ ପ୍ରତିଚ୍ଛବି କଥାକାର କାହ୍ନୁଚରଣଙ୍କ କଥା ସାହିତ୍ୟର ଏକ ସମୁଜ୍ଜ୍ୱଳ ସ୍ୱାକ୍ଷର ବହନ କରିଥାଏ ।

ଉପନ୍ୟାସ କ୍ଷେତ୍ରରେ କାହ୍ନୁଚରଣଙ୍କ ଭଳି ଆଗନ୍ତୁକ ନିରବଚ୍ଛିନ୍ନ ଭାବେ ସଂଗ୍ରାମୀ । ଛଅଟି ଉପନ୍ୟାସକୁ କେନ୍ଦ୍ର କରି କାହ୍ନୁଚରଣଙ୍କ ସମଗ୍ର ଜୀବନର କଳାକୃତିକୁ ବିଗ୍ଭର କରାଯାଇପାରେ । ସେଗୁଡ଼ିକ ଯଥାକ୍ରମେ 'ବାଲିରଜା', 'ହା-ଅନ୍ନ', 'ଲୁଣ୍ଡିବାଇଡ', 'ଶାସ୍ତି', 'ଝଂଜା' ଓ 'ସତ୍ୟବତୀ' । କେତୋଟି ଉପନ୍ୟାସ ରଙ୍ଗମଞ୍ଚରେ ଓ ସିନେମାର ପରଦା ତଳେ ସାଫଲ୍ୟର ସହିତ ନାଟକୀୟ କୃତି ଅର୍ଜନ କରିପାରିଛି । ଔପନ୍ୟାସିକ କାହ୍ନୁଚରଣ କେବଳ ଜଣେ ଚମକପ୍ରଦ—କଥା ନିର୍ମିତା ନୁହନ୍ତି ସେ ମଧ୍ୟ ମନନଶୀଳ ଦ୍ରଷ୍ଟା ଓ ହୃଦୟାନୁଭୂତିକୁ କଳ ପୂର୍ଣ୍ଣ ଭାବରେ ବର୍ଣ୍ଣନାର ସ୍ରଷ୍ଟା । ପ୍ରାଚୀନ ଓଡ଼ିଶାର ନୌ-ବାଣିଜ୍ୟ ସ୍ମୃତିକୁ ଉପଜୀବ୍ୟ କରି କଥାକାର 'ବାଲିରଜା' ଉପନ୍ୟାସଟି ରଚନା କରିଛନ୍ତି । ଚରିତ୍ରଗୁଡ଼ିକ କାଳ୍ପନିକ । ସୁପ୍ରାଚୀନ କଳିଙ୍ଗ ଦେଶର ସାଧବମାନେ ସମୁଦ୍ର ଲହରୀ କାଟି, ସୁଦୂର ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ବାଲି ପ୍ରଭୃତିରେ ବାଣିଜ୍ୟ ସମ୍ବନ୍ଧ ସ୍ଥାପନ କରୁଥିଲେ ।

---

(୬) ଓଡ଼ିଆ ସାହିତ୍ୟର କ୍ରମବିକାଶ (ପୃ୪୯୬) ସୁରେନ୍ଦ୍ର ମହାନ୍ତି ।

Digitized by srujanika@gmail.com

ଓଡ଼ିଆ ଜାତୀୟବାଦର ସ୍ୱରକୁ ଔପନ୍ୟାସିକ ତାଙ୍କ ଉପନ୍ୟାସରେ ଉପସ୍ଥାପିତ କରି ପାରିଛନ୍ତି । ନ'ଅଙ୍କ ଦୁର୍ଭିକ୍ଷର କରାଳଚିତ୍ର ଓ ତତ୍କାଳୀନ ସାମାଜିକ ଜୀବନର ଅଧଃପତନକୁ ନେଇ 'ହା-ଅନ୍ନ'ର ସ୍ୱାତନ୍ତ୍ର୍ୟ ସୃଷ୍ଟି ହୋଇଛି । "ହା-ଅନ୍ନରେ କାହ୍ନୁଚରଣ ଲିପିବଦ୍ଧ କରିଛନ୍ତି ସେହି ନରମେଧ ଯଜ୍ଞର କରୁଣ ଇତିହାସ ।"(୭) ନାୟିକା ଉମା ପେଟର ଦାଉ ସମ୍ଭାଳି ନପାରି ନିଜ ସ୍ୱାମୀ ଜଗୁକୁ ପ୍ରତ୍ୟାଖ୍ୟାନ କରି ମଠ ମହନ୍ତ ପାଖରେ ଆଶ୍ରୟ ନେଇଛି । ମହନ୍ତଙ୍କ ନିକଟରେ ଉମା ଯେତେବେଳେ ନୂତନ ସ୍ୱପ୍ନରେ ବିଭୋର, ସେତେବେଳେ ମୁମୂର୍ଷୁ 'ଜଗୁ'କୁ ଅସ୍ୱୀକାର କରି ବସିଛି ।

ମଣିଷର ଜୀବନ ଚରିତ୍ରକୁ ଉପନ୍ୟାସରେ ଆଦର୍ଶ କରି ନୀତିନିଷ୍ଠତାର ସ୍ୱର ଦେଇଛନ୍ତି କାହ୍ନୁଚରଣ । ଶୋଷଣ, ବର୍ଣ୍ଣ ଓ ଶ୍ରେଣୀହୀନ ସମାଜର ପରିକଳ୍ପନା କାହ୍ନୁଚରଣଙ୍କ ଉପନ୍ୟାସରେ ସୁସ୍ପଷ୍ଟ । ବିଷୟ ନିର୍ବାଚନ ଓ ଚରିତ୍ରଚିତ୍ରଣ କ୍ଷେତ୍ରରେ ଔପନ୍ୟାସିକଙ୍କର ସୁଦୂରପ୍ରସାରୀ ଚିନ୍ତାଧାରା ହୋଇ ପାରିଛି ଅତ୍ୟନ୍ତ ବ୍ୟାପକ । ଦୁର୍ଭିକ୍ଷର କରାଳ ଗଣ୍ଡି ଭିତରୁ ଖସି ଆସିଥିବା ଜନ ଜୀବନ ପାଇଛନ୍ତି ଶାନ୍ତି । ଧ୍ୱଂସର ତାଣ୍ଡବଲୀଳାରୁ ଓହରି ଆସି ଆଶ୍ୱସ୍ତିରେ ନିଃଶ୍ୱାସ ମାରି ପାରିନାହାନ୍ତି-- ସେ ଯୁଗର ମଣିଷ । ଶାନ୍ତି ପାଇ ସାମାଜିକ ଜୀବନ ହୁଏ ଦୁର୍ବିସହ ଓ ତାପଦଗ୍ଧ । ପଲ୍ଲୀ ଜୀବନଯାତ୍ରା ହୁଏ ବିଶୃଙ୍ଖଳ ଓ ଗଣଜୀବନ ହୁଏ ସ୍ୱାର୍ଥପର ସଂକୀର୍ଣ୍ଣତାର ଜଡ଼ିତ । ଶାନ୍ତିରେ 'ଧୋବୀ' ଓ 'ସନେଇ' ମିଳନକୁ ରକ୍ଷଣଶୀଳ ସମାଜ ଦେଇଛି ଶାନ୍ତି । ନିରବଚ୍ଛିନ୍ନ ଭାବେ ଭାଗ୍ୟଦେବୀ ସହିତ ସଂଗ୍ରାମ କରି ଏମାନେ ହୋଇଛନ୍ତି ପରାସ୍ତ । ଉପନ୍ୟାସର ମୁଖ୍ୟ ନାୟିକା ପାଇଛି ମର୍ମାନ୍ତିକ ଶାନ୍ତି ।

ଝଞ୍ଜାର ପରିକଳ୍ପନା ମୂଳରେ କାହ୍ନୁଚରଣ ଆଧୁନିକତା ଆଡ଼କୁ ହୋଇଛନ୍ତି ଅଗ୍ରସର । ଝଞ୍ଜାର ପ୍ରଳୟଙ୍କରୀ ବନ୍ୟା ଭିତରେ ଆଧୁନିକ ଶିକ୍ଷିତ ଯୁବକ ତୁଷାରକାନ୍ତର ଜୀବନ ହୋଇଛି ଅଭିଶପ୍ତ । ଯାନ୍ତ୍ରିକ ସଭ୍ୟତାର ଉତ୍କଟତା ଅନୁଭବ କଲା ପରେ ହୁଏତ ଔପନ୍ୟାସିକ ଏହି ବାର୍ତ୍ତା ପ୍ରଚାର କରିବାକୁ ସମର୍ଥ ହୋଇଛନ୍ତି । 'କ୍ଷଣପ୍ରଭା' ପରି ନିର୍ବାଚନରେ ଦୁର୍ମନ୍ତ ହାତ ଧରିଥିଲେ ହୁଏତ ଦୁର୍ଭାଗ୍ୟର ଶିକାର ହୋଇ ନ ଥାନ୍ତା । ବୈବାହିକ ଜୀବନ ଆରମ୍ଭରୁ ଦାରିଦ୍ର୍ୟର କଷାଘାତରେ ସେ ହୋଇନଥାନ୍ତା ଜର୍ଜରିତା ।

ତତ୍କାଳୀନ ସମାଜରେ ବିଧବା ନାରୀ ଜୀବନର ପ୍ରେମର କରୁଣ ପରିଣତି 'ଋଣ୍ଡିବାଇଦ' ଉପନ୍ୟାସରେ ସହସ୍ର କୋଣକୁ ବ୍ୟାପି ଯାଇଛି । "ବିଧବା

(୭) ସମାଲୋଚନାର ଦିଗ-ଦିଗନ୍ତ-୨ (୧୯୮୨) ଡଃ ଖଗେଶ୍ୱର ମହାପାତ୍ର

Digitized by srujanika@gmail.com

ତୁଳସୀର ଦ୍ୱିତୀୟ ବିବାହଜନିତ ସମସ୍ୟା ଓ ସେ କପରି ବନ୍ଧୁ ବ୍ୟକ୍ତିଙ୍କ ଲାଳସାର ପାତ୍ରୀ ସାଜିଚି ତାହା 'ଭୁଣ୍ଡିବାଇଦ' ଉପନ୍ୟାସରେ ବର୍ଣ୍ଣିତ ।"(୮)ତୁଳସୀର ପ୍ରଥମ ପରିଚୟ ସେ ନାରୀ,ଆଦିମ ପିପାସା ତା'ର ନାରୀ ମନ ସୂର ପ୍ରତି ଅନୁରାଗର ଲହରୀ ସୃଷ୍ଟିଚି । ତୁଳସୀ ମନ ଆନନ୍ଦରେ ବିଭୋର ହୋଇ ଉଠିଚି । କିନ୍ତୁ ତୁଳସୀର ଯୌନ ଲାଳସା ସଂସ୍କାର ଚେତନ ମନକୁ କରିଚି ପ୍ରତିରୋଧ ।

'ସତ୍ୟବତୀ' (୧୯୮୦) ପୌରାଣିକ ନାରୀ । ତା'ର ମନସ୍ତାତ୍ତ୍ୱିକ କ୍ରିୟା-ପ୍ରତିକ୍ରିୟାକୁ ନେଇ ଉପନ୍ୟାସଟି ଗତିଶୀଳ । ବିଭିନ୍ନ ପ୍ରଲୋଭନଧର୍ମୀ ପରୀକ୍ଷା ନିରୀକ୍ଷା ଭିତରେ ସତ୍ୟବତୀ ହୋଇଚି ଉତ୍ତୀର୍ଣ୍ଣା । ପାଠକର ଅବଚେତନ ମନକୁ ନାରୀ ହୃଦୟର ଅତି ନିଗୂଢ଼ ରହସ୍ୟବୋଧ ବିଶ୍ଳେଷଣ ଏ କ୍ଷେତ୍ରରେ ଔପନ୍ୟାସିକ କରି ପାରିଚନ୍ତି । କଥାକାର କାହ୍ନୁଚରଣ ପୁରାଣ କ୍ଷେତ୍ରରୁ ସତ୍ୟବତୀର ଚରିତ୍ରକୁ ନିର୍ବାଚନ କରିଚନ୍ତି । କଥାବସ୍ତୁର ଗତି ଆଧୁନିକ ସଭ୍ୟତା ଆଡ଼କୁ ମୁଣ୍ଡ ଟେକି ପୌରାଣିକ ମିଥ୍ କଳ୍ପନାର ସ୍ୱାଦକୁ କରିଚି ଉଦ୍ରେକ । ମହାଭାରତୀୟ ଉପାଦାନରୁ କାହ୍ନୁଚରଣ ବିଷୟବସ୍ତୁର ଭାବକଳ୍ପନା ହୋଇପାରିଚି ହୃଦୟଗ୍ରାହୀ । ପୌରାଣିକ କଥା-ବସ୍ତୁକୁ ଏଭଳି ଭାବେ ଆଧୁନିକତାର ସ୍ପର୍ଶ ଦେଇ ଔପନ୍ୟାସିକ ଅତି ସଫଳ ଭାବେ ପ୍ରତିଷ୍ଠା କରି ପାରିଛନ୍ତି ।

କାହ୍ନୁଚରଣ ୧୯୨୫ ସାଲରୁ ଏ ଅବଧି ଅନବରତ ଲେଖନୀ ଚାଳନା କରି ଓଡ଼ିଆ ଉପନ୍ୟାସ ସାହିତ୍ୟକୁ ସମୃଦ୍ଧିବନ୍ତ କରିପାରିଛନ୍ତି । ବିଗତ ଛାତ୍ରଜୀବନରୁ ଜଣେ ସଫଳ ସ୍ରଷ୍ଟାଭାବେ ଏକଥା ତାଙ୍କର କବି ହୃଦୟର ପ୍ରଥମ ଉଦ୍ଦାମତାରୁ ଜଣା ପଡ଼ିଥିଲା । ଜୀବନ କାଳରେ ସରକାରୀ ଉଚ୍ଚପଦବୀରେ ରହି ମଧ୍ୟ ନିଜ ମାତୃ-ଭାଷାର ସେବାରେ ଅକ୍ଳାନ୍ତ ଉଦ୍ୟମ କରି ନିଜ ସାଧନାକୁ ବଞ୍ଚାଇ ରଖିପାରିଛନ୍ତି । 'ହା' (୧୯୬୭) କାହ୍ନୁଚରଣଙ୍କ ଔପନ୍ୟାସିକ ପ୍ରତିଭାକୁ ସର୍ବଭାରତୀୟ ସ୍ତରରେ ଗର୍ବ ଆଉ ଗୌରବର ସାମଗ୍ରୀ ଭାବେ ପ୍ରତିଷ୍ଠା କରିବାର ସୂଚନା ଦେଇଥିଲା । ୯୬୯ରେ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇ ଓଡ଼ିଆ ଉପନ୍ୟାସ ରଚନାର ଦ୍ୱିତୀୟ ପର୍ଯ୍ୟାୟରୁ ଅର୍ଥାତ୍ ଫକୀରମୋହନଙ୍କ ପରବର୍ତ୍ତୀ କାଳରୁ ସ୍ୱକୀୟ ଲେଖନୀରେ କାହ୍ନୁଚରଣ ଉପନ୍ୟାସ ଜଗତକୁ କରିପାରିଛନ୍ତି ବର୍ଣ୍ଣୋଜ୍ଜ୍ୱଳ । "ପ୍ରଥମ ମହାସମର ଉତ୍ତରରେ ପୃଥିବୀରେ ଘୋର ପରିବର୍ତ୍ତନ ଘଟିଥିଲା । × × × ପ୍ରାକ୍ କାଳରେ ୧୯୨୭ ମସିହାରୁ କାହ୍ନୁ ମହାନ୍ତି ଓଡ଼ିଆ ଉପନ୍ୟାସର ସୁପ୍ତି ଭାଙ୍ଗିଛନ୍ତି ।"(୯) ମାନସିଂଙ୍କ ଭାଷାରେ କାହ୍ନୁଚରଣଙ୍କ ଲେଖନୀ ଅଧିକ ଫଳପ୍ରସୂ ଭାବେ ଉପନ୍ୟାସ ସାହିତ୍ୟରେ ପ୍ରତିଷ୍ଠା ଅର୍ଜନ କରିପାରିଚି । "ମାନସିଂହଙ୍କ

(୮) ଆଧୁନିକ ଓଡ଼ିଆ ସାହିତ୍ୟ—ଡଃ ଜାନକୀବଲ୍ଲଭ ମହାନ୍ତି (ପୃ-୧୬୦)

(୯) ଓଡ଼ିଆ ସାହିତ୍ୟର ଇତିହାସ —ପଣ୍ଡିତ ବିନାୟକ ମିଶ୍ର

Digitized by srujanika@gmail.com

ଉପନ୍ୟାସ ଅପେକ୍ଷା ବଡ଼ ଗଳ୍ପ କାହ୍ନୁଚରଣଙ୍କ ଉପନ୍ୟାସର ତଳାର ସ୍ୱଳ୍ପତା ମଧ୍ୟ ଯଥେଷ୍ଟ ବେଶୀ ।" (୧୦) ଔପନ୍ୟାସିକ କାହ୍ନୁଚରଣଙ୍କ ଲେଖାରେ ରୂପାୟିତ ସମସ୍ତ ଚରିତ୍ର ପ୍ରାୟତଃ ଶାଶ୍ୱତ ନାରୀର ସୂକ୍ଷ୍ମଜନ୍ମକୁ ପ୍ରତିଷ୍ଠା କରିବା ଦିଗରେ କାହ୍ନୁଚରଣଙ୍କର ଅବଦାନ ଅଗ୍ରଗଣ୍ୟ । ଓଡ଼ିଶାର ଅବହେଳିତ ଜନତାର ଜୀବନ ଚରିତ୍ରକୁ ନେଇ କାହ୍ନୁଚରଣ ବାସ୍ତବତାର ଯେଉଁ ପ୍ରଲେପ ଦେଇଛନ୍ତି ତାହା ଏକାନ୍ତ ପ୍ରଣିଧାନଯୋଗ୍ୟ । "କାହ୍ନୁବାବୁ ସମସାମୟିକ ସମାଜକୁ ଗଭୀର ଭାବରେ ଅନୁଶୀଳନ କରି ତାକୁ ହିଁ କେବଳ ଚରିତ୍ର ମାଧ୍ୟମରେ ଉପନ୍ୟାସରେ ରୂପାୟିତ କରିଛନ୍ତି ।" (୧୧)

କାହ୍ନୁଚରଣ ଉପନ୍ୟାସର କଥା ମାଳ ଓଡ଼ିଆ ମାଟିକୁ ସଂଶ୍ଳିଷ୍ଟ କରି ମୌଳିକ କଳ୍ପନା ପ୍ରବଣତା ଦ୍ୱାରା କରି ପାରିଛନ୍ତି ବାସ୍ତବ । ତାଙ୍କ କଥାଶିଳ୍ପ ସବୁ ବିଭିନ୍ନ ପ୍ରୟୋଗବାଦୀ ପରୀକ୍ଷା ନିରୀକ୍ଷା ଦ୍ୱାରା ଚିହ୍ନିତ । କଥାଶିଳ୍ପରେ ନବାଗତ ଶବ୍ଦାବଳୀ ଗୁଡ଼ିକ ଗାଉଁଲି ହେଲେହେଁ ସାହିତ୍ୟର ଉତ୍ତରଣ କ୍ଷେତ୍ରରେ ହୋଇ-ପାରିଛି ଜୀବନ ଭିତ୍ତିକ । ପରିଶେଷରେ ସମାଲୋଚକ ଡଃ ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ମତକୁ ଉଦ୍ଧାର କରି ଏତିକି କୁହାଯାଇପାରେ ଯେ—"କାହ୍ନୁବାବୁଙ୍କ ଉପନ୍ୟାସର ପରିବେଶ ବିଷୟରେ ଆଉ ଗୋଟିଏ କଥା ପ୍ରତି ଦୃଷ୍ଟି ଦେବାକୁ ପଡ଼ିବ । ତାଙ୍କର ଔପନ୍ୟାସିକ ଜୀବନ ଦୀର୍ଘ ସମୟବ୍ୟାପୀ ଏବଂ ଏ ପର୍ଯ୍ୟନ୍ତ ସୁଦ୍ଧା ସେ ଉପନ୍ୟାସ ସୃଷ୍ଟିରେ ବ୍ୟାପୃତ ଅଛନ୍ତି । ତେଣୁ ତାଙ୍କର ସମସ୍ତ ଉପନ୍ୟାସରେ କେତେକ ମୁଖ୍ୟ ପ୍ରବୃତ୍ତି ଓ ନିର୍ଦ୍ଦିଷ୍ଟ ଦୃଷ୍ଟିଭଙ୍ଗୀର ସୂଚନା ମିଳୁଥିଲେ ସୁଦ୍ଧା ପରବର୍ତ୍ତୀ ଉପନ୍ୟାସ ଗୁଡ଼ିକ ଅପେକ୍ଷାକୃତ ଭାବରେ ଅଧିକ ସମସ୍ୟାମୂଳକ । ଏଗୁଡ଼ିକ ବର୍ତ୍ତମାନ ସମାଜ ଜୀବନର ଯେତେ ସ୍ପଷ୍ଟ ପ୍ରତିଛବି ଦେଖିବାକୁ ମିଳିବ, ପ୍ରଥମ ଗୁଡ଼ିକରେ ସେ ପରିମାଣରେ ମିଳି ନ ପାରେ । ତେବେ ଔପନ୍ୟାସିକଙ୍କ ସମସ୍ତ ଜୀବନ କାଳକୁ ଗୋଟିଏ ଉପନ୍ୟାସରୂପେ ଗ୍ରହଣ କଲେ ପରବର୍ତ୍ତୀ ଉପନ୍ୟାସର ଦୃଷ୍ଟିକୋଣ ସେ ଯୁକ୍ତିଯୁକ୍ତ ଭାବେ ପୂର୍ବବର୍ତ୍ତୀ ଦୃଷ୍ଟିକୋଣର ପରିଣାମ (Logical Conclusion) ଏଥିରେ ବୋଧହୁଏ ଅମତ ହେବାର କିଛି ନାହିଁ ।" (୧୨)

●

ଓଡ଼ିଆ ଭାଷା ଓ ଗବେଷଣା ବିଭାଗ
ବିଶ୍ୱଭାରତୀ/ଶାନ୍ତିନିକେତନ, ୭୩୧୨୩୫

---

(୧୦) ଓଡ଼ିଆ ସାହିତ୍ୟର ଇତିହାସ—ଡଃ ମାୟାଧର ମାନସିଂ
(୧୧) ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ—ଡଃ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ
(୧୨) ସାହିତ୍ୟ ଭାଷା (୧୯୬୫)—ଡଃ ଦେବୀପ୍ରସନ୍ନ ପଟ୍ଟନାୟକ ।

Digitized by srujanika@gmail.com

# କାହ୍ନୁଚରଣ ଗଳ୍ପ-ମାନସ

**ଅଧ୍ୟାପକ ଭୁବନାନନ୍ଦ ସାହୁ**

୧୯୬୩ ସାଲରେ ଏଇ କଟକ ସହରରେ ମୁଁ ଥିଲି ପି. ଏମ୍. ଏକାଡେମୀର ଏକ'ଦଶ ଶ୍ରେଣୀର ଛାତ୍ର । ସେହି ଛାତ୍ର ଜୀବନରେ ଫକୀର ମୋହନ ସେନାପତି ଓ ଚନ୍ଦ୍ରମଣି ମହାନ୍ତିଙ୍କର କେତେଖଣ୍ଡି ଉପନ୍ୟାସ ମୁଁ ପଢ଼ିଥିଲି । ଇଂରେଜୀ ଭାଷାରେ ଶ୍ରେଷ୍ଠବଡ଼ ଗଳ୍ପ, ରୋମାନ୍ସ ଓ ଉପନ୍ୟାସ ମଧ୍ୟ ପଢ଼ିଥିଲି । ମାସିକ ପତ୍ରିକା 'ମୁକୁର' ଓ 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ହେଉଥିବା କ୍ଷୁଦ୍ରଗଳ୍ପ ଗୁଡ଼ିକ ମଧ୍ୟ ପଢ଼ୁଥିଲି । ସେ ସବୁ ମୋ ଉପରେ କପରି ପ୍ରଭାବ ପକାଇଥିଲା ମୋର ଠିକ୍ ମନେ-ନାହିଁ । କିନ୍ତୁ ଏତିକ ମନେ ଅଛି ଯେ ସେ ଗୁଡ଼ିକ ପଢ଼ି ଗଳ୍ପଲେଖି ଲେଖକ ବୋଲି ପରିଚିତ ହେବାକୁ ମୋର ଆଗ୍ରହ ଜନ୍ମିଥିଲା ।

(କାହ୍ନୁଚରଣ-ଉପନ୍ୟାସ ସାହିତ୍ୟ/ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ '୧୯୬୯, ପୃଷ୍ଠା-୩, କଟକ)

ସ୍ରଷ୍ଟା କାହ୍ନୁଚରଣ ହାଇସ୍କୁଲରେ ଛାତ୍ର ଥିବାବେଳୁ ହିଁ ଗଳ୍ପ-ଉପନ୍ୟାସ ରଚନାରେ ମନୋନିବେଶ କରନ୍ତି । ଔପନ୍ୟାସିକ କାହ୍ନୁଚରଣ ଓଡ଼ିଆ ସାହିତ୍ୟରେ ଫକୀର ମୋହନଙ୍କ ଉତ୍ତର କାଳର ସର୍ବଶ୍ରେଷ୍ଠ ବନ୍ଧାଣୀ । ଉପନ୍ୟାସ ରଚନା କରି ଖ୍ୟାତି ଅର୍ଜିବା ପୂର୍ବରୁ ସେ ସୃଷ୍ଟି କରିଥିଲେ କ୍ଷୁଦ୍ର ଗଳ୍ପମାନ ।

ସ୍ରଷ୍ଟାର ବ୍ୟକ୍ତିସତ୍ତା ଏକ ଓ ଅଭିନ୍ନ । ଯେଉଁ କାହ୍ନୁଚରଣ ମାନବବାଦୀ ଶିଳ୍ପୀଭାବରେ ଗାନ୍ଧିଜୀଙ୍କ ପ୍ରବର୍ତ୍ତିତ ଅହିଂସା ମାର୍ଗର ଅନୁସରଣରେ ଏକ ଶ୍ରେଣୀହୀନ ସମାଜର କଳ୍ପନା କରିଥିଲେ, ରାମରାଜ୍ୟ ଗଠନର ସ୍ୱପ୍ନ ଯାହାଙ୍କ ଲେଖନୀର ଥିଲା ପ୍ରଧାନତମ ଉଦ୍ଦେଶ୍ୟ; ଗଳ୍ପରଚନା କ୍ଷେତ୍ରରେ ମଧ୍ୟ ସେହି ସମାନ ଆଦର୍ଶ ତାଙ୍କ ଦ୍ୱାରା ଅନୁସୃତ ହୋଇଥିଲା । ତେଣୁ ଧନୀଆର ଶୋଷଣମୁକ୍ତ ସମାଜ ଗଠନ ବା ବଳୁବାବୁର ବୈପ୍ଳବିକ ସମାଜ ସଂଗଠନ ଉମା, ଧୋବା, ନନ୍ଦିକା, ଗୀତା, ସୁଶୀଳା ମାୟା, ମଣିଆ, ତୁଷାରକାନ୍ତ, ଜଗୁ, ଅମିୟ ମଣ୍ଡଳ ପରି ନାରୀ ଓ ପୁରୁଷ ଚରିତ୍ରର ମୁଖ୍ୟ ଉଦ୍ଦେଶ୍ୟ ବୋଲି ବୁଝାଯାଇପାରିବ । ଜାତିପ୍ରଥା ଓ ସାମାଜିକ ବିଭେଦ ସ୍ୱାର୍ଥପର ମଣିଷର ଭିଆଣ । କାହ୍ନୁଚରଣ ତରୁଣ ତରୁଣୀଙ୍କ ଅନ୍ତରର ନିବିଡ଼ତମ ପ୍ରଦେଶରୁ ସେଇ ଗୋଟିଏ ଆହ୍ୱାନର ବାଣୀ ଶୁଣାଇଛନ୍ତି । ଦୁନିଆରେ ବଞ୍ଚି ରହିବ

Digitized by srujanika@gmail.com

ଗେ ହିଁ ଏ ଧର୍ମ—ମାନବିକତା, ଗୋଷ୍ଠିଏ ସମାଜ—ଶ୍ରେଣୀହୀନ ମାନବ ସମାଜ । କ୍ଷୁଦ୍ର ଗଳ୍ପର ପ୍ରତି ଛତ୍ରେ ଛତ୍ରେ ଏହି ଆଦର୍ଶର ବାଣୀ ପ୍ରକଟିତ ହୋଇଥିଛି ।

ପ୍ରତିଭା ଜନ୍ମଗତ (inborn)ସହଜାତ ଗୁଣ । ସ୍କୁଲ ଛାତ୍ର କାହ୍ନୁଚରଣ ପ୍ରଥମେ କବିତା ଓ ଗଳ୍ପ ଲେଖି ବସନ୍ତି । କାହ୍ନୁଚରଣ ସେ ସମ୍ପର୍କରେ ଲେଖିଛନ୍ତି—

'ମୋର ଗଳ୍ପ 'ସାହିତ୍ୟ-ସୋପାନ'ର ସଂପାଦକ ନାପସନ୍ଦ କରି ମୋତେ ବାରମ୍ବାର ଫେରାଇ ଦେଲେ । ଥରେ ମୁଁ ତାଙ୍କୁ ପଚାରିଲି-କାହିଁକି ମୋ ଗଳ୍ପ ପ୍ରକାଶିତ ହେଉନାହିଁ ? ସେ (ବାଳ କୃଷ୍ଣ ମହାପାତ୍ର-ଇତିହାସ ଶିକ୍ଷକ) କହିଲେ, ତୁମର ଗଳ୍ପ ଭଲ ହେଉନାହିଁ, ତୁମେ କବିତାହିଁ ଲେଖ । ମୁଁ ହତାଶ ହେଲି, ଲଜ୍ଜିତ ହେଲି ।

ମୋ ମନରେ ପ୍ରଚ୍ଛନ୍ନ ବିଦ୍ରୋହ ଜାଗିଲା । ମୁଁ ଆଉ କବିତା ଲେଖିଲି ନାହିଁ; ମୁଁ ଗଳ୍ପ ହିଁ ଲେଖିଲି ।'

(ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ, ୧୯୬୯ ପୃ. ୩/୪)।

କାହ୍ନୁଚରଣ ସେହି ଛାତ୍ର ଜୀବନରୁ ଅଭାବର ତୀବ୍ର କଷାଘାତରେ ଅଟକି ଯାଇ ନଥିଲେ । ଦେଢ଼ ବର୍ଷର ଉପର ଭାଇ (ତାଙ୍କ ନାମ ଧୂଳି)ଙ୍କ ସହିତ ନିଜ ଗାଁ ନାଗବାଲିରୁ କଟକର ପ୍ୟାରୀମୋହନ ଏକାଡ଼େମୀ ପର୍ଯ୍ୟନ୍ତ ସାତ ମାଇଲ ବାଟ ଚାଲି ଚାଲି ସେ ପାଠ ପଢ଼ିବାକୁ ବାଧ୍ୟ ହେଉଥିଲେ ଭୋକିଲା ପେଟରେ । ସେଥିପାଇଁ ବୋଧହୁଏ ତାଙ୍କ ଗଳ୍ପରେ ସାଧାରଣ ଦୀନ ଦରିଦ୍ର ପାଇଁ ବେଦନାବୋଧ ପ୍ରକଟିତ ହୋଇଥିଛି । ପୁଣି ଆବଶ୍ୟକ ସ୍ଥଳେ ସେ ହୃଦୟର ଆବେଗକୁ କଳ୍ପନା ତୂଳିରେ ରଙ୍ଗାଇଛନ୍ତି ଆପଣାର ରୋମାଣ୍ଟିକ୍ ଭାବବୃତ୍ତି ଦେଇ । ପ୍ରେମର ସ୍ୱର୍ଗୀୟ ସୁଷମା ମାନବ ପ୍ରାଣରେ ଚମକ ଖେଳାଇ ଦେଇଥାଏ । ବାସ୍ତବମୁଖୀ ଚିନ୍ତାର ଅଭିନବ ମାଧୁରୀ କାହ୍ନୁଚରଣଙ୍କ ଗଳ୍ପ-ଉପନ୍ୟାସରେ ସେଥିପାଇଁ ବ୍ୟକ୍ତି ଜୀବନର ସୁଖ-ଦୁଃଖ, ଆନନ୍ଦ ବିଷାଦକୁ ନେଇ ପ୍ରକାଶିତ ହୋଇଥିଛି ।

କାହ୍ନୁଚରଣଙ୍କ ଶିଳ୍ପଜଗତ ବାସ୍ତବବାଦୀ ଚେତନାରେ ସମୃଦ୍ଧ । ସେଥିପାଇଁ ତାଙ୍କ ଗ୍ରାମ୍ୟ ଚରିତ୍ରଗୁଡ଼ିକ ଜୀବନର ନିଚ୍ଛକ ସ୍ୱରୂପକୁ ଉନ୍ମୋଚନ କରିଥିଛି । Thomas Hodson ବାସ୍ତବବାଦର ସଂଜ୍ଞା ନିର୍ଦ୍ଦିଷ୍ଟ କରି ଲେଖିଛନ୍ତି—(Realism) refers to the subject matter of, as well as the technique by which literary work has been

Digitized by srujanika@gmail.com

created. In theory, the realist, wishing to record life as it is refrains from imposing a pre-determined pattern (based on philosophical orientation) upon his materials. He allows the story to tell itself, for truth, he feels, resides in thc events themselves." (A Reader's Guidc to Literary Terms, 1966, P. 179).
ବାସ୍ତବବାଦୀ ସାହିତ୍ୟିକ ଆଦର୍ଶକୁ ଅନ୍ୟ ଉପରେ ଲଦି ଦିଅନ୍ତି ନାହିଁ । ନିପୁଣ ସ୍ରଷ୍ଟା ବିଷୟବସ୍ତୁକୁ ଏପରି ଉପସ୍ଥାପନ କରନ୍ତି ଯେ ପ୍ରକୃତ ସମସ୍ୟା ଆପେ ଆପେ ଫୁଟି ଉଠେ । ଗଳ୍ପ ନିଜେ ନିଜର କଥା କହେ, କାରଣ ବିଷୟବସ୍ତୁରେ ହିଁ ପ୍ରକୃତ ସତ୍ୟ ନିହିତ ଥାଏ ।

କାହ୍ନୁଚରଣଙ୍କ 'ଆକାଶ କୁସୁମ' ଗଳ୍ପଶ୍ରେଣୀ ସଂଘର୍ଷର ମୌନରୂପ ପରିଗ୍ରହ କରିଅଛି । ଜଗଦୀଶ ବାବୁଙ୍କ ବଡ଼ କୋଠାଘର ନିକଟରେ ଗରିବ ଗନ୍ଧର୍ବର ଭଙ୍ଗା କୁଡ଼ିଆଟିଏ । କୁଡ଼ିଆର ଘର ପାଖର ବସ୍ତିଖଣ୍ଡ ଜମି ମଧ୍ୟ ସେହି ଜଗଦୀଶ ବାବୁଙ୍କର । ଭଙ୍ଗା କୁଡ଼ିଆ ଭିତରେ ପିତୃ-ମାତୃହୀନ ଗନ୍ଧର୍ବର ଭଉଣୀ ଚନ୍ଦ୍ର ବାସ କରେ—ତାର ସାତ ଛିଣ୍ଡା ଶାଢ଼ୀ ଭିତରୁ ରୂପର ଶୋଭା ଫୁଟିଉଠେ, ବଡ଼ଲୋକର ଝଲଝଲି କନ୍ୟାର ଲିପଷ୍ଟିକ୍ ବୋଳା ଓଠ ଓ କୃତ୍ରିମ ରୂପସଜ୍ଜାକୁ ଉପହାସ କରି । ଜଗଦୀଶ ବାବୁଙ୍କ ପୁଅ ଅନନ୍ତ ବଡ଼ଲୋକୀର ଚାକଚକ୍ୟ ସହ୍ୟ କରନ୍ତି ନାହିଁ । ଗାଳ୍ପିକ ବଡ଼ଲୋକୀର ମାନସ ଭୂମିକୁ ଅନନ୍ତଙ୍କ ମାଧ୍ୟମରେ ପ୍ରକାଶ କରି ଦେଇଛନ୍ତି—

'ଦୁଇ ଆଖିର ମିଳନ ହୋଇଛି ଅନେକ ଥର, ପ୍ରତିଦିନ । ଦୁଇଟା ମନ ଟାଣି ହୋଇ ଆସିଛି । ଆତ୍ମା ମିଳନ ଚାହିଁଛି । ବାଧା ଦେଇଛି ପରିସ୍ଥିତି, ସଭ୍ୟତା, ଆକାଶ କୁସୁମ ଚନ୍ଦ୍ରିକା ମାତ୍ର । ପଦଟିଏ କେହି କାହାକୁ ମୁହଁରେ କହି ନାହିଁ, ଥରଟିଏ କେହି ହସିବାକୁ ସାହସ କରି ନାହିଁ । ଇଙ୍ଗିତ, ସଙ୍କେତ ? ସେ ତ ଦୂରର କଥା !

ଆତ୍ମା ଚାହିଁଲା ଆତ୍ମାକୁ ।

ଅନନ୍ତ ଘର କବାଟ ବନ୍ଦ କରେ । ଚାହିଁ ରହେ ଚନ୍ଦ୍ରକୁ । ଚନ୍ଦ୍ର କାମ କରେ, ଅନାଏଁ ଅନନ୍ତକୁ । ଦୁଇଟା ମନ ମିଶି ଏକ ହୁଏ । ଦୁଇଟା ଦେହର ମଝିରେ କେତେ ବଡ଼ ବ୍ୟବଧାନ—ଦୋତାଲା କୋଠା, ଶିକ୍ଷା, ସମାଜ, ସଭ୍ୟତା, ଧନ !'

Digitized by srujanika@gmail.com

‘ଜୁଆର-ଭଟ୍ଟା’ ଗଳ୍ପରେ ଗାଳ୍ପିକ ଧନୀଙ୍କ କନ୍ୟା ସନ୍ଧ୍ୟା ଓ ଦରିଦ୍ର ଗୃହସ୍ଥର ସନ୍ତାନ ପ୍ରଶାନ୍ତ ଭିତରେ ବହୁ ଆବେଗପୂର୍ଣ୍ଣ ପ୍ରେମ ସମ୍ପର୍କ ସତ୍ତ୍ୱେ କିପରି ଧନୀ ଦରିଦ୍ରର ବ୍ୟବଧାନ ଯୋଗୁ ସମ୍ପର୍କ ଛିନ୍ନ ହୋଇ ଯାଇଛି, ତାହାର ଚମତ୍କାର ବିଶ୍ଳେଷଣ କରିଅଛନ୍ତି । ପ୍ରଶାନ୍ତର ପ୍ରଣୟ ଭଙ୍ଗ ସନ୍ଧ୍ୟା ପାଇଁ ସମାଜ ବିରୁଦ୍ଧରେ ବିଦ୍ରୋହ କରି ଉଠିଛି । ପ୍ରଶାନ୍ତ ଭାବିଅଛି—“ଦାରିଦ୍ର୍ୟର ବିରୁଦ୍ଧରେ କିପରି ଅଭିଯାନ କରିବି, ହୁଏତ ଧନୀ ହେବି ନୋହିଲେ ଧନୀଗୁଡ଼ାଙ୍କୁ ଟାଣି ଆଣିବି ଆମର ସ୍ଥାନକୁ ।”

କାହ୍ନୁଚରଣଙ୍କ ଗଳ୍ପରେ ସାମାଜିକ ସମସ୍ୟା ବଡ଼ ଚମତ୍କାର ଭାବରେ ଫୁଟି ଉଠିଛି । ‘ବଢ଼ିଆ’ ଗଳ୍ପରେ ଗ୍ରାମ୍ୟ ଜୀବନର ଭାଇଭାଗ ପ୍ରଥା—‘ଯେତେ ଭାଇ ସେତେ ଘର’ କଥା ପ୍ରତିପାଦିତ ହେବାକୁ ଗଲାବେଳେ ସେବକ ଚାକର ବଢ଼ିଆ ସାଆନ୍ତଙ୍କ ଦୁଇ ପୁଅ ନିତାଇ-ଗୌରଙ୍କ ଭୁଲ ଭାଙ୍ଗି ଦେଇଛି । ମୂଳିଆ ବଢେଇ ଓ ମାଲିକ ବନେଇଙ୍କ ଭିତରେ ଗଢି ଉଠିଥିବା ମଧୁର ସମ୍ପର୍କର ଧନୀ ଦରିଦ୍ରର ମଧୁର ସମନ୍ୱୟ । କାହ୍ନୁଚରଣ ଧନୀ ଦରିଦ୍ରର ପ୍ରାଚୀର ଉଠାଇ ଦେଇ ଏକ ସାମ୍ୟବାଦୀ ସମାଜର ପରିକଳ୍ପନା କରିଛନ୍ତି । ବନେଇଙ୍କୁ ବଢ଼ିଆ କାଖେଇ କୁଣ୍ଢେଇ ମଣିଷ କରିଥିଲା । ବନେଇ ବି ଥାଉଣୁ ସେଥିପାଇଁ ବିଶ୍ୱାସୀ ଭୃତ୍ୟକୁ କିଛି ଜମି ଦାନ କରିଦେବାକୁ ଇଚ୍ଛା ପୋଷଣ କରିଥିଲେ । ବଢ଼ିଆ ସାମାନ୍ୟ ବାଉରି ବା ଚାକର ନଥିଲା, ଥିଲା ଘରର ହିତାକାଙ୍କ୍ଷୀ । ତେଣୁ ବନେଇଙ୍କ ଦେହାନ୍ତ ପରେ ଦୁଇ ପୁଅଙ୍କ ମଝିରେ ଯେଉଁ ବାଡ଼ଟି ବସିବାକୁ ଯାଉଥିଲା, ତାହାକୁ ବୁଢ଼ା ବୟସରେ ବି ସେ ସହ୍ୟ କରି ପାରିନାହିଁ । ସେଥିପାଇଁ ରୋଗ ପାଣ୍ଡୁର ଦେହକୁ ନେଇ କଳିର ମୂଳ ସ୍ଥାନରେ ଦୁଇହାତ ଏକାଠି କରିବାକୁ ଗଲାବେଳେ ଅତ୍ୟନ୍ତ ଉତ୍ତେଜନାବଶତଃ ତାର ମୃତ୍ୟୁ ହେଲା । ଏହାହିଁ ଧନୀ-ଦରିଦ୍ରର ସମନ୍ୱୟ ।

କାହ୍ନୁଚରଣଙ୍କ ଗଳ୍ପରେ ଶ୍ରେଣୀ ସଂଘର୍ଷ ପ୍ରବଳ ନୁହେଁ । ଗାଳ୍ପିକ ଅନେକ ସମୟରେ ଚରିତ୍ରର ମନୋଜଗତରେ ତାହାକୁ ସୀମିତ କରିଅଛନ୍ତି । ଅବଶ୍ୟ ପାଠକମାନଙ୍କ ଚିତ୍ତରେ ଶ୍ରେଣୀ ଚେତନାର ଭାବରୂପଟି ପ୍ରଭାବ ପକାଇବାକୁ ସକ୍ଷମ ହୋଇଛି କେତେକ ସ୍ଥଳରେ । ଶ୍ରେଣୀ ସଂଘର୍ଷ ଅପେକ୍ଷା ଗାଳ୍ପିକ ଦରିଦ୍ର, ନିଃସହାୟ, ନିପୀଡ଼ିତ ମନୁଷ୍ୟ ପ୍ରତି ସମବେଦନା ଝରାଇଛନ୍ତି ଅନେକ । ‘ଗମୁଲୁ’ ଗଳ୍ପରେ ଗାଳ୍ପିକ ଏହି ଚେତନାକୁ ଅଧିକ ସୁସ୍ପଷ୍ଟ କରି ଦେଇଛନ୍ତି ! ଛେଉଣ୍ଟା ମଣିଷ ପିଲା ଗମୁଲୁ, ପିତୃ-ମାତୃହୀନ ସେ । ପେଟଟି ପୂରିଲେ ଅନ୍ୟ ଘରେ ପାଇଟି କରିବା ତା ଜୀବନରେ ନାହିଁ । କାହ୍ନୁଚରଣ ସହୃଦୟତାର ସହିତ ତାର କଥାକୁ ବର୍ଣ୍ଣନା କରିଅଛନ୍ତି—

Digitized by srujanika@gmail.com

ଚଉଦ ବର୍ଷର ଟୋକା ରମୁଲୁ । ଜଣେ ଉକିଲଙ୍କୁ ଛାଡ଼ି ଦୁଇ ଦିନ ହେଲା ବାହାରି ଆସିଛି । ପୁରା ମାସକର ଦରମା ବାରଟି ଟଙ୍କା ଅଛି ଅଣ୍ଟାରେ । ସେତିକି ନ ସରିବା ଯାଏ ନୂଆ ଘର ଅନ୍ୱେଷଣ କରିବା ଲୋଡ଼ା ପଡ଼ୁନାହିଁ । ଇଡ଼ଲି, ଚା, ପାନରେ ଅନ୍ତତଃ ବାର ପାଞ୍ଚ ଦିନ ସୁଖରେ କଟିବ । ରମୁଲୁ ଭାରି ଖୁସି । ରଜା ପୁଅକୁ ଖଜା ଖୋଇବାକୁ ସେ ପଛେଇବ ନାହିଁ ।

ଅନ୍ୟ ଏକ ଚରିତ୍ର ବଟୁବାସ୍ନା । ଦୁନିଆ ଛଡ଼ା ଲୋକଟି ସମସ୍ତଙ୍କୁ ସଲାମ କରେ ଓ ପଇସା ମାଗେ । ଲୋକେ ତା ବିଷୟରେ ନାନାପ୍ରକାର କଳ୍ପନା ଜଳ୍ପନା କରନ୍ତି । ଗୋଟିଏ ବାହୁଙ୍ଗିରେ ଦୁଇଟି ଟୋକେଇ ଦୁଇପଟେ ଲମ୍ବାଇ ତା'ର ସଂସାର ସହିତ ସେ ବୁଲୁଥାଏ । ଗାଳ୍ପିକଙ୍କ ଏହି ସମ୍ବେଦନଶୀଳ ଚିତ୍ତବୃତ୍ତି କେବଳ ମନୁଷ୍ୟ ଚରିତ୍ର ମଧ୍ୟରେ ସୀମିତ ରହି ନାହିଁ । ଆଧୁନିକ ଯନ୍ତ୍ରଯୁଗରେ ମଣିଷ ଆଉ ମଣିଷ ହୋଇ ରହିନାହିଁ । ମଣିଷ ଭିତରେ ଆଉ ଦେବତା ନାହିଁ । କେତେ ହିଂସ୍ର ଏ କଳାମୁଣ୍ଡିଆ ମଣିଷ ! 'ବୁଲି'ର ଜୀବନ କାହାଣୀ ଭିତରେ କୁକୁର ପ୍ରତି ଗାଳ୍ପିକଙ୍କ ସମ୍ବେଦନା ପ୍ରକାଶିତ ହୋଇଅଛି । ଗ୍ରାମର ପଶୁଟିଏ ବୁଲି···ଘୁଷୁରି,ଶାଗୁଣା,ମାଙ୍କଡ଼, ମୂଷା, ସମସ୍ତଙ୍କ ଜୀବନ ଧନ୍ୟ ଓ ସମସ୍ତେ ସୁଖୀ । ଅଥଚ କେତେ ଶ୍ୱାନମାନଙ୍କ ଜନ୍ମ କୁକୁରର····ମଣିଷମାନେ ମଜା କରିବାକୁ ଟେକା ଫୋପାଡ଼ନ୍ତି । ପାଳି ପୋଷି ଯାହାକୁ ମଣିଷ ରଖେ, ତାକୁ ସେ ହନ୍ତସନ୍ତ କରେ, ଜୀବନ ନିଏ । ମଣିଷର ଏ ନିର୍ଦ୍ଦୟ ବୃତ୍ତି ଦେଖି ଦେଖି ବୁଲି ହେଲା ପାଗଳ—କେବଳ ବାଛି ବାଛି କାମୁଡ଼ିଲା ମଣିଷଙ୍କୁ ।

କାହ୍ନୁଚରଣଙ୍କ ସାମାଜିକ ଗଳ୍ପ ଗୁଡ଼ିକରେ ଜୀବନର ବାସ୍ତବ ସମସ୍ୟା ଉଦ୍‌ଘାଟିତ ହୋଇଅଛି । 'କାଲି ଓ ଆଜି' ଗଳ୍ପରେ ସୁନ୍ଦରୀ ମାସ୍ଟ୍ରାର ଜୀବନକୁ ଗାଳ୍ପିକ ଆଧୁନିକ ବସ୍ତୁବାଦୀ ଦୃଷ୍ଟିକୋଣରୁ ବିଚାର କରିଅଛନ୍ତି । ରୂପସୀ ମାସ୍ଟ୍ରା ଥିଲା ଓକିଲ ସତ୍ୟପ୍ରିୟ, ପ୍ରଫେସର ରମାନାଥ, ସଙ୍ଗୀତଜ୍ଞ ଗଡ଼କୃଷ୍ଣଙ୍କ ଆଦରର ସାମଗ୍ରୀ । ତା ଆଖିର ଟିକିଏ କରୁଣା ସମସ୍ତଙ୍କର ଥିଲା ଧ୍ୟେୟ । ଅଥଚ ଲଙ୍ଗସ୍‌ରେ କି ଏକ ଦୁଃସାଧ୍ୟ ବ୍ୟାଧି ହେବାପରେ ମାସ୍ଟ୍ରାଠୁ ସଭିଏଁ ଦୂରେଇ ରହିଲେ । ମାସ୍ଟ୍ରା ଶୋକାତୁର ହୋଇ ପଡ଼ିଲା—"ବନ୍ଧୁ ବାନ୍ଧବ ଆତ୍ମୀୟ ସ୍ୱଜନ ଆଜି କାହାନ୍ତି ? କେହି ତ ପାଖକୁ ଆସୁ ନାହାନ୍ତି ? କାହାନ୍ତି ସତ୍ୟପ୍ରିୟ, ରମାନାଥ ଆଉ ଗଡ଼କୃଷ୍ଣ ଯେଉଁମାନେ ଦିନେ ତାଆରି ପାଖରେ ବସି ତାଆରି ଆଡ଼କୁ ଚାହିଁବାକୁ ତାଆରି ହସ ଦେଖିବାକୁ, କଥା ଶୁଣିବାକୁ ବେଳ ଅବେଳ ନ ମାନି ଧାଇଁ ଆସୁଥିଲେ । କେତେ ଆଦରେ, ଯେଉଁମାନେ କାଲି···"

Digitized by srujanika@gmail.com

ଏହାହିଁ ବାସ୍ତବ ଜୀବନ । ଦୁନିଆ ବଦଳିଯାଏ, ବାସ୍ତବତାକୁ ସମ୍ଭବେ ଆଦର କରନ୍ତି । ଭୁଲିଯା'ନ୍ତି ଜଣେ କବି ଏ ପୃଥିବୀରେ ଜନ୍ମ ନେଇଥିଲା ! ତଥାପି ଟିକିଏ ସମ୍ବେଦନା ପାଇଁ ମଣିଷ ଆଶାୟୀ ଆଖିରେ ଚାହିଁରହେ ଅନ୍ୟକୁ । ଇନ୍ସପେକ୍ଟର ଝିଅ, ବ୍ରହ୍ମପୁରର ବେହୁ ରାଧୀ···ସମସ୍ତେ ମଣିଷ ଜାଣିବା ପରେ 'ମୂର୍ତ୍ତି ସାହାଡ଼ା' ପରି ସେ କେବଳ ଚାହିଁ ରହିଛି ଦୁନିଆର ଏହି ପରିବର୍ତ୍ତନଶୀଳ ରୂପକୁ । ବିଧବା ଯା' ମୋଟକୁ ବିବାହ କରିଦେଇ ଦୂରରେ ଥାଇ ତା'ର ମଙ୍ଗଳ କାମନା କରେ···ମାତ୍ର ଯେଉଁ ଦିନ ସେ ମୋଟର ପୁଅ ଜଟିଆକୁ ଆଶୀର୍ବାଦ କରି ଫେରିଲା,ଠିକ୍ ପନ୍ଦର ଦିନ ପରେ ତା'ର ହେଲା ଅପମୃତ୍ୟୁ—ଅମଙ୍ଗୁଳୀ ଭାବେ ରାଧୀର ସାରା ଜୀବନ କଟିଗଲା, ସେଇ 'ଦେବତା ମୂର୍ତ୍ତି ସାହାଡ଼ା' ସତେ ଯେପରି ତାର ଅମଙ୍ଗଳ ମନାସି ଆସିଛି—ପ୍ରତିଶୋଧ ନେବାକୁ ଯାଇ କୁରାଢ଼ୀ ଚୋଟରେ ମୂର୍ତ୍ତି ସାହାଡ଼ା ଗଛଟିକୁ ନିର୍ମୂଳ କରି ଦେବାକୁ ଇଚ୍ଛା କଲା—କିନ୍ତୁ ତା'ପର ଦିନ ଲୋକମାନେ ଦେଖିଲେ—ନାଗ ସାପର ଦଂଶନରେ ଜିଭ କାମୁଡ଼ି ମରି ପଡ଼ିଛି ରାଧୀ····

ଦେବତା ଆଉ ମଣିଷର ଦୁଃଖକୁ ବୁଝିବାକୁ ସକ୍ଷମ ନୁହନ୍ତି । ଯନ୍ତ୍ର ଯୁଗରେ ଧର୍ମ ବିଶ୍ୱାସ କମି କମି ଆସୁଛି । ଧର୍ମ କେବଳ ଅଫିମର ନିଶା । ତଥାପି କାହ୍ନୁଚରଣଙ୍କ କ୍ଷୁଦ୍ର ଗଳ୍ପରେ ଧର୍ମ ଯୁଗପତ୍ ପ୍ରଭାବ ବିସ୍ତାର ଲାଭ କରିଅଛି । 'ବାସୁଲେଇଙ୍କ କୋପ', 'ତଥାପି', 'ରହିବ କି ଫେରିବ' ଗଳ୍ପରେ ଧର୍ମ କେବଳ ଗୋଟିଏ ମିଛ ଆବରଣ ନୁହେଁ, ଚିରନ୍ତନ ସତ୍ୟ । ଠାକୁରାଣୀଙ୍କୁ ଅବଜ୍ଞା କରିବାରୁ ହରିଆକୁ ସେ ନେଇଗଲେ । ହରିଆର ବାପା ବନାକୁ ଠାକୁରାଣୀ ସ୍ୱପ୍ନରେ କହିଥିଲେ—"ହଇରେ ବନା ! ତୋ ପୁଅର କେତେ ବହପ ଦେଖୁନୁ ରେ ! କିଛି ପିଲାଟୁଆ ନୁହେଁ, ବୁଢ଼ିଥିଲା ଭେଣ୍ଡାଟା । କିଛି ବିଗିଡ଼ିଲା ନାହିଁ, ଛୁଇତଳ ଦେଖି ମୋର ଘରେ. ମୋର ଆସ୍ଥାନ ତଳେ ପ୍ରସା କଲା । ମୁଁ ଆଖି ବୁଜିଲି । ଆରେ ଏଡ଼ିକି ଚଗଲାଟା ! ତୋ ପେଟର ଛୁଆ ହୋଇ ପାଷାଣ ପାହାର ମାରି ମୋର ଘୋଡ଼ା ହାତୀ ଭାଙ୍ଗି ମାଙ୍କଡ଼ ମାରିଲା, କିଛି କହିଲି ନାହିଁ । ଦେଖିତ ସାହାସ, ପୁଣି ମୋର ଆଡକୁ ଗୋଡ଼ କରି ଶୋଇଲା । ବାର ବାର ଦିନବାର । କେତେ ସହନ୍ତି ରେ କହିଲୁ ? × × ଆଉ ସହିପାରିବି ନାହିଁ ।"

ପାପ-ପୁଣ୍ୟ, ଦିନ-ରାତ, ସତ୍ୟ-ମିଥ୍ୟା ଏକାନ୍ତ ସତ୍ୟ । ବସ୍ତୁବାଦୀ ମଣିଷ ସମାଜରୁ ଧର୍ମ ବିଶ୍ୱାସ ଆଜି ଯଦିଓ ଦୂରେଇ ଯାଇଛି; ଧର୍ମ ମିଥ୍ୟା ନୁହେଁ । ବିଜ୍ଞାନ ଯେଉଁଠି ବିଫଳ ହେଲା ପରି, ସେଠାରେ ଧର୍ମ ଏକାନ୍ତ ଆପଣାର । ମଣିଷ ଯନ୍ତ୍ର ସଭ୍ୟତା ଉପରୁ ବିଶ୍ୱାସ ହରାଇ ବସିଲେ ଖୋଜେ ଧର୍ମକୁ, ଯେ ତାକୁ ସାନ୍ତ୍ୱନା ଦେବ; ଈଶ୍ୱର-ଆଲ୍ଲା-ଯୀଶୁ, ଯେ ସେ ହୁଅନ୍ତୁ ନା କାହିଁକି !

Digitized by srujanika@gmail.com

ଜୀବନ ଯେତକ ସତ୍ୟ, ମଣିଷର ଆବେଗ ଓ ପ୍ରବୃତ୍ତି ଗୁଡ଼ିକ(emotion and distinct) ସେହି ପରିମାଣରେ ଜୀବନ ଧର୍ମୀ । ଜୀବନ ଗତିଶୀଳ ହୁଏ, ମାନବିକ ସ୍ନେହ, ପ୍ରେମ, ଦୁଃଖ-ଯନ୍ତ୍ରଣା ଦେଇ । ଜୀବନକୁ ବଞ୍ଚିବାର ଅନ୍ୟନାମ ସେଇଥିପାଇଁ ଯନ୍ତ୍ରଣା । ଗାଳ୍ପିକ କାହ୍ନୁଚରଣ ବାସ୍ତବବାଦୀ ହୋଇ ଜୀବନର ସତ୍ୟକୁ ଯେଉଁ ପରିମାଣରେ ପରିସ୍ଫୁଟ କରିଛନ୍ତି, ସେହି ପରିମାଣରେ ଜୀବନର ସତ୍ୟ-ଶିବ-ସୁନ୍ଦର ରୋମାଣ୍ଟିକ୍ ପ୍ରବୃତ୍ତିକୁ ମନସ୍ତ ସ୍ତରରେ ଅଙ୍କନ କରିଛନ୍ତି । ମଣିଷ ମରଣଶୀଳ କିନ୍ତୁ ତାର ପ୍ରବୃତ୍ତି ସମୂହ ଅମର । ପ୍ରେମର ଉଚ୍ଛଳ ସ୍ରୋତପୁଣି ମଣିଷକୁ ଜୀବନନିଷ୍ଠ କରାଇଛି, ଯୌବନ ହୋଇଛି ସାର୍ଥକ ମଣ୍ଡିତ । ସେଇଥିପାଇଁ ଜୀବନର ବଶିଷ୍ଟ ସମୟ ହେଉଛି ଯୌବନ-କାଳ ।

କାହ୍ନୁଚରଣଙ୍କ 'କ୍ଷଣିକା' ଗଳ୍ପରେ ଏକ ଯୌବନବତୀର କଥା ବର୍ଣ୍ଣିତ ହୋଇଛି । ବସ୍ ଟି ହଠାତ୍ ଖରାପ ହୋଇଯିବା ପରେ ପଲ୍ଲୀଗ୍ରାମ ନିକଟରେ ଅଟକି ଯାଏ । ଗାଳ୍ପିକ ଦୂରର କୌଣସି ତରୁମୂଳରୁ ସ୍ନାନରତ ପଲ୍ଲୀବଧୂକୁ ଦେଖି ତା'ର ସୌନ୍ଦର୍ଯ୍ୟରେ ବିମୋହିତ ହୋଇଯାଆନ୍ତି । ପାଖରେ ନଦୀ, "ଓଠ ପାଖୁଡ଼ାରେ ଚମକି ଉଠୁଛି ହସ, ରହସ୍ୟ, ଏ ଗାଉଁଟା ଯାହୁ, ମିଶିପ ଗୁଣ ପଣ—କଥା ଅଧା କରି ତେରଛା ଚାହିଁଲା । ମୁହୂର୍ତ୍ତେ ଆଖି ଦୁଇଟିର ଖଞ୍ଜନଜଡ଼ିତ କୌତୂହଳ ଚାହାଣୀ ମୋର ମୋହଗ୍ରସ୍ତ ପିପାସାକୁଳ ଆଖିରେ ମିଶିଲା । ମନେହେଲା ଯେପରି ସେ ଦୃଷ୍ଟି ମୋର ଅନ୍ତର ଭେଦ କରିଛି । ସେ ଦୃଷ୍ଟି ଆନତ କଲା । ମଣିଷ ଗୋଟିଏ ମୁହୂର୍ତ୍ତର ଦାସ । ମୁହୂର୍ତ୍ତର ଆବେଗ, ସ୍ୱପ୍ନ ପ୍ରବଣତା ତାର ଜୀବନକୁ ଧନ୍ୟ କରେ । ସେହି ରାସ୍ତାରେ ପୁଣି ଗଲାବେଳେ ଗାଳ୍ପିକ ମନେ ମନେ ମୁଗ୍ଧ ଚକ୍ଷୁ ଦୁଇଟିକୁ ଖୋଜନ୍ତି । କିନ୍ତୁ କେହି ଆଖିରେ ପଡନ୍ତି ନାହିଁ, ଗାଳ୍ପିକଙ୍କ ମନ ଗଭୀର ଦୁଃଖରେ ପୂରିଯାଏ ।

'ପ୍ରୀତି ନ ଜାଣଇ ଜାତି ସଜନୀ ଲୋ'....ପ୍ରେମ ନିକଟରେ ଜାତି, ଧର୍ମ, ବୟସ, ସମ୍ଭବ ସବୁ ବନ୍ଧା ପଡ଼େ । 'ପ୍ରତିକାର' ଗଳ୍ପର ନାୟକ ମଧୁର କିଶୋର—ତାଙ୍କ ଘରେ ଭଡ଼ାରେ ଥିବା ପ୍ରେମି ସହିତ ଚିଠି ଦ୍ୱାରା ସେ ସମ୍ପର୍କ ସ୍ଥାପନ କରିଥିଲେ । ମାଞ୍ଚ ଭୁଲ କ'ଣ କେବଳ ତା'ର ?"ଏଥିପାଇଁ ଦାୟୀ କିଏ ? ଜହ୍ନରାତି । କୋଠା ଉପରେ ସେ ଦିନ ସେ ଢଳପଡ଼ି କହିଲା. ଶିର ମୁଣ୍ଡ ବଥାଉଛି ମଧୁଭାଇ, ଟିକିଏ ଚିପିଦିଅନ୍ତ । ଆରମ୍ଭ ତ ସେଇଠୁ ।" ଶେଷ ଚାହାଣୀ ଗଳ୍ପରେ ଏ ରୋମାଣ୍ଟିକ୍ ପ୍ରବୃତ୍ତି ଅଦ୍ଭୁତ ବିସ୍ମୃତ । ବୟସ ଗଡ଼ିଯାଇଥିବା ପ୍ରୌଢ଼ଟି କୋଠା ଉପରୁ ତଳର ରୂପସୀ ଷୋଡ଼ଶୀକୁ ଚାହିଁ ରହୁଛି । ପୁଣି ଅବୋଧ ଗଳ୍ପରେ ପ୍ରେମର ଏକ ଭିନ୍ନ ରୂପ ଦେଖିବାକୁ ମିଳେ । ଗାଳ୍ପିକ/ଗଳ୍ପ ନାୟକ ଥିଲେ ଅମଳାର ଟିଉସନ ମାଷ୍ଟର । କିଶୋରୀ ରୂପସୀ ଛାତ୍ରୀକୁ ଭଲପାଇ ସେ ଚିଠି ଲେଖି ବସିଲେ ।

Digitized by srujanika@gmail.com

ପ୍ରେମ ଚିଠି । ବାସ୍ତବ ଜୀବନର ଏକ ବଳିଷ୍ଠ ଦିଗ ହେଉଛି ପ୍ରେମ । ପ୍ରେମକୁ ଗ୍ରହଣ ଜୀବନ କଙ୍କାଳ ସ୍ୱପ୍ନ ଓ ବୃଥା । ରୋମାଣ୍ଟିକ କାହ୍ନୁଚରଣଙ୍କ ଗଳ୍ପରେ ଜୀବନର ଛନ୍ଦ ବହୁ ବାସ୍ତବ କଥାର ଆଶ୍ରୟରେ ଗତିଶୀଳ ହୋଇଅଛି । ରୋମାଣ୍ଟିକ୍ ଚେତନା ତନ୍ମଧ୍ୟରୁ ପ୍ରଧାନତମ ।

କାହ୍ନୁଚରଣ ଯଥାର୍ଥରେ ବାସ୍ତବବାଦୀ ଶିଳ୍ପୀ । ଉପନ୍ୟାସ ଜଗତ ତାଙ୍କର ବହୁ ଚର୍ଚ୍ଚିତ ଓ ପରୀକ୍ଷା ନିରୀକ୍ଷାର ସାମଗ୍ରୀ । ଗଳ୍ପଗୁଡ଼ିକର ଚରିତ୍ର ଓ ଚେତନା ଅଧିକ ପରିସ୍ଫୁଟ ହୋଇ ନଥିଲେ ମଧ୍ୟ ଶିଳ୍ପୀଙ୍କ ସ୍ୱଭାବସୁଲଭ ମାନବିକ ସମ୍ବେଦନା ଗଳ୍ପଗୁଡ଼ିକୁ କରିଛି ଅଧିକ ଜୀବନଧର୍ମୀ । 'ପ୍ରନ୍ଜୁ' ଗଳ୍ପରେ ଆଦିବାସୀର ସାମାଜିକ ଜୀବନ, 'ଯୋ ହୁକୁମ' ଗଳ୍ପରେ ସରଳ ଆଦିବାସୀର ଜୀବନ ମନ୍ମୟ ଭାବରେ ପ୍ରକାଶିତ ହୋଇଅଛି । କାହ୍ନୁଚରଣଙ୍କ ଗଳ୍ପ-ଚେତନା ବହୁ ଭାବରେ ସମୃଦ୍ଧ ହୋଇଥିଲେ ମଧ୍ୟ ସାମାଜିକ ଜୀବନର ବହୁ ବାସ୍ତବ ଓ ଆବେଗମୟ ଦୀପ୍ତିରେ ତାହା ରଞ୍ଜିତ ହୋଇଅଛି । ଗାନ୍ଧିଜୀ ଦିନେ ଯେଉଁ ରାମରାଜ୍ୟର ସ୍ୱପ୍ନ ଦେଖିଥିଲେ, ସମାଜବାଦୀ ରାଷ୍ଟ୍ର ଗଠନର ଇଚ୍ଛାପୋଷଣ କରିଥିଲେ; କାହ୍ନୁଚରଣ ଅଳ୍ପ କେତୋଟି ଗଳ୍ପ ମାଧ୍ୟମରେ ସେହି ଆଦର୍ଶକୁ ପ୍ରତିଫଳିତ କରାଇଛନ୍ତି । ଏକ ବିଶ୍ୱତୋମୁଖୀ ସାମ୍ରାଜ୍ୟ ଗଠନ ସହିତ ଜୀବନର ବାସ୍ତବ ସମସ୍ୟା ଓ ସଂଘର୍ଷକୁ ସମ୍ମୁଖୀନ ହେବାପାଇଁ କାହ୍ନୁଚରଣ କ୍ଷୁଦ୍ରଗଳ୍ପ ଗୁଡ଼ିକ ମାଧ୍ୟମରେ ଦେଇଛନ୍ତି ଆହ୍ୱାନ । ଗଳ୍ପଗୁଡ଼ିକ ଘଟଣା ଧର୍ମୀ, ତେଣୁ ପାଠକର ଚିତ୍ତ ବୃତ୍ତି କାହାଣୀ ସୂତ୍ରରେ ଗ୍ରନ୍ଥି ହୋଇଯାଏ । ଔପନ୍ୟାସିକ କାହ୍ନୁଚରଣଙ୍କ ଅନ୍ତର୍ଚେତନାକୁ କ୍ଷୁଦ୍ରଗଳ୍ପ ଗୁଡ଼ିକରେ ଉପଲବ୍ଧି କରାଯାଉଥିବାରୁ ସମୟେ ସମୟେ ଗଳ୍ପ ହୋଇଛି ଦୀର୍ଘକାୟ, ବର୍ଣ୍ଣନା ହୋଇଛି ଉପନ୍ୟାସ ସୁଲଭ ଓ ଗୁରୁତ୍ୱପୂର୍ଣ୍ଣ । ତଥାପି ସୃଷ୍ଟିର ଏ ବ୍ୟତିକ୍ରମ ସତ୍ତ୍ୱେ କାହ୍ନୁଚରଣଙ୍କ ସାମାଜିକ ଜୀବନ ଉପସ୍ଥାପନର ବାସ୍ତବ ବାଦୀ ଦୃଷ୍ଟିଭଙ୍ଗୀ ତାଙ୍କୁ ଜଣେ ସଫଳ କଥାକାରର ଗୌରବରେ କରିଛି ମହିମାନ୍ୱିତ ॥



ଅଧ୍ୟାପକ, ଓଡ଼ିଆ ବିଭାଗ,

ଜେ. ଏନ୍. ମହାବିଦ୍ୟାଳୟ,

କୁଆଁପାଳ, କଟକ ॥

Digitized by srujanika@gmail.com

# କାହ୍ନୁଚରଣଙ୍କ ଉପନ୍ୟାସ–

# ଏକ ଅଧ୍ୟୟନ

### ଅଧ୍ୟାପିକା ଶ୍ରୀମତୀ ବିଦ୍ୟୁତ୍‌ଲତା ରାୟ

ଔପନ୍ୟାସିକ କାହ୍ନୁଚରଣ ମହାନ୍ତିଙ୍କର ସୃଷ୍ଟି ସୌନ୍ଦର୍ଯ୍ୟ ଅତୁଳନୀୟ । ତାଙ୍କ ସୃଷ୍ଟିର ଜୀବନାନୁଭୂତି ଓ ଜୀବନ ଦର୍ଶନ ପାରିବାରିକ କଥାବସ୍ତୁ ଓ ବାସ୍ତବ କାହାଣୀ ଅବଲମ୍ବନରେ ବର୍ଣ୍ଣନାତ୍ମକ ଶୈଳୀରେ ରୂପାୟିତ ହୋଇଛି । ଯଥାର୍ଥରେ ହେନରୀ ଜେମସ୍‌ଙ୍କ ଭାଷାରେ "A Novel is in its broadest definition a personal, a direct impression of life"— ଉଚ୍ଚକୋଟିର ପ୍ରତିଭା ସ୍ପର୍ଶରେ ଉପନ୍ୟାସର ସାହିତ୍ୟ ଶିଳ୍ପ ଚମତ୍କାର କଳା-ବିଳାସରେ ପରିଣତ ହୋଇଥିବାର ବହୁ ଉଦାହରଣ ପୃଥିବୀର ସାହିତ୍ୟ ଇତିହାସରେ ରହିଛି । ତେବେ ଏହା ନିଶ୍ଚିତ ଯେ ଲେଖକର ଆତ୍ମାର ସୌରଭ-ପୂର୍ଣ୍ଣ ଉପନ୍ୟାସକୁ ଅମ୍ଳାନ ଆଚ୍ଛନ୍ନ କରି ରଖିଥାଏ । ଏହି ପରିପ୍ରେକ୍ଷୀରେ ଔପନ୍ୟାସିକ କାହ୍ନୁଚରଣଙ୍କର ଜୀବନୀ କାର୍ଯ୍ୟପରିସର ସାଙ୍ଗରେ ତାଙ୍କର ବହୁ ପାଠକ ପରିଚିତ ।

ଫକୀରମୋହନଙ୍କ ତିରୋଧାନ (୧୯୧୮) ସଙ୍ଗେ ସଙ୍ଗେ ତାଙ୍କ ଯୁଗର ସମାବସାନ ହେଲା । ସବୁଜ ଯୁଗର ଔପନ୍ୟାସିକମାନେ ତାଙ୍କୁ ହିଁ ଅନୁସରଣ କରି ଓଡ଼ିଆ ଉପନ୍ୟାକୁ ଆଗେଇନେଲେ । କିଛି ଲେଖକ ନୂଆ ପରୀକ୍ଷା, ନିରୀକ୍ଷା ଆରମ୍ଭ କଲେ । ଏହା ହେଲା ବିକାଶର ଦ୍ୱିତୀୟ ପର୍ଯ୍ୟାୟ । ଏହି ପର୍ଯ୍ୟାୟରେ ମୁକୁର ଉପନ୍ୟାସ ମାଳା, ଆନନ୍ଦଲହରୀ ଉପନ୍ୟାସମାଳା ପରି ସଙ୍ଗବଦ୍ଧ ପ୍ରକାଶନ ସଂସ୍ଥାର ପୃଷ୍ଠପୋଷକତାରେ ଓଡ଼ିଆ ଉପନ୍ୟାସର ଗୁଣାତ୍ମକ ତଥା ପରିମାଣାତ୍ମକ ଅଭିବୃଦ୍ଧି ଘଟିଲା ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଅନ୍ୟ ଯେଉଁ ମହାରଥୀମାନଙ୍କର ଅଭ୍ୟୁଦୟ ଖୁବ୍ ସ୍ମରଣୀୟ, ସେମାନେ ହେଲେ ନନ୍ଦକିଶୋର ବଳ, ଚନ୍ଦ୍ରମଣି ମହାନ୍ତି, ଗୋଦାବରୀଶ ମିଶ୍ର, କୁନ୍ତଳା କୁମାରୀ ସାବତ,

Digitized by srujanika@gmail.com

ଚନ୍ଦ୍ରସିଂହ ପାଣିଗ୍ରାହୀ, ଉପେନ୍ଦ୍ର କିଶୋର ଦାସ, ହରେକୃଷ୍ଣ ମହତାବ, କାଳନ୍ଦୀ ଚରଣ ପାଣିଗ୍ରାହୀ, ଗୋଦାବରୀଶ ମହାପାତ୍ର, ସତ୍ୟାନନ୍ଦ ଚମ୍ପତିରାୟ, ଲକ୍ଷ୍ମୀଧର ନାୟକ, କାହ୍ନୁଚରଣ ଓ ଆହୁରି ଅନେକ... ।

ନନ୍ଦକିଶୋରଙ୍କ କନକଲତା ଉପନ୍ୟାସର ରଚନା କାଳ ୧୯୧୫, । ତା' ପରେ ଗୋଦାବରୀଶ ମିଶ୍ର ୧୯୨୨ରେ 'ଅଭାଗିନୀ' ନାମକ ଉପନ୍ୟାସ ରଚନା କଲେ । ଏହା ଭିକ୍ଟର୍ ହ୍ୟୁଗୋଙ୍କ ଲ-ମିଜରେବ୍‌ଲର ଅନୁରୂପରେ ଲେଖା । ମାତ୍ର ସ୍ଥାନୀୟ ରୂପାନ୍ତରୀକରଣ ଦ୍ୱାରା ସ୍ୱଭାବୀକୃତ । କୁନ୍ତଳାକୁମାରୀ ସାବତ ୧୯୨୩-୨୮ ମଧ୍ୟରେ ପାଞ୍ଚୋଟି ଉପନ୍ୟାସ ଲେଖିଛନ୍ତି । ତନ୍ମଧ୍ୟରୁ 'କାଳୀବୋହୂ' ଓ ରଘୁଅରକ୍ଷିତ ଉପନ୍ୟାସ ଦୁଇଟି ଅନ୍ୟତମ । ୧୯୨୭ରେ ରଚିତ ବୈଷ୍ଣବ ଚରଣ ଦାସଙ୍କ 'ମନେ ମନେ' ଉପନ୍ୟାସ ପ୍ରକାଶିତ ହୋଇଥିଲା । ଏହା ଥିଲା, ଏକ ଚେତନା ପ୍ରବାହମୂଳକ ଉପନ୍ୟାସ । ଏହାପରେ ଉପେନ୍ଦ୍ର କିଶୋର ଦାସଙ୍କ ଏକମାତ୍ର ଉପନ୍ୟାସ 'ମଲାଜହ୍ନ', ୧୯୨୮ରେ ପ୍ରକାଶ ପାଇଥିଲା । ହରେକୃଷ୍ଣ ମହତାବ ମୁଖ୍ୟତଃ ଗାନ୍ଧୀବାଦୀ ଓ ରାଜନୀତିକ ଉପନ୍ୟାସ ଲେଖିଛନ୍ତି । ଏଂସିତ କାଳରେ ତାଙ୍କର ଉପନ୍ୟାସନୂତନ ଧର୍ମ' ୧୯୨୯ରେ ପ୍ରକାଶିତ; ଯେଉଁଥିରେ ସେ ମାନବ ସେବାକୁ ଶ୍ରେଷ୍ଠଧର୍ମ ଭାବିଛନ୍ତି । କାଳନ୍ଦୀଚରଣ ପାଣିଗ୍ରାହୀଙ୍କ ପ୍ରଥମ ଓ ଶ୍ରେଷ୍ଠ ଉପନ୍ୟାସ 'ମାଟିର ମଣିଷ' ୧୯୩୧ରେ ଆତ୍ମପ୍ରକାଶ କରିଥିଲା । ଆଦର୍ଶୋନ୍ମୁଖ ଓ ଯଥାର୍ଥବାଦୀ ଉପନ୍ୟାସ ଭାବେ ମାଟିର ମଣିଷ ଏକ ସଫଳ ସୃଷ୍ଟି । କାହ୍ନୁଚରଣ ସବୁଠୁ ଅଧିକ ଉପନ୍ୟାସର ସ୍ରଷ୍ଟା । ଆଲୋଚ୍ୟ କାଳ ପରିଧି ଭିତରେ ତାଙ୍କର ନିମ୍ନୋକ୍ତ ଉପନ୍ୟାସଗୁଡ଼ିକ ଅନ୍ତର୍ଭୁକ୍ତ, ଯଥା :—ବାଳିରାଜା (୧୯୨୭-୩୦), ନଷ୍ଟଦ୍ଧି (୧୯୩୧), ସ୍ୱପ୍ନ ନା ସତ୍ୟ (୧୯୩୩), ଝଡ଼ର ଶେଷ (୧୯୩୩), ଦୁଇଆର ଦାଉ (୧୯୩୪) ହା ଅନ୍ନ (୧୯୩୫) ଇତ୍ୟାଦି । ସାହିତ୍ୟ ସାଧନାରତ ଔପନ୍ୟାସିକ କାହ୍ନୁଚରଣ ଏହାପରେ ଅନେକ ଉପନ୍ୟାସ ପ୍ରଣୟନ କରିଛନ୍ତି । ଆଲୋଚନା ମାଧ୍ୟମରେ ସେଗୁଡ଼ିକର ଶ୍ରେଣୀ ବିଭାଗ, ରଚନା ଶୈଳୀ ତଥା ମର୍ମଭାବ ପ୍ରଭୃତିକୁ ବିଚାରକୁ ନେବା ପୂର୍ବରୁ ଆମକୁ ସାଧାରଣଭାବେ ଓଡ଼ିଆ ଉପନ୍ୟାସ ଗୁଡ଼ିକର ସେହିସବୁ ଗୁଣପ୍ରତି ଦୃଷ୍ଟି ଦେବାକୁ ପଡ଼ିବ ।

ପାଶ୍ଚାତ୍ୟ ସାହିତ୍ୟରେ ବିଭିନ୍ନ ପ୍ରକାର ଉପନ୍ୟାସର ଦୃଷ୍ଟାନ୍ତ ଦେଖିବାକୁ ମିଳେ । ଆଦିମ ଯୁଗର ଶିକାର, ଯୁଦ୍ଧ ଅଭିଯାନଠାରୁ ଆରମ୍ଭ କରି ଆଧୁନିକ ଯୁଗର ମାର୍କସ୍ ବାଦ, ମନୋବିଶ୍ଳେଷଣ ପର୍ଯ୍ୟନ୍ତ ବିଚିତ୍ର ବହୁବିଧ ବିଷୟରେ ଉପନ୍ୟାସ ରଚିତ ହୋଇଛି । ତେବେ ମୋଟା ମୋଟି ଭାବେ ଉପନ୍ୟାସକୁ ଗଠନ

Digitized by srujanika@gmail.com

ପ୍ରଣାଳୀ ଦୃଷ୍ଟିରୁ ତିନିଭାଗରେ ଏବଂ ବିଷୟବସ୍ତୁ ଦୃଷ୍ଟିରୁ ପାଞ୍ଚଭାଗରେ ବିଭକ୍ତ କରାଯାଇଛି । ଏଗୁଡ଼ିକ ହେଲା— ଘଟଣାପ୍ରଧାନ ଉପନ୍ୟାସ, ଚରିତ୍ରପ୍ରଧାନ ଉପନ୍ୟାସ, କାବ୍ୟଧର୍ମୀ ଉପନ୍ୟାସ, ସାମାଜିକ ଉପନ୍ୟାସ, ଉଦ୍ଦେଶ୍ୟମୂଳକ ଉପନ୍ୟାସ, ଐତିହାସିକ ଉପନ୍ୟାସ, ରାଜନୀତିକ ଉପନ୍ୟାସ ଓ ଗୋଇନ୍ଦା ଉପନ୍ୟାସ ।

ଘଟଣାପ୍ରଧାନ ଉପନ୍ୟାସ ଗୁଡ଼ିକରେ ଘଟଣା ବର୍ଣ୍ଣନା ବା ଗଳ୍ପ କଥନ ହେଉଛି ମୂଳ ଲକ୍ଷ୍ୟ, ଚରିତ୍ର ସୃଷ୍ଟି ଓ ଅନ୍ୟାନ୍ୟ ବିଷୟ ଉପଲକ୍ଷ୍ୟ ମାତ୍ର । ସାମାନ୍ୟ ତୁଚ୍ଛ ଘଟଣାଟିଏ ମଧ୍ୟ ଏଥିରେ ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ ହୋଇ ଉଠିଥାଏ ଏବଂ ଉପନ୍ୟାସର ସମୁଦାୟ ଗଳ୍ପାଂଶକୁ ପ୍ରଭାବିତ କରିଥାଏ । ସମସ୍ତ ସମୟରେ ଏଭଳି ଉପନ୍ୟାସରେ ଚମକପ୍ରଦ ଘଟଣାମାନ କ୍ଷିପ୍ର ଗତିରେ ସଂଘଟିତ ହେଉଥାଏ ଏବଂ ପାଠକ-ମନ ବିସ୍ମୟ-ମୁଗ୍ଧ ହୋଇ ତା'ସହିତ ଗତି କରି ଚାଲିଥାଏ । ଏ ଧରଣର ଉପନ୍ୟାସରେ ଚରିତ୍ର ଗୁଡ଼ିକ ସାଧାରଣତଃ ଦୁର୍ବଳ ଓ ଘଟଣାଶ୍ରୟୀ ହୋଇଥାନ୍ତି । ଇଂରାଜୀରେ ଏହାକୁ Novel of plot କିମ୍ବା Novel of action ବୋଲିଯାଇ ପାରେ ।

ଚରିତ୍ରପ୍ରଧାନ ଉପନ୍ୟାସ ଗୁଡ଼ିକରେ ଚରିତ୍ର ଚିତ୍ରଣର ପ୍ରାଧାନ୍ୟ ପରିଲକ୍ଷିତ ହୁଏ । ଏପରି କି ଅନାବଶ୍ୟକ ଓ ଗୌଣ ଚରିତ୍ର ଉପରେ ବିଶେଷ ଧ୍ୟାନ ଦିଆଯାଇଥାଏ । ଚରିତ୍ରଗୁଡ଼ିକ ଏଠାରେ ଦୁର୍ବଳ ଓ ଘଟଣାଶ୍ରୟୀ ନ ହୋଇ ସ୍ୱାଧୀନ ଭାବରେ ବିଦ୍ୟମାନ ରହିଥା'ନ୍ତି । ଏମାନଙ୍କ ଦ୍ୱାରା ଉପନ୍ୟାସର ସମସ୍ତ ଘଟଣା ନିୟନ୍ତ୍ରିତ ହୋଇଥାଏ ।

କାବ୍ୟଧର୍ମୀ ଉପନ୍ୟାସ ଗୁଡ଼ିକରେ ଲେଖକ ଘଟଣା ବର୍ଣ୍ଣନା କିମ୍ବା ଚରିତ୍ର ଚିତ୍ରଣ ମାଧ୍ୟମରେ ନିଜର ହୃଦୟାବେଗ ଓ ଉଚ୍ଛ୍ୱାସର ପରିପ୍ରକାଶ କରିଥାଆନ୍ତି । ଲେଖକର କବିତ୍ୱ-ଭଙ୍ଗୀ ଏହି ଶ୍ରେଣୀର ସମଗ୍ର ଉପନ୍ୟାସକୁ ସ୍ନିଗ୍ଧ ମଧୁର କରିଥାଏ । ଏହାର ଗଳ୍ପାଂଶ ଓ ପାତ୍ରପାତ୍ରୀ ପରସ୍ପର ପରିପୂରକ ରୂପେ ଘନିଷ୍ଠ ଭାବରେ ଜଡ଼ିତ ହୋଇ ଥାଆନ୍ତି । କାହ୍ନୁଚରଣଙ୍କର ଉପନ୍ୟାସ ସମୂହରେ କାବ୍ୟମୟତା, ଉଚ୍ଚକୋଟୀର ମାନବିକତା ସହିତ ପାରିପାର୍ଶ୍ୱିକ ବାସ୍ତବତା ସମ୍ପୂର୍ଣ୍ଣ ରୂପାୟିତ ।

ଲେଖକଙ୍କ 'ବାଲିରାଜା' (୧୯୨୬-୩୦) ଉପନ୍ୟାସ ଏକ କାଳ୍ପନିକ ଓ ଘଟଣା ପ୍ରଧାନ ଉପନ୍ୟାସ । ଏହା ଚାରିଖଣ୍ଡରେ ବିଭକ୍ତ । ଏହା ତାଙ୍କର ଔପନ୍ୟାସିକ ପ୍ରତିଭାର ଆଦ୍ୟ ସଙ୍କେତ । ଏହି ଉପନ୍ୟାସର କଥାବସ୍ତୁ ପାଇଁ ଲେଖକ

Digitized by srujanika@gmail.com

ଅତୀତକୁ ଫେରିଯାଇ ଅଛନ୍ତି । ଜଳଦସ୍ୟୁ ଦମନପୂର୍ବକ ଜନୈକ ସାହସୀ ଓଡ଼ିଆ ଯୁବକ କିପରି ବାଲିଦ୍ୱୀପର ଅଧୀଶ୍ୱର ହୋଇ ପାରିଥିଲେ ତାହାର ରୋମାଞ୍ଚକର କାହାଣୀ ଏହି ଉପନ୍ୟାସର ଉପଜୀବ୍ୟ ବିଷୟ । ଏଥିରୁ ଅତୀତରେ କଳିଙ୍ଗର ସାଧବମାନେ କିପରି ସୁଦୂର ଜାଭା, ସୁମାତ୍ରା ଓ ବାଲିଦ୍ୱୀପ ପ୍ରଭୃତି ସ୍ଥାନକୁ ଯାଇ ବାଣିଜ୍ୟ ବ୍ୟବସାୟ କରୁଥିଲେ; ତାର ସୂଚନା ମିଳେ । ଏହି ଉପନ୍ୟାସଟିର କଥାବସ୍ତୁ ବଳିଷ୍ଠ ଓ ଭାଷା ଶୈଳୀ ଉଚ୍ଚକୋଟୀର, ସାମୁଦ୍ରିକ ପରିବେଶରେ ଏହି ଉପନ୍ୟାସଟି ଲିଖିତ ।

ବାଲିରାଜା ପରେ କାହ୍ନୁଚରଣଙ୍କର ଲେଖନୀରୁ ଜନ୍ମନିଏ 'ତଥାସ୍ତୁ' । ଏହି ତଥାସ୍ତୁ ଉପନ୍ୟାସ ୧୯୨୭ ସାଲରେ ରଚିତ ହେଲେ ହେଁ ଏହା ୧୯୨୩ ସାଲରେ ପ୍ରକାଶିତ ହୋଇଅଛି । ୧୯୩୩ସାଲ ଭିତରେ ସେ 'ପଲାତକ' 'ନିଷ୍ପତ୍ତି' ଓ 'ସ୍ୱପ୍ନ ନା ସତ୍ୟ' ନାମକ ଅନ୍ୟ ତିନଖଣ୍ଡି ଉପନ୍ୟାସ ରଚନା କରିଅଛନ୍ତି । ଏହି ତିନଗୋଟି ଉପନ୍ୟାସରେ ଲେଖକଙ୍କର ପ୍ରତିଭାର କ୍ରମବିକାଶ ବିଶେଷ ଭାବରେ ପରିଲକ୍ଷିତ ହୋଇଅଛି । ଏହି ଉପନ୍ୟାସମାନଙ୍କରେ ସେ ବଳିଷ୍ଠ କଥାବସ୍ତୁ ଗ୍ରହଣ କରି ସାମାଜିକ ସମସ୍ୟା ଗୁଡ଼ିକର ସ୍ପଷ୍ଟ ରୂପରେଖ ପ୍ରଦାନ କରିଛନ୍ତି । ବାଳ-ବିଧବାର କରୁଣ ଜୀବନ-କାହାଣୀ, ନିଷ୍ଠୁର ହୃଦୟହୀନ ସମାଜର ଅବିଚାର ଓ ସମାଜ ସଂସ୍କାରକଙ୍କ ଦ୍ୱାରା ତାହାର କିପରି ନିଷ୍ପତ୍ତି ହୋଇଛି ଲେଖକ ତାହାହିଁ 'ନିଷ୍ପତ୍ତି' ଉପନ୍ୟାସରେ ବର୍ଣ୍ଣନା କରିଅଛନ୍ତି । ବିଧବା କୋକିଳଦେଇ କିପରି ପରିସ୍ଥିତିର ପ୍ରଭାବରେ ଯାଇ କଲିକତାର ଏକ ବେଶ୍ୟା ଗୃହରେ ଆଶ୍ରୟ ନେଇଛନ୍ତି, ତାହା 'ପଲାତକ'ର କଥାବସ୍ତୁ । 'ସ୍ୱପ୍ନ ନା ସତ୍ୟ' ଢେଙ୍କାନାଳର ଅତ୍ୟାଚାରକୁ କେନ୍ଦ୍ରକରି ରଚିତ ହୋଇଥିବା ଶୁଣାଯାଏ । ନାରୀ ଜୀବନର କରୁଣ ଇତିବୃତ୍ତ ଅଙ୍କନରେ ଲେଖକ ଆପଣା କୃତିତ୍ୱର ପରିଚୟ ଦେଇଅଛନ୍ତି । ନାରୀ ଓ ପୁରୁଷର ଆଦିମ ପ୍ରବୃତ୍ତି ଦୈହିକ ପ୍ରେମ ଏହି ଉପନ୍ୟାସ ତିନୋଟିରେ ଅତ୍ୟନ୍ତ ସଂଯତ ଭାବରେ ପ୍ରକାଶ ପାଇଅଛି ।

ଏହାପରେ କାହ୍ନୁଚରଣଙ୍କ ସ୍ରଷ୍ଟା ଜୀବନର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହେଲା । ଏହି ସମୟଠାରୁ ସେ ଜାତିର ଜୀବନ ଓ ସାମାଜିକ ସମସ୍ୟାକୁ ପ୍ରତ୍ୟକ୍ଷ ଭାବରେ ତାଙ୍କର ଲେଖାରେ ଚିତ୍ରଣ କଲେ । ୧୯୩୩ ୩୫ ଭିତରେ ସେ ଲେଖିଲେ 'ଝଡ଼ର ଶେଷ', 'ଦୁନିଆର ଦାଉ' ଓ 'ହା ଅନ୍ନ' ଉପନ୍ୟାସ । ଶେଷୋକ୍ତ ଉପନ୍ୟାସଟି କାହ୍ନୁଚରଣଙ୍କର ସ୍ରଷ୍ଟା ଜୀବନରେ ଏକ ଅମର ଆଲେଖ୍ୟ । ଓଡ଼ିଶାର ନ'ଅଙ୍କ ଦୁର୍ଭିକ୍ଷକୁ କେନ୍ଦ୍ରକରି ଏହି ଉପନ୍ୟାସର ପରିକଳ୍ପନା । ସତ୍ୟ ମୂଳକ ତଥ୍ୟ ଉପରେ ଆଧାରିତ ବଳିଷ୍ଠ କଥାବସ୍ତୁରେ ପ୍ରେମ, ବିରହ ମିଳନର ଚିତ୍ର 'ହା ଅନ୍ନ' ଉପନ୍ୟାସକୁ ଏକ ଅନବଦ୍ୟ ରୂପ ପ୍ରଦାନ କରିଅଛି ।

Digitized by srujanika@gmail.com

ଏହାପରେ ୧୯୪୫ ସାଲ ପର୍ଯ୍ୟନ୍ତ କାହ୍ନୁଚରଣଙ୍କ ଲେଖନୀ ଜନ୍ମ ଦେଇଛି ଦୁଇଆର ଦାଉ, ଓଲଟ ପାଲଟ, ପରକୀୟା, ଅନ୍ତରଙ୍ଗ, ଉଦଣ୍ଡୀ, ହାତ୍ତାକାଳେଲ, ଅଦେଖା ହାତ, ପ୍ରତୀକ୍ଷା, ଭଲ ପାଇବାର ଶେଷକଥା, ତୁଣ୍ଡବାଇଦ, ବନରହନର ତଳେ, ଶାସ୍ତି ଓ ଏପାରି ସେପାରି। ୧୯୪୫ ସାଲରେ ଶାସ୍ତି ରଚନା କରିବା ପର୍ଯ୍ୟନ୍ତ କାହ୍ନୁଚରଣ ଯେତେ ଖଣ୍ଡି ଉପନ୍ୟାସ ରଚନା କରିଛନ୍ତି ସେଗୁଡ଼ିକରେ ଅଧିକ ଭାବରେ ପ୍ରେମର ଚିତ୍ର ଦେଖିବାକୁ ମିଳେ। ଏହି ଉପନ୍ୟାସଗୁଡ଼ିକରେ ଲେଖକ ବିଭିନ୍ନ ସ୍ଥାନରେ ବିଶେଷତ୍ୱ ଓ ସାମାଜିକ ସମସ୍ୟାର ଉପସ୍ଥାପନ କରି ଅଛନ୍ତି। ମାତ୍ର ଶାସ୍ତି ଉପନ୍ୟାସ ରଚନା କରିବାରେ କାହ୍ନୁଚରଣ ଏକ ଅଭୂତପୂର୍ବ ସାଫଲ୍ୟ ଅର୍ଜନ କରିଅଛନ୍ତି। ନ'ଅଙ୍କ ଦୁର୍ଭିକ୍ଷର ଚିତ୍ର 'ହା ଅନ୍ନ' ଉପନ୍ୟାସରେ ଉପସ୍ଥାପନ କରିସାରିବା ପରେ କାହ୍ନୁଚରଣ ନ'ଅଙ୍କ ଦୁର୍ଭିକ୍ଷର ପରବର୍ତ୍ତୀ ଅବସ୍ଥାର ଚିତ୍ର ପ୍ରଦାନ କରିବାକୁ ନେଇଛନ୍ତି ତେରବର୍ଷ ସମୟ। ଏହି ସମୟ ମଧ୍ୟରେ ସେ ଅନ୍ୟାନ୍ୟ ଉପନ୍ୟାସ ଗୁଡ଼ିକ ରଚନା କରିବା ସଙ୍ଗେ ସଙ୍ଗେ ଶାସ୍ତି ଉପନ୍ୟାସ ରଚନା ଲାଗି ପ୍ରସ୍ତୁତ ହେଉଥିଲେ। 'ହା'ଅନ୍ନ' ଉପନ୍ୟାସ ପରି ତଥ୍ୟ ଶାସ୍ତି ଉପନ୍ୟାସରେ ସ୍ଥାନ ପାଇନଥିଲେ ହେଁ ଶାସ୍ତିର ପୃଷ୍ଠଭୂମି ଓଡ଼ିଶାର ସାମାଜିକ ଇତିହାସର ଅମର ସ୍ୱାକ୍ଷର ବହନ କରିଅଛି। ନଅଙ୍କ ଦୁର୍ଭିକ୍ଷ ପରେ ଜାତିର ପୁନର୍ଗଠନର ଭୂମିକା ଉପରେ ଶାସ୍ତି ଉପନ୍ୟାସ ପରିକଳ୍ପିତ। ବିଧବା ଧୋବା ଓ ସନେଇର ପ୍ରଣୟକୁ ଭିତ୍ତି କରି ଲେଖକଙ୍କ ଶାସ୍ତି ଉପନ୍ୟାସ ରୂପ ନେଇଛି। ବିଧବା ତୁଳସୀର ଦ୍ୱିତୀୟ ବିବାହଜନିତ ସମସ୍ୟା ଓ ସେ କିପରି ବହୁ ବ୍ୟକ୍ତିଙ୍କର ଲାଳସାର ପାତ୍ରୀ ହୋଇଛି, ତାହା ତୁଣ୍ଡବାଇଦ ଉପନ୍ୟାସରେ ବର୍ଣ୍ଣିତ। ଲେଖକ ଆତ୍ମକଥା ରୀତିରେ ଅଦେଖା ହାତ ଉପନ୍ୟାସଟି ରଚନା କରି ଅଛନ୍ତି। ଗୀତା ଓ ଦାମ ଏହି ଉପନ୍ୟାସର ନାୟକ ନାୟିକା। ଗୀତା-ବୋଉ ଓ ଦାମର ଚରିତ୍ରରୁ ବିଳକ୍ଷଣତାର ପରିଚୟ ମିଳିଥାଏ। ଗୀତାର ବିବାହ କିପରି ଅଦେଖା ହାତ ବା ଭାଗ୍ୟର ଫଳ, ତାହାହିଁ ଏଥିରେ ପ୍ରତିପାଦିତ। ବିଭିନ୍ନ ପରିସ୍ଥିତିରେ ଗୀତାର ମନୋବିଶ୍ଳେଷଣ ଏଥିରେ ଲେଖକ ସରସ ଭାବରେ କରି ଅଛନ୍ତି। ତାହାର ଅଭିମାନ, ଅନୁରାଗ ଓ ସ୍ୱପ୍ନ ପ୍ରଭୃତି ଏଥିରେ ସଜୀବ ଭାବରେ ଚିତ୍ରିତ ହୋଇଅଛି। ଗୀତା ଏକା ନୁହେଁ ତାପରି ଶହ ଶହ ଅବିବାହିତା ଝିଅଙ୍କର ଜ୍ୱଳନ୍ତ ଜୀବନ୍ତ ଉପନ୍ୟାସ ଘଟୁଛି ଓଡ଼ିଶାର ପ୍ରତି ପୁରପଲ୍ଲୀରେ। ଗ୍ରାମର ନିସ୍ୱହା ନାରୀ ପାଇଁ କାହ୍ନୁଚରଣଙ୍କ ହାର୍ଦ୍ଦିକ ସମବେଦନା ବାସ୍ତବିକ ନୈସର୍ଗିକ ଓ ଅସାଧାରଣ ଏବଂ ତାହାହିଁ ତାଙ୍କ କୃତି ଗୁଡ଼ିକୁ ଏପରି ମନୋରମ ଓ କରୁଣ ରସବ୍ୟଞ୍ଜକ କରି ତୋଳିଛି। କିନ୍ତୁ ତାଙ୍କର କେତେକ ଉପନ୍ୟାସରେ ଭାଗ୍ୟବାଦର ଚିତ୍ରଣ ଆଦୌ ସମୟୋପଯୋଗୀ ନୁହେଁ।

Digitized by srujanika@gmail.com

ଲେଖକଙ୍କର 'ଭଲ ପାଇବାର ଶେଷ କଥା' ଉପନ୍ୟାସଟି ଆତ୍ମକଥା ଓ ଅନୁଭୂତର ବର୍ଣ୍ଣନା ଢଙ୍ଗରେ ରଚିତ । ବାହାଘର ପରେ ଝିଅ ଫୁଲ ଓ ବ୍ରାହ୍ମଣ ଯୁବକ-ଗୁଣନିଧି ପରସ୍ପର ପ୍ରତି ଆକୃଷ୍ଟ ହୋଇଛନ୍ତି । ଗୁଣ ଇଚ୍ଛା ବିରୁଦ୍ଧରେ ବିବାହ କରିଛି ସରଳ ବିଶ୍ୱାସୀ ବୀଣାକୁ । ଧୈର୍ଯ୍ୟଶୀଳା ବୀଣା ସ୍ୱାମୀର ସମସ୍ତ ଉପେକ୍ଷା ହସିହସି ସହ୍ୟ କରିଛି । ଫୁଲ ବୀଣା ଚରିତ୍ରର ମହତ୍ତ୍ୱ ବୁଝିପାରି ଗୁଣନିଧିଙ୍କ ପ୍ରଣୟ୍ୟାସକ୍ତିକୁ ପରିତ୍ୟାଗ କରି ନିଜର ଇଚ୍ଛା ବିରୁଦ୍ଧରେ ଅନ୍ୟ ଗ୍ରାମରେ ଏକ ସ୍ୱଜାତୀୟ ଯୁବକକୁ ବିବାହ କରିଛି । ଅନ୍ୟ କୌଣସି ଘଟଣା ବା ଚରିତ୍ର ବର୍ଣ୍ଣନା ଏହି ଉପନ୍ୟାସଟିର କଥାବସ୍ତୁରେ କୌଣସି ଜଟିଳତା ସୃଷ୍ଟି କରିପାରି ନାହିଁ । ଆତ୍ମକଥା ଛଳରେ 'ଭଲ ପାଇବାର ଶେଷ କଥା' ଓ 'ଧୂଳି ବାଉଦ' ଉପନ୍ୟାସ ରଚନା କରିବାରେ ଲେଖକ ଯେପରି ସଫଳକାମ, ବ୍ୟାଖ୍ୟାନ ଓ ବର୍ଣ୍ଣନା ମାଧ୍ୟମରେ ମଧ୍ୟ ସେ ସେହିପରି ସଫଳତା ଲାଭ କରିଥିଛନ୍ତି । ଗ୍ରାମ୍ୟ ପରିବେଶ ଓ ଆଞ୍ଚଳିକତାର ବର୍ଣ୍ଣନା କାହ୍ନୁଚରଣଙ୍କ ଉପନ୍ୟାସ ଗୁଡ଼ିକର ଅନ୍ୟ ଏକ ଗୁଣ । କୁଜଙ୍ଗର ଆଞ୍ଚଳିକ ପରିବେଶରେ ତାଙ୍କର 'ଏପାରି ସେପାରି' ଉପନ୍ୟାସଟି ଲିଖିତ । ଏହା ଏକ କ୍ଷୁଦ୍ର ଉପନ୍ୟାସ ହେଲେହେଁ ଚରିତ୍ର ଚିତ୍ରଣ ଓ ରସସୃଷ୍ଟି ଦୃଷ୍ଟିରୁ ଏହା ସାର୍ଥକ ଓ ରସୋତ୍ତୀର୍ଣ୍ଣ । ସ୍ୱାମୀ ଉପେକ୍ଷିତା ଏବଂ ଭାଇ ଓ ଭାଇ-ବୋହୂଙ୍କ ଦ୍ୱାରା ଉପେକ୍ଷିତା ବିକଳାଙ୍ଗ, ଶ୍ରେଷ୍ଠୀ ପେଟର କରୁଣ ଜୀବନ ବୃତ୍ତାନ୍ତ ଏଥିରେ ଲେଖକ ଚିତ୍ତାକର୍ଷକ ରୂପେ ବର୍ଣ୍ଣନା କରିଛନ୍ତି ।

୧୯୪୭ ସାଲଠାରୁ ୧୯୫୪ ସାଲ ମଧ୍ୟରେ କାହ୍ନୁଚରଣ ଅଭିନେତ୍ରୀ, ଭୂଲି ହୁଏନା, ବଂନ୍ୟା, ମିଳନର ଛନ୍ଦ, ଶବରୀ, ପରି ଓ ବା' ଉପନ୍ୟାସଗୁଡ଼ିକ ରଚନା କରି ଅଛନ୍ତି । ଏହି ଉପନ୍ୟାସଗୁଡ଼ିକ କାହ୍ନୁଚରଣଙ୍କ ପ୍ରତିଭା ବିକାଶର ତୃତୀୟ ପର୍ଯ୍ୟାୟ । ଏହି ପର୍ଯ୍ୟାୟରେ ରଚିତ ହୋଇଥିବା ଉପନ୍ୟାସଗୁଡ଼ିକ ଅତ୍ୟନ୍ତ ଉଚ୍ଚକୋଟୀର ହୋଇ ପାରିଅଛି । କଥାବସ୍ତୁ ଚରିତ୍ର ଚିତ୍ରଣ ବର୍ଣ୍ଣନା ବିଳାସ, ସାମାଜିକ ସମସ୍ୟାର ରୂପାୟନ ପ୍ରଭୃତି ପ୍ରତ୍ୟେକ ବିଷୟରେ ଲେଖକ ନିଜର ସିଦ୍ଧ ହସ୍ତତା ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ଉପନ୍ୟାସ ସାହିତ୍ୟକୁ ସମୃଦ୍ଧ କରିଅଛନ୍ତି । ଅଭିନେତ୍ରୀରେ ଲେଖକ ଯେ ଜଣେ ଉତ୍କୃଷ୍ଟ କଳାକାର—ଏକଥା ପ୍ରମାଣ କରି ଅଛନ୍ତି । 'ଶବରୀ'ର ରଚନା କାହ୍ନୁଚରଣଙ୍କର ଏକ ନୂତନ ପରୀକ୍ଷା । ବା' ଉପନ୍ୟାସରେ ଲେଖକ ମନସ୍ତତ୍ତ୍ୱର ଚିତ୍ର ଯେପରି ଭାଷା ମାଧ୍ୟମରେ ଅଙ୍କନ କରିଅଛନ୍ତି, ତାହା ଏକାନ୍ତ ଅନବଦ୍ୟ । ଲେଖକଙ୍କର ବା' 'ଶସ୍ତି' ଓ 'ଡେଉ ଡେଉକା' ଉପନ୍ୟାସଗୁଡ଼ିକ ଚେତନା ପ୍ରବାହମୂଳକ ଉପନ୍ୟାସ । ଶେଷୋକ୍ତ ଉପନ୍ୟାସଟି ପରବର୍ତ୍ତୀ ପର୍ଯ୍ୟାୟର ଅନ୍ତର୍ଭୁକ୍ତ । କାହ୍ନୁଚରଣଙ୍କ 'ଡେଉଡେଉକା'

Digitized by srujanika@gmail.com

ହେଉଛୁ ଅବଚେତନ ମନର ଚେତନାରେ ଢେଉଢ଼େଉକା । ସୁକାନ୍ତ ଓ ରମାର ଅବଚେତନ ମନ ଭିତରେ ଅଗାତ ଶକ୍ତି ଚେତନାର ଯେଉଁ ଜୁଆର ଉଠିଛୁ, ତାହାର ବହୁ ନମୁନା ରହିଛୁ ଏହି ଉପନ୍ୟାସରେ । ପତ୍ନୀ ରମା ସହିତ କଳହ କରି ସୁକାନ୍ତ ଘରୁ ବାହାରି ଯାଇଛୁ ଟୁର୍ ବାହାନାରେ । ବାହାରେ ତିନି ଦିନର ରହଣି ଭିତରେ ସୁକାନ୍ତର ଚେତନ ମନରେ ରମାର ସ୍ମୃତି ଓ ଅବଚେତନ ମନରେ ପ୍ରଣୟିନୀ ଶୋଭାବତୀର ସ୍ମୃତି, ସେହିପରି ରମାର ଚେତନ ମନରେ ସୁକାନ୍ତର ସ୍ମୃତି ଓ ଅବଚେତନ ମନରେ ହଳଧରର ସ୍ମୃତି, ହଳଧରଙ୍କ ଅବଚେତନ ମନରେ ରମା ପ୍ରତି ଦୁର୍ବଳତା ପ୍ରକାଶ ପାଇଛୁ । ରମାର ପାଟିରୁ ଆପେ ଖସି ଯାଉଥିବା ବକ୍ତବ୍ୟ ଭିତରେ ଅବଚେତନ ମନର ଦୁର୍ବଳତା ଫୁଟି ବାହାରି ପଡ଼ୁଛୁ ଓ ଚେତନ ମନର ସଂଯମ ଅନେକାଂଶ ତାହାକୁ ଦମନ କରୁଛୁ । ଏଠାରେ ଫ୍ରଏଡ୍‌ଙ୍କ ନିର୍ଦ୍ଦେଶିତ ଇଦମ୍ ଓ ପରମ ଅହଂ ମଧ୍ୟରେ ସଂଘର୍ଷ ସଂଗଠିତ ହୋଇଛୁ । ରମାର ସଚେତନ ମନ ସୁକାନ୍ତ ପ୍ରତି କ୍ରୋଧ ଓ ବିରକ୍ତିରେ ତିକ୍ତ ହୋଇ ଉଠୁଥିଲେ ହେଁ ଅବଚେତନ ସୁକାନ୍ତର ସ୍ମୃତି ତାକୁ ଅତିଷ୍ଠ କରି ପକାଉଛୁ । ସେହି ଅଧରେ ହଳଧରଙ୍କ ମନରେ କପାଳରେ ଅସ୍ପଷ୍ଟ ସିନ୍ଦୂର ଗୁଣ୍ଡ ଦେଖି ଜୟଶ୍ରୀ ମନରେ ଜାଗିଥିବା ପ୍ରତିକ୍ରିୟା ମଧ୍ୟ ଚେତନା ପ୍ରବାହର ଏକ ଆଦର୍ଶ ନିଦର୍ଶନ । ଉପନ୍ୟାସରେ ପରୋକ୍ଷ ଆଭ୍ୟନ୍ତରୀଣ ଆତ୍ମସଂଳାପ ପଦ୍ଧତି ବହୁ ସ୍ଥଳରେ ବ୍ୟବହାର କରାଯାଇଛୁ । ଗୋଟିଏ ଉଦାହରଣ ହେଉଛୁ—"ମନ କହିଲା ସତେ, ଏତେ ହସୁଛ ? ମୁଁ ଏଯୁଗର ଇଞ୍ଜିନିୟର, ଏଥରୁ ତୁ ଜାଣିଲୁ ନେ ଛଇଳା ଛଟକା । ତୁ ବଡ଼ ପାରଙ୍ଗମ । ଏ କଥା ଆମେ ଜାଣୁ । କିନ୍ତୁ ତତେ ଆମେ ବାନ୍ଧିବୁ, ବୋଲ ମନାଇବୁ, ଆମ କାମରେ ଲଗାଇବୁ । ତତେ ଆମେ ସଜାଇବୁ ସୁନ୍ଦର କରିବୁ । "ଚେତନା ପ୍ରବାହ ଉପନ୍ୟାସ ଭାବରେ ଢେଉଢ଼େଉକା ଏକ ସାର୍ଥକ ସୃଷ୍ଟି । ଜେମସ୍ ଜଏସ୍‌ଙ୍କର ୟୁଲିସେସ୍‌ର ସମୟ ସୀମା ପ୍ରାୟ ୧୮ ଘଣ୍ଟା, କିନ୍ତୁ ଢେଉଢ଼େଉକାର ସମୟ ସୀମା ପ୍ରାୟ ତିନି ଦିନ । କାହ୍ନୁଚରଣ ସଚେତନ ଭାବରେ 'ଢେଉଢ଼େଉକା'ରେ ଚେତନା ପ୍ରବାହ ସୃଷ୍ଟି କରିବାକୁ ସଚେଷ୍ଟ, ତେଣୁ ନିଜ ଉପନ୍ୟାସ ମଧ୍ୟରେ ଚେତନା ପ୍ରବାହରେ ଭାସମାନ ମନ ସମ୍ପର୍କରେ ପରୋକ୍ଷରେ ସୂଚନା ଦେଇଛନ୍ତି—"ଦେହର ସୀମା ଅଛି, ମନର ସୀମା ନାହିଁ । କାଳ ଓ ବ୍ୟବଧାନ ମନର କେଉଁ କୋଣରେ ହଜି ଯାଆନ୍ତି, ଲୁଚି ଛପି ଯାଆନ୍ତି । ଅନ୍ଧାର ରାତିରେ ଟର୍ଚ୍ଚ ଆଲୁଅ ଲିଭିଗଲା ପରି ମନର ଆଲୁଅ ଲିଭିଯାଏ । ଅତୀତକୁ ଆଲୋକିତ କରେ । ବର୍ତ୍ତମାନ ତ ଗତିଶୀଳ, ଦୈର୍ଘ୍ୟ ପ୍ରସ୍ଥ-ବିହୀନ ରେଖାଟିଏ । ଅତୀତ ଓ ଭବିଷ୍ୟତର ମଝିଆମଝି ଅତି ଗତିରତ ବେଳକାଳ-ହୀନ ଅଭେଦ୍ୟ ପ୍ରାଚୀର ।"

Digitized by srujanika@gmail.com

ଖଣ୍ଡ ଖଣ୍ଡ ଭଗ୍ନ ଚେତନାକୁ ଏକତ୍ର କରି ସାର୍ଥକ ଉପନ୍ୟାସଟିଏ ସୃଷ୍ଟି କରିଛନ୍ତି କାହ୍ନୁଚରଣ । ଏହା ବ୍ୟତୀତ ଶାସ୍ତିରେ ଧୋବା ଓ ସନେଇର 'ଜମସାଗରେ'ରେ ଅନମାର, 'ହଗ ହଗୁଳା'ରେ ଅସିତ ଓ ଅତସୀର ମାନସିକ ପ୍ରତିକ୍ରିୟା ମଧ୍ୟରେ, 'ଭୁଲହୁଏନା'ରେ ଅଧ୍ୟାପକ ଜୀବନଙ୍କର ସ୍ମୃତି ମଧ୍ୟରେ ବା' ଉପନ୍ୟାସରେ ନନ୍ଦକାଙ୍କର ମାନସିକ ଦ୍ୱନ୍ଦ୍ୱ ମଧ୍ୟରେ କାହ୍ନୁଚରଣ ବଳିଷ୍ଠ ଚେତନା ପ୍ରବାହ ସୃଷ୍ଟି କରିଛନ୍ତି ।

ଜମିଦାର କନ୍ୟା ଓ ଉଚ୍ଚଶିକ୍ଷିତ ତୁଷାରକାନ୍ତଙ୍କ ସ୍ତ୍ରୀ କ୍ଷଣପ୍ରଭାର ଅସହାୟତା ଏବଂ ଲାଳସାର କ୍ଷୁଧା ସହି ନପାରି କ୍ଷଣପ୍ରଭା କପରି ପିତାଳୟକୁ ପ୍ରତ୍ୟାବର୍ତ୍ତନ କରିଛି ତାହାହିଁ 'ହନ୍‌ଜା' ଉପନ୍ୟାସର ବର୍ଣ୍ଣିତ ବିଷୟ । ଅପର ପକ୍ଷରେ ଅନାବିଲ ପ୍ରେମ, ତ୍ୟାଗର ମହିମାରେ ମହିମାନ୍ୱିତ ହୋଇ ଯୁବପ୍ରାଣକୁ କପରି ନୂତନ ସମାଜ ଗଠନରେ ଆଦର୍ଶବାଦୀ ଭୂମିକା ଗ୍ରହଣ କରିବାକୁ ପ୍ରଲୁବ୍‌ଧ କରିଛି ତା'ର ଅନ୍ୟ ଏକ ସ୍ମରଣୀୟ ଚିତ୍ର ଅଙ୍କିତ ହୋଇଛି କହ୍ନୁଚରଣଙ୍କ 'ହନ୍‌ଜା' ଉପନ୍ୟାସର ଦୁଷ୍ମନ୍ତ ଚରିତ୍ରରେ । କ୍ଷଣପ୍ରଭାକୁ ବିବାହ କରିବାକୁ ଚାହିଁଥିଲା ବିପୁଳ ପୈତୃକ ସମ୍ପତ୍ତିର ଉତ୍ତରାଧିକାରୀ ଉଚ୍ଚ ଶିକ୍ଷିତ ତରୁଣ ଦୁଷ୍ମନ୍ତ । କ୍ଷଣପ୍ରଭାର ପିତା, ବିଜୟପୁରର ଜମିଦାର ମଧ୍ୟ ତାହାହିଁ ଇଚ୍ଛା କରିଥିଲେ । କିନ୍ତୁ ସୁନ୍ଦରୀ, ଶିକ୍ଷିତା କ୍ଷଣପ୍ରଭା ଦୁଷ୍ମନ୍ତଙ୍କ ବଦଳରେ ବିବାହ କଲା ଗରୀବ ଘରର ଉଚ୍ଚଶିକ୍ଷିତ ସରକାରୀ କର୍ମଚାରୀ ତୁଷାରକାନ୍ତକୁ । ଦୁଷ୍ମନ୍ତ ଓ ତୁଷାରକାନ୍ତ ସହପାଠୀ, ସୁହୃଦ । ଘଟଣାଚକ୍ରରେ ତୁଷାରକାନ୍ତ ଅନ୍ଧ ହୋଇ ଯାଇ ଯେତେବେଳେ ଅସହାୟ ହୋଇପଡ଼ିଲା, ତାକୁ ସାହାଯ୍ୟ କରିବାକୁ ଆଗେଇ ଆସିଲା ଦୁଷ୍ମନ୍ତ । ଏକ ନୂତନ ଶ୍ରେଣୀହୀନ ସମାଜ ଗଠନର ସ୍ୱପ୍ନରେ ବିହ୍ୱଳିତ ହୋଇ ସେ ନିଜର ପୈତୃକ ସମ୍ପତ୍ତି ଦାନ କରିଦେଲା ରୁଗ୍‌ଣ, ଅକ୍ଷମ ଦୀନଦୁଃଖି ଲୋକଙ୍କ ସେବା ପାଇଁ, ଫଳରେ ଗଢ଼ି ଉଠିଲା 'ଅକ୍ଷମ-ନିବାସ' ରୁଗଣ-ନିଳୟ' ଆଉ ସାଂସ୍କୃତିକ ବିଦ୍ୟାଳୟ ଭଳି ସେବା ସଂସ୍ଥା । ପ୍ରଣୟରେ ବ୍ୟର୍ଥତା ଶିକ୍ଷିତ ଯୁବକକୁ ପ୍ରତିହିଂସା ପରାୟଣ ନକରି କରେ, ତ୍ୟାଗୀ, ସହିଷ୍ଣୁ, ଆଦର୍ଶବାଦୀ—ଏହି ଶ୍ଳୋକ ହନ୍‌ଜା ଉପନ୍ୟାସର ପ୍ରତିଟି ପୃଷ୍ଠାରେ ଉଚ୍ଚାରିତ ।

'ମିଳନର ଛନ୍ଦ' ଉପନ୍ୟାସରେ ଲେଖକ ଏକ ଉଚ୍ଚଶିକ୍ଷିତା ନାରୀର ଚରିତ୍ର ଚିତ୍ରଣ କରିଅଛନ୍ତି । ରୂପବତୀ, ଉଚ୍ଚଶିକ୍ଷିତା ଅଧ୍ୟାପିକା ରଶ୍ମି ବିବାହପ୍ରତି ବିମୁଖତା ପ୍ରଦର୍ଶନ କରିଥିଲେ ହେଁ ପରିଶେଷରେ ସେ ତାର ଏକଦା ସହପାଠୀ ବନ୍ଧୁ ଅଧ୍ୟାପକ ବୀରେନ୍ଦ୍ରଙ୍କୁ ବିବାହ କରିଛି । ଏକ ବିଚିତ୍ର ଆଦର୍ଶ—ସ୍ୱାମୀ ସ୍ତ୍ରୀର ଅର୍ଥ କେବଳ ବନ୍ଧୁତାରେ ଆବଦ୍ଧ ରହିବ ପରସ୍ପର ସ୍ନେହ ସହାନୁଭୂତି । ସନ୍ତାନ କାମନା ନଥିବ

Digitized by srujanika@gmail.com

ସେ ବିବାହରେ । ମାଟିର ଦେହର ମିଳନକୁ ତୁଚ୍ଛ କରି ମନର ମିଳନକୁ ଆଦର୍ଶ କରିବା' ଉଭୟଙ୍କୁ ଅନୁପ୍ରାଣିତ କରିଛୁ । ମାତ୍ର ବିବାହ କରି ବର୍ଷକ ପରେ ରଣୀ ହୋଇଛୁ ସନ୍ତାନର ଜନନୀ । ଡାକ୍ତର ଫିଲ୍ଲେକ୍ସ ଓ କେବଡ଼ଭିନ୍ଦିସାଙ୍କୁ ଲେଖକ ଏଠାରେ ଆଦର୍ଶ ଦମ୍ପତି ଓ ସମାଜସେବକ ରୂପେ ଚିତ୍ରଣ କରିଛନ୍ତି । ଲେଖକ ରାତ୍ରିର ସ୍ୱପ୍ନ ମାଧ୍ୟମରେ ଓ ପ୍ରତନଧି ସ୍ଥାନୀୟ ଚରିତ୍ରମାନଙ୍କ ସାହାଯ୍ୟରେ ପ୍ରାଗୈତିହାସିକ ଯୁଗରୁ ମାନବ ସମାଜର ବିକାଶଧାରା ଚିତ୍ରଣ କରିବା ଉଦ୍ଦେଶ୍ୟରେ 'ଶବରୀ' ଉପନ୍ୟାସଟି ପରିକଳ୍ପନା କରିଛନ୍ତି ।

ଅଜ୍ଞାତ କୁଳଶୀଳା, ପିତୃ ମାତୃ ପରିଚୟହୀନା 'ପଦ୍ମ' ଏକ ସମ୍ଭ୍ରାନ୍ତ ପରିବାରରେ ଆଶ୍ରିତା, ପ୍ରତିପାଳିତା ହେଲେହେଁ ସେଠାରେ ସେ ସମ୍ମାନିତା, ଆଦୃତା ହୋଇଛୁ, ତାର ନାରୀତ୍ୱ ସ୍ୱୀକୃତ ଲାଭ କରିଛୁ । ଏହାରି ମଧ୍ୟରେ ତାହା ଜୀବନର ନିର୍ଯ୍ୟାତନା, ସଂଯମ, ସେବାପରାୟଣତା, ମାର୍ଜିତ ରୁଚି, ସଂସ୍କାର ଲିପ୍ସା, ସହନଶୀଳତାକୁ ଲେଖକ ସୁନ୍ଦର ଭାବେ "ପଦ୍ମ" ଉପନ୍ୟାସରେ ବର୍ଣ୍ଣନା କରିଅଛନ୍ତି ।

୧୮୫୭ ସାଲ ପରେ ଲେଖକ ବଜ୍ରବାହୁ, ଢେଉଢେଉକା, ବଗ ବଗୁଲି, ଇତିହ ଓ ତମସା ତୀରେ ଉପନ୍ୟାସଗୁଡ଼ିକ ରଚନା କରିଛନ୍ତି । ତାଙ୍କର 'କହିବାକୁ ଲାଜ' ଉପନ୍ୟାସଟି ୧୯୬୮ ପରର । ସ୍ୱାଧୀନତା ପରବର୍ତ୍ତୀ ଜମିଦାରୀ ଓ ରାଜତନ୍ତ୍ରର ବିଲୋପ ପରେ ନୂତନ ଗଠନ ମୂଳକ ଯୋଜନା ଓ ନୂତନ ପରିସ୍ଥିତିର ପ୍ରତିକ୍ରିୟା ଫଳରେ ସମାଜରେ ଯେଉଁ ପରିବର୍ତ୍ତନ ହୋଇଛୁ ତାହାର ଏକ ପରିକଳ୍ପିତ ଓ ଆଦର୍ଶରୂପେ ଚିତ୍ରଣ କରିବାଲାଗି ଲେଖକ ବଜ୍ରବାହୁ ଉପନ୍ୟାସରେ ଉଦ୍ୟମ କରିଛନ୍ତି । ଏହି ଉପନ୍ୟାସର ରଚନା ହିଁ କାହ୍ନୁଚରଣଙ୍କର ଜାତୀୟତାର ନିଦର୍ଶନ । ତାଙ୍କର ତମସାତୀରରେ ଓଡ଼ିଆ ଉପନ୍ୟାସ ରାଜ୍ୟରେ ଏକ ବିସ୍ମୟ । ଦଣ୍ଡକାରଣ୍ୟ ଯୋଜନା ଓ ଆଶ୍ରୟ ପ୍ରାର୍ଥୀମାନଙ୍କର ଚିତ୍ରଣ ଏହି ଉପନ୍ୟାସର ଉପଜୀବ୍ୟ ବିଷୟ ।

ଲେଖକଙ୍କର ସମସ୍ତ ସୃଜନ ପ୍ରତିଭାକୁ ସମ୍ମାନ ଜଣାଇବା ସଙ୍ଗେ ସଙ୍ଗେ ଏହା ମଧ୍ୟ ସ୍ୱୀକାର୍ଯ୍ୟ ଯେ ତାହାଙ୍କ ଉପନ୍ୟାସରେ ଚରିତ୍ର ସୃଷ୍ଟି କ୍ଷେତ୍ରରେ ବୈଚିତ୍ର୍ୟର ଅଭାବ ପରିଦୃଷ୍ଟ ହୁଏ । ତାଙ୍କର ପ୍ରେମ ପ୍ରଧାନ ଅଧିକାଂଶ ଉପନ୍ୟାସର ନାରୀ ଚରିତ୍ରଗୁଡ଼ିକ ଏକାଭଳି ପ୍ରତୀୟମାନ ହୁଅନ୍ତି । ଦୁଷ୍ଟ ଦୁର୍ବୃତ୍ତମାନଙ୍କ ଚରିତ୍ର ଚିତ୍ରଣ ଲେଖକଙ୍କ ଉପନ୍ୟାସ ଗୁଡ଼ିକରେ ଅଭାବ । ବ୍ୟଙ୍ଗ, ବିଦ୍ରୁପ ବା ହାସ୍ୟରସ ମାଧ୍ୟମରେ ଉପନ୍ୟାସ ଗୁଡ଼ିକୁ ସଜୀବ କରାଇବାରେ ଲେଖକଙ୍କର ଅକ୍ଷମତା ପରିଦୃଷ୍ଟ ହୁଏ ।

Digitized by srujanika@gmail.com

କାହ୍ନୁଚରଣଙ୍କର ଉପନ୍ୟାସ ଗୁଡ଼ିକୁ ଆଲୋଚନା କରିବା ସମୟରେ ଆମକୁ ତାଙ୍କର ଦୂରଦୃଷ୍ଟି ଉପରେ ଆଲୋକପାତ କରିବାକୁ ପଡ଼ିବ । ତା ନ ହେଲେ ତାଙ୍କର ସୃଷ୍ଟି ସମ୍ପଦର ସୌନ୍ଦର୍ଯ୍ୟ ସଠିକ୍ ଭାବେ ଉପଲବ୍ଧି କରିହେବ ନାହିଁ । ଓଡ଼ିଆ ସାହିତ୍ୟରେ ଫକୀରମୋହନ ଦିନେ ଯେଉଁ ସ୍ୱପ୍ନ ଦେଖିଥିଲେ ତାଙ୍କର ସେ ସ୍ୱପ୍ନକୁ ସତ୍ୟରେ ପରିଣତ କରିଅଛନ୍ତି କାହ୍ନୁଚରଣ । ସାମୟିକ ଉତ୍ତେଜନା ଉପରେ ଗୁରୁତ୍ୱ ନ ଦେଇ ଜାତିର ଗଠନ ପାଇଁ ସମାଜର ସୌଷ୍ଠବାନ୍ୱିତ ଅଭିବୃଦ୍ଧି ପାଇଁ ତାଙ୍କର ଲେଖନୀ ଚଳଚଞ୍ଚଳ ହୋଇ ଉଠିଛି । ସେ ସବୁବେଳେ ସ୍ୱପ୍ନ ଦେଖିଛନ୍ତି ଏକ ଆଗାମୀ ଦିନର ଦୁନିଆଁ । ସେ ଲୋକ ଦେଖାଣିଆ ସ୍ଲୋଗାନ ଉପରେ ଜୋର ନ ଦେଇ ସମାଜର ଆଭ୍ୟନ୍ତରୀଣ ସମସ୍ୟା ଉପରେ ଜୋର୍ ଦେଇଛନ୍ତି । ସ୍ୱାଧୀନତା ପରେ ଆମର ଜାତିକୁ ନୂଆ ରୂପରେ ଗଢ଼ିବା ପାଇଁ ସେ ତାଙ୍କର ୧୯୪୭ ପରବର୍ତ୍ତୀ ଉପନ୍ୟାସ ଗୁଡ଼ିକରେ ତତ୍ପରତା ପ୍ରକାଶ କରିଅଛନ୍ତି । ସ୍ୱାଧୀନୋତ୍ତର ରଚନା ଗୁଡ଼ିକ ମଧ୍ୟରୁ ତାଙ୍କର 'ଢା' ଉପନ୍ୟାସଟି ରାଷ୍ଟ୍ରପତି ପୁରସ୍କାର ଲାଭ କରିଅଛି । ଏଥିରୁ ଲେଖକଙ୍କର ଅସାଧାରଣ ସାହିତ୍ୟ ସାଧନା ଓ ନିଷ୍ଠାର ପରିଚୟ ମିଳେ । କାହ୍ନୁଚରଣଙ୍କ ଉପନ୍ୟାସ ଓଡ଼ିଆ ସାହିତ୍ୟର ପାଠକ ଗୋଷ୍ଠୀକୁ ସମ୍ପ୍ରସାରିତ କରିଛି, ସାହିତ୍ୟ ପାଠ ପ୍ରତି ବୀତସ୍ପୃହ ଉତ୍କଳୀୟମାନଙ୍କ ମଧ୍ୟରେ ପଠନ ସ୍ପୃହାର ବିକାଶ ସାଧନ କରିଅଛି । ତାହାଙ୍କର ସମସ୍ତ ଉପନ୍ୟାସର ଭାଷା ସରଳ, ଆବେଗରେ ଆର୍ଦ୍ର ଓ ଅତୀବ କୋମଳ । ଆଙ୍ଗିକ ବା ବର୍ଣ୍ଣନା ରୀତିରେ ଲେଖକ ଯେ ସଫଳତାର ଶୀର୍ଷାରୋହୀ, ଏହା କହିବା ବାହୁଲ୍ୟ ମାତ୍ର ।



ନୟାଗଡ଼ ମହାବିଦ୍ୟାଳୟ
ନୟାଗଡ଼, (ପୁରୀ)

Digitized by srujanika@gmail.com

# ଜନପ୍ରିୟ କାହ୍ନୁଚରଣ

ଆର୍ତ୍ତବନ୍ଧୁ ପ୍ରଧାନ

କାହ୍ନୁଚରଣଙ୍କ ଜନପ୍ରିୟତା ପ୍ରସଙ୍ଗରେ ଅନିବାର୍ଯ୍ୟଭାବେ ଆମ ଭାବନାରେ ଆଶ୍ରୟ ନିଏ ତତ୍କାଳୀନ ସମୟର ସ୍ତର । ବର୍ତ୍ତମାନଠାରୁ ଦୂରବର୍ତ୍ତୀ ଯେକୌଣସି ଲେଖକର ଜନପ୍ରିୟତା ସଂବଧରେ ଭାବିବାକୁଗଲେ ଏଇ ପ୍ରଶ୍ନ ପ୍ରଥମେ ଆସେ । ବସ୍ତୁତଃ ଜନପ୍ରିୟ ଘଟଣାଟି କିଛୁମାତ୍ରାରେ ସମୟ ସୀମାଦ୍ୱାରା ଚିହ୍ନିତ । କୌଣସି ଲେଖକ ଚିରକାଳ ଗୋଟିଏ ଧରଣର ଜନପ୍ରିୟତାର ତରଙ୍ଗଚୂଡ଼ାରେ ଆରୁଢ଼ ରହିପାରେନା—ସେଠାରେ ତେଉର ଉତ୍ଥାନ-ପତନ ନିଶ୍ଚୟ ରହିବ । ଏଣୁ କାହ୍ନୁଚରଣଙ୍କ ଜନପ୍ରିୟତାର ପ୍ରକୃତ ତାତ୍ପର୍ଯ୍ୟ ନିର୍ଣ୍ଣୟ କରିବାକୁ ଗଲେ ତାକୁ ଏକା ସଙ୍ଗେ ତାଙ୍କ ସମକାଳ ଏବଂ ପରବର୍ତ୍ତୀ କାଳର ଦୃଷ୍ଟିକୋଣରେ ଦେଖିବାକୁ ହେବ । ଯଦିଓ ତାଙ୍କ ଲେଖନୀ ବର୍ତ୍ତମାନ ମଧ୍ୟ ଚଳନଶୀଳ । କାହ୍ନୁଚରଣଙ୍କ ଜନପ୍ରିୟତା କଥା ଭାବିଲେ ସେ ଜଣେ କିମ୍ବଦନ୍ତୀର ନାୟକ ବୋଲି ମନେହୁଅନ୍ତି । କାହ୍ନୁଚରଣଙ୍କ ଔପନ୍ୟାସିକ ଜୀବନର ପ୍ରାରମ୍ଭିକ ଜୀବନକଥା ମନେକଲେ ସ୍ୱତଃ ଓଡ଼ିଆ ପାଠକଙ୍କ ଆଖିଆଗରେ 'ବାଲିରାଜା' (୧୯୩୨) ଠାରୁ 'ହା ଅନ୍ନ' (୧୯୩୫), 'ହାଅନ୍ନ' ଠାରୁ 'ଶାସ୍ତି' (୧୯୪୭) ପୁଣି 'ଶାସ୍ତି'ରୁ 'ଝଞ୍ଜା' (୧୯୫୦)ର ଏକ ମାନଚିତ୍ର ଆଙ୍କି ହୋଇଯାଏ । ଏକଥା ଅନେକ ଜାଣନ୍ତି ଯେ, କାହ୍ନୁଚରଣ ସ୍କୁଲରେ ଛାତ୍ର ଥିବା ସମୟରେ ବିଦ୍ୟାଳୟ ପତ୍ରିକା ପାଇଁ ଲେଖା ଦେଇ ପ୍ରତିଷ୍ଠା ପାଇ ନଥିଲେ, କିନ୍ତୁ ପରେ ଔପନ୍ୟାସିକ ହିସାବରେ ଖ୍ୟାତିଅର୍ଜନ ପାଇଁ କୌଣସି ଦିନ ସେମିତି ଦୁର୍ଗମ ବନ୍ଧୁର ପଥ ଅତିକ୍ରମ କରିବାକୁ ହୋଇନି । ପ୍ରକୃତପକ୍ଷେ ମହାବିଦ୍ୟାଳୟରେ ଛାତ୍ରଥିବା ସମୟରେ ଏଇ ତରୁଣ ଯୁବକ ଯେମିତି ତାଙ୍କ ଆବିର୍ଭାବ ମୁହୂର୍ତ୍ତପାଇଁ ଯଶର ଜୟମୁକୁଟ ଲାଭ କଲେ । ବଙ୍ଗଳା ସାହିତ୍ୟରେ ଶରତଚନ୍ଦ୍ରଙ୍କ ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ଯଥାକ୍ରମେ ରବୀନ୍ଦ୍ରନାଥ ଓ ତାରାଶଙ୍କର ଯେପରି ଶରତଚନ୍ଦ୍ରଙ୍କୁ ଆଗେଇ ଯାଇନଥିଲେ ସେହିପରି କାହ୍ନୁଚରଣଙ୍କ ସମୟର କଥାଶିଳ୍ପୀ କାଳିନ୍ଦୀଚରଣ ଓ ଗୋପୀନାଥ ମଧ୍ୟ ସମାନ ଭାବରେ ତାଙ୍କ ସହିତ ଆଗେଇଛନ୍ତି । ଏଠାରେ ଶରତଚନ୍ଦ୍ରଙ୍କ ଉଦ୍ଦେଶ୍ୟରେ ଥିବା ରବୀନ୍ଦ୍ରନାଥଙ୍କ ଉକ୍ତିକୁ ସ୍ମରଣ କରାଇ କୁହାଯାଇ ପାରେ ଯେ—
"ଯେମନ ଅନ୍ତରେର ସଙ୍ଗେ ତାରା (ବାଙ୍ଗାଲି ପାଠକ ସମାଜ) ଖୁସି ହୟେଛେ,

Digitized by srujanika@gmail.com

ଏମନ୍ ଆଗେ କାରେ ଲେଖାଯ୍ନେ ତାର ହୟନ । ଅନ୍ୟ ଲେଖକେର ଅନେକ ପ୍ରଶଂସା ପେଯ୍ନେଛେ କିନ୍ତୁ ସାର୍ବଜନୀନ ହୃଦୟେର ଏମନ ଆତଥ୍ୟ ପାୟନି । ଏ ବିସ୍ମୟକର ଚମକ ନୟ, ଏ ପ୍ରୀତି । ଅନାୟାସେ ଯେ ପ୍ରଚୁର ସଫଲତା ଉନି ପେଯ୍ନେଛେନ ତାତେ ଉନି ଆମାଦେର ଈର୍ଷାଭାଜନ ।" କାହ୍ନୁଚରଣଙ୍କ କ୍ଷେତ୍ରରେ ମଧ୍ୟ ଏ ଉକ୍ତି ଯୁକ୍ତିଯୁକ୍ତ । କାରଣ ସେତେବେଳର କେତେଜଣ ଗଣ୍ୟମାନ ସାହିତ୍ୟିକ (——) କାହ୍ନୁଚରଣଙ୍କୁ ଈର୍ଷା କରିବାକୁ ପଛେଇ ଯାଇ ନ ଥିଲେ ।

ବର୍ତ୍ତମାନ ପ୍ରଶ୍ନ ଉଠେ ଓଡ଼ିଆ ପାଠକ ସମାଜରେ କାହ୍ନୁଚରଣ ଏତେ ଆତଥ୍ୟ ପାଇଲେ କିପରି ? ଏହା ପାଇବା ପଛରେ କାହ୍ନୁଚରଣଙ୍କ କେଉଁ ଦିଗ ଗୁଡ଼ିକର ଭୂମିକା ବିଶେଷ ଗୁରୁତ୍ୱପୂର୍ଣ୍ଣ ? ତାଙ୍କ ରଚନାରେ ନିଶ୍ଚୟ ଏମିତି କିଛି ଅଛି ଯାହା ସକଳସ୍ତରର ଓଡ଼ିଆ ପାଠକ—ସ୍ରୀମାଣ ରକ୍ଷଣଶୀଳଠାରୁ ପ୍ରଗତିବାଦୀ ତରୁଣ, ନାରୀ ଓ ପୁରୁଷ, ଅର୍ଦ୍ଧଶିକ୍ଷିତଙ୍କ ଠାରୁ ଉଚ୍ଚଶିକ୍ଷିତ, ଅଭିଜାତ-ଅନଭିଜାତଙ୍କୁ ପ୍ରବଳ ଭାବରେ ଆକର୍ଷି ଧରିଛି । ସେଇ 'ଏମିତି କିଛି'ର ପ୍ରକୃତ ସ୍ୱରୂପ କଣ ? ଏହାର ଯଦି କିଛି ଉତ୍ତର ଥାଏ, ତାହେଲେ ଏକ କଥାରେ କହିଲେ ହେବ ଓଡ଼ିଆ ଜୀବନ ପ୍ରତି, ବିଶେଷଭାବରେ ନିରୁପାୟ, ଅସହାୟ ଓ ବେଦନାମଳିନ ଓଡ଼ିଆ ନରନାରୀଙ୍କ ଜୀବନପ୍ରତି ତାଙ୍କ ହୃଦୟରେ ଥିଲା ସ୍ୱତଃସ୍ଫୂର୍ତ୍ତି ଅନିଃଶେଷ ଭଲ ପାଇବା । ଏଇ ଅକୃତ୍ରିମ ଭଲପାଇବା ଶକ୍ତିରେ ସେ ଅନିବାର୍ଯ୍ୟ ଭାବରେ ପାଠକ ହୃଦୟର ଅଫୁରନ୍ତ ପ୍ରେମକୁ ଆକର୍ଷଣ କରିଛନ୍ତି । ଅବଶ୍ୟ କହିବା ବାହୁଲ୍ୟ, କାହ୍ନୁଚରଣଙ୍କ ଏଇ ଭଲପାଇବା ଓ ମମତ୍ୱବୋଧ କେବଳ ବିଂଶ ଶତକୀୟ ମନୁଷ୍ୟ(ଓଡ଼ିଆ) ପ୍ରତି ନୁହେଁ । ପୁରୁଣାଦିନର ଯେଉଁ ପାରିବାରିକ ଜୀବନ ବିନ୍ୟାସ, ମଧ୍ୟବିତ୍ତ ପରିବାରର ଯେଉଁ ମୂଲ୍ୟବୋଧ, ଯାହା ବିଂଶଶତକର ବ୍ୟକ୍ତି ସ୍ୱାତନ୍ତ୍ର୍ୟର କଠିନ ସଂଘର୍ଷର ସ୍ରୋତରେ ମିଶି ଯାଇଥିଲା—କ୍ଷମା, ଦୟା, ତ୍ୟାଗ, ସ୍ନେହ, ମମତା-ଦେଇ ଗଢ଼ା ସେହି ଆବହମାନ ହୃଦୟଧର୍ମୀଶ୍ରିତ 'ଓଡ଼ିଆଜାତି' ପ୍ରତି ଏକ ନିଗୂଢ଼ nostalgiaର ରସରୂପ ଫୁଟିଛି ତାଙ୍କ 'ଶର୍ବରୀ', ସ୍ୱପ୍ନାସତ୍ୟ', ନିଷ୍ପତ୍ତି', 'ଇତିହ' ଏମିତିକି ବର୍ତ୍ତମାନର 'କ୍ଷଣକ୍ଷଣକେଆନ'ଆଉ 'ମାୟାବର୍ତ୍ତୀ'ଉପନ୍ୟାସରେ । କାହ୍ନୁଚରଣଙ୍କ ଆବେଦନ ଓଡ଼ିଆ ପାଠକଙ୍କ ନିକଟରେ ଅମୋଘ ଅସ୍ତ୍ରସର । କିନ୍ତୁ ତାଙ୍କ ସହୃଦୟ ଦୃଷ୍ଟିକେବଳ ଏଇ ଜୀବନବୃତ୍ତ ମଧ୍ୟରେ ସୀମିତ ନାହିଁ, ତାଙ୍କ ହୃଦୟବତ୍ତାର ସ୍ନିଗ୍ଧକୋମଳ ରଶ୍ମି ଛଟିକ ପଡ଼ିଛି ମଧ୍ୟବିତ୍ତ ଓଡ଼ିଆ ସମାଜର ବିସ୍ତୃତ କ୍ଷେତ୍ରରେ; ଏକ ଦିଗରେ ସମାଜର ନିଷ୍ଠୁର ପ୍ରହାରରେ ଜର୍ଜରିତ ବିପର୍ଯ୍ୟସ୍ତ ନାରୀଜୀବନର କଥା, 'ଯେଉଁମାନେ କେବଳ ଦେଲେ, ପାଇଲେନି କିଛି' ଅନ୍ୟ ଦିଗରେ ସତୀତ୍ୱ ଓ ନାରୀତ୍ୱର ଦ୍ୱନ୍ଦ୍ୱରେ ବିକ୍ଷତ, ସମାଜଚେତନା ଓ ବ୍ୟକ୍ତି-

Digitized by srujanika@gmail.com

ଚେତନାର ସଂଘାତରେ ବିପନ୍ନ ନାରୀ ହୃଦୟର ଆର୍ତ୍ତି ଓ ଆତ୍ମଜିଜ୍ଞାସା, ବନ୍ଧନ-ଅସହିଷ୍ଣୁତା ଓ ବିଦ୍ରୋହ-ବାସନାର ହୃଦୟସ୍ପର୍ଶୀ କାହାଣୀ ।

ପ୍ରଥମୋକ୍ତ 'କଥା' ଶିଳ୍ପରୂପ ପାଇଛି ଯେଉଁ ସବୁ ଗ୍ରନ୍ଥରେ ଯେମିତି- 'ହାଅନ୍ନ', 'ଶାସ୍ତି' 'ଝଞ୍ଜା', 'ମା', 'ତମସା ତୀରରେ'—ସେ ସବୁର ନାୟିକାଙ୍କ (ଉମା, ଧୋବୀ, କ୍ଷଣପ୍ରଭା, ନଂଛକା, ଅନ୍ନମା) କରୁଣ ଜୀବନକୁ ଘେରି ଯେଉଁ ସାମାଜିକ ପ୍ରେକ୍ଷାପଟ୍ଟ ତାର ନିଷ୍ଠୁର ହୃଦୟହୀନତାର ଜୀବନ୍ତ ମର୍ମସ୍ପର୍ଶୀ ଛବି ବର୍ତ୍ତମାନର ପ୍ରତି ଓଡ଼ିଆ ପାଠକଙ୍କ କୋମଳ ହୃଦୟକୁ ବେଦନାବିହ୍ୱଳ କରି ଗଢ଼ିଛି, ସନ୍ଦେହ ନାହିଁ । ଏଇ ଚରିତ୍ରଗୁଡ଼ିକ ଯେମିତି ଔପନ୍ୟାସିକଙ୍କ ମର୍ମଭେଦୀ ଅଥଚ ମମତାବୋଳା ଲେଖନୀ ସ୍ପର୍ଶରେ ନର୍ତ୍ତନ କରି ନିଜ ଘର ଓ ମନର ଜ୍ୱଳନ୍ତ ନିର୍ମମ ସମସ୍ୟାଗୁଡ଼ିକୁ ଚହଲି ଛନ୍ତି ।, ଏଇଠାରେ ହିଁ କାହ୍ନୁଚରଣ ଆମର ଏକାନ୍ତ ଆପଣାର ହୋଇଯାଇଛନ୍ତି । ବସ୍ତୁତଃ ଯାହା କାହ୍ନୁଚରଣଙ୍କ ପ୍ରିୟତାର ଅନ୍ୟଏକ କାରଣ,—ବଂଚିତ, ବିଡ଼ମ୍ବିତ ନାରୀ ଜୀବନ ପ୍ରତି ତାଙ୍କ ଗାଢ଼ ସମବେଦନା, ଷୋଡ଼ଶୀର ପ୍ରେମାକାଂକ୍ଷା, ସ୍ୱାମୀ ପରିତ୍ୟକ୍ତାର ନିଷିଦ୍ଧ ପ୍ରଣୟ ବାସନାକୁ ଅଗ୍ରାହ୍ୟ କରି ଅଂଧ ନିଷ୍ଠୁର ସମାଜସଂସ୍କାର ସହିତ ନାରୀବ୍ୟକ୍ତିସତ୍ତାର ସଂଘାତ କିମ୍ବା ଆଧୁନିକ ନାରୀ ଜୀବନର ସାର୍ଥକତା ବିଚାରପାଇଁ ସନାତନର ପ୍ରଚଳିତ ମାପକାଠିର ଅର୍ଥହୀନତା-ସରସୀ (ପରକୀୟା) ଗୀତା (ଅଦେଖାହାତ) ତୁଳସୀ (ତୃଣବାଇଦ) ପରି ଚରିତ୍ର ମାଧ୍ୟମରେ ଯେତେବେଳେ ଜୀବନ୍ତ ରୂପ ଲାଭକଲେ, ସେତେବେଳେ କାହ୍ନୁଚରଣଙ୍କ ସମକାଳୀନ ଓଡ଼ିଆ ପାଠକ ମନ ଅନେକଦିନର ରୁଦ୍ଧ ବ୍ୟକ୍ତ ହୃଦୟର ବେଦନା-ଯନ୍ତ୍ରଣା ପ୍ରକାଶର ଉପଯୁକ୍ତ ଆଧାରର ସନ୍ଧାନ ପାଇ ଆବେଗରେ ଉତ୍କୁଳ ହୋଇ ଉଠିଲା ନାହିଁ କି ? ଆହୁରି ମଧ୍ୟ କାହ୍ନୁଚରଣ କେବଳ ନାରୀବ୍ୟକ୍ତି ସତ୍ତାର ଚାଲେଞ୍ଜ ଆଙ୍କି ନାହାଁନ୍ତି, ସେଥିସହିତ ଏଇ ନିର୍ମମ ଯାନ୍ତ୍ରିକ ସମାଜ ବ୍ୟବସ୍ଥା ବିରୁଦ୍ଧରେ ପ୍ରତିବାଦ ଶୁଣାଇଛନ୍ତି ପ୍ରୀତିଦେବୀ (ଅଭିନେତ୍ରୀ) କ୍ଷଣପ୍ରଭା (ଝଞ୍ଜା) ପ୍ରଭୃତିଙ୍କ ମୁହଁରେ । କହିବା ନିଷ୍ପ୍ରୟୋଜନ, ସେଦିନର ସାମାଜିକ ପ୍ରେକ୍ଷାପଟ୍ଟରେ ଓ କାହ୍ନୁଚରଣଙ୍କ ଏଇ ମାନବିକ ପ୍ରତିବାଦରେ ଓଡ଼ିଶାର ଅଗଣିତ ନରନାରୀ ତାଙ୍କ ଜୟଧ୍ୱନିରେ ମୁଖର ହୋଇଥିଲେ । ଏ ସବୁ ମିଶାଇ କୁହାଯାଇ ପାରେ ଯେ ଔପନ୍ୟାସିକଙ୍କ ଐକାନ୍ତିକ ସ୍ନେହସ୍ପର୍ଶରେ ସ୍ନିଗ୍ଧ କୋମଳ ଧରଣର ଗୋଟେ 'ଲିବରାଲ ହ୍ୟୁମାନିଜମ୍'ର ଆବେଦନ ଆଶ୍ଚର୍ଯ୍ୟ ଜନକଭାବେ ଫଳପ୍ରସୂ ହୋଇଛି ।

ଜନପ୍ରିୟତାର କାରଣ ହିସାବରେ ଆଉ ଗୋଟିଏ କଥା ଉଲ୍ଲେଖ କରାଯାଇ ପାରେ, ତାହାହେଲା 'ଶାସ୍ତି' ପ୍ରସଙ୍ଗ । କାହ୍ନୁଚରଣଙ୍କ ବିପୁଳ ଜନପ୍ରିୟତା

Digitized by srujanika@gmail.com

ମୂଳରେ ଏଇ ଗ୍ରନ୍ଥର ଭୂମିକା ବିଶେଷ ଭାବରେ ସ୍ମରଣୀୟ । ସ୍ୱାଧୀନତାକାମୀ ଓଡ଼ିଆ ସମାଜ ବନ୍ଧନରୁ ମୁକ୍ତହୋଇ ନୂତନ ସମାଜ ପରିକଳ୍ପନାରେ ଉଦ୍‌ବୁଦ୍ଧ ହୋଇଛି । ଏ ପରିକଳ୍ପନା 'ଶାନ୍ତି'ରେ ସଫଳ ହୋଇନଥିଲେ ମଧ୍ୟ ନିଶ୍ଚିତ ଭାବରେ ଔପନ୍ୟାସିକଙ୍କର ଏହା ଏକ ପ୍ରଶଂସନୀୟ ପଦକ୍ଷେପ ।

କାହ୍ନୁଚରଣଙ୍କ ଜନପ୍ରିୟତାର ନାନା ସୂକ୍ଷ୍ମ ଓ ଅନ୍ତସ୍ପଷ୍ଟ କାରଣଗୁଡ଼ିକୁ ବ୍ୟାଖ୍ୟା-ବିଶ୍ଳେଷଣ କରିବାକୁ ଗଲେ ଏହାର ଯେଉଁ ଏକାନ୍ତ ସହଜ ଓ ପ୍ରତ୍ୟକ୍ଷ କାରଣଟି ଆମେ ଭୁଲି ନଯାଉ ତାହା ହେଲା ତାଙ୍କ ଗଳ୍ପ କହିବାର ଅନୁପମ ଦକ୍ଷତା ଓ ସହଜ ସ୍ୱଚ୍ଛ ଆବେଗପୂର୍ଣ୍ଣ ଭାଷା । ବସ୍ତୁତଃ କାହ୍ନୁଚରଣଙ୍କ ସମାଜ ଭାବନା କିମ୍ବା ତାଙ୍କ ମନନ-ଚିନ୍ତନ ସମ୍ପର୍କରେ ପାଠକର ମନରେ ଯେତେ ଦ୍ୱିଧା ସଂଶୟ ଥାଉନା କାହିଁକି, ତାଙ୍କର କୌଣସି ଲେଖା ପଢ଼ିବାକୁ ଗଲେ ତାର ଚୁମ୍ବକ ସଦୃଶ ଭାଷା ରେ ଟାଣିହୋଇ ପାଠକ ମାନେହିଁ ସେ ଗଳ୍ପର ମଧୁର ଓ ଅମୋଘ ଇନ୍ଦ୍ରଜାଲରେ ପଡ଼ିରହେ । ଏଥିରେ ତାଙ୍କ ଦକ୍ଷତା ପ୍ରାୟ ଯାଦୁକର ସଦୃଶ ।

ବର୍ତ୍ତମାନ ଆଲୋଚନାର ଆରମ୍ଭରୁ କହିଛି, କାହ୍ନୁଚରଣଙ୍କ ଜନପ୍ରିୟତାର ପ୍ରକୃତ ତାତ୍ପର୍ଯ୍ୟ ନିର୍ଣ୍ଣୟ କରିବାକୁ ଗଲେ ତାକୁ ତାଙ୍କ ସମକାଳ ଓ ତାଙ୍କ ପରବର୍ତ୍ତୀକାଳ-ଏଇ ଦୁଇ ସମୟ ସ୍ତରଠାରୁ ଦେଖିବାକୁ ହେବ । ବର୍ତ୍ତମାନ କାହ୍ନୁଚରଣଙ୍କ ଲେଖନୀସୃଷ୍ଟି ର ନଥିବାରୁ ଏ ସମୟକୁ ମଧ୍ୟ ତାଙ୍କ ସମୟ ଭାବରେ ଗ୍ରହଣ କରାଯିବ, ହେଲେ; ନୂଆ ଔପନ୍ୟାସିକଙ୍କ ବିଭିନ୍ନ ପରୀକ୍ଷାନିରୀକ୍ଷା ମଧ୍ୟରେ କାହ୍ନୁଚରଣଙ୍କୁ ୧୯୭୦ ମସିହାର ପୂର୍ବବର୍ତ୍ତୀ ଔପନ୍ୟାସିକଭାବରେ ଧରାଯାଉ । ଏ ପର୍ଯ୍ୟନ୍ତ ଯେଉଁ ଆଲୋଚନା କରାଗଲା, କହିବା ବାହୁଲ୍ୟ ତାହା କାହ୍ନୁଚରଣଙ୍କ ସମସାମୟିକ ପରିପ୍ରେକ୍ଷୀରେ । ଏ ସମୟରେ କାହ୍ନୁଚରଣ ଜନପ୍ରିୟତାର ଯେଉଁ ଉତ୍ତୁଙ୍ଗ ଶିଖରକୁ ସ୍ପର୍ଶ କରିଥିଲେ ସେ ବିଷୟରେ ସଂଶୟ ବିତର୍କର କୌଣସି ଅବକାଶ ନାହିଁ । ସେ ସମୟର ଯେଉଁମାନେ ଆଜି ମଧ୍ୟ ଜୀବିତ ସେମାନଙ୍କ ସ୍ମୃତିରେ କାହ୍ନୁଚରଣଙ୍କ ଏଇ ଜନପ୍ରିୟତା ଏବେ ମଧ୍ୟ ଅମ୍ଳାନ । କିନ୍ତୁ ପ୍ରଶ୍ନ ଏଇ ଯେ ଆଜିର ଓଡ଼ିଆ ପାଠକ ସମାଜ ନିକଟରେ କାହ୍ନୁଚରଣ କେତେ ଜନପ୍ରିୟ ? ଏ ଶତାବ୍ଦୀର ଉତ୍ତର ଷାଠିଏରେ ଯେଉଁମାନଙ୍କର ଜନ୍ମ, ଯେଉଁମାନଙ୍କର କାହ୍ନୁଚରଣଙ୍କ ପ୍ରତି ଗଭୀର ଶ୍ରଦ୍ଧା ଓ ପ୍ରୀତିର ଆସନ ସେମାନଙ୍କପ୍ରତି କାହ୍ନୁଚରଣଙ୍କ କେଉଁ ପୁସ୍ତକର ପ୍ରାସଙ୍ଗିକତା କେତେ ? ଆଉ ସେଇ ପ୍ରାସଙ୍ଗିକତାର ଆପେକ୍ଷିକ ଅଭାବ କଣ ବର୍ତ୍ତମାନର ତରୁଣ ସମାଜ ନିକଟରେ ତାଙ୍କ ଜନପ୍ରିୟତାର ଔଜଲ୍ୟକୁ ଅନେକ ପରିମାଣରେ ମ୍ଳାନ କରିଦଏ ନାହିଁ ? ବସ୍ତୁତଃ ଷଷ୍ଠଦଶକପରେ ଓଡ଼ିଶାର ସାମାଜିକ, ରାଜନୀତିରେ ଦୁର୍ଯୋଗର ଝଡ଼ ବହିଯାଇଛି—ଦୁର୍ଭିକ୍ଷ,

Digitized by srujanika@gmail.com

ସାଂପ୍ରଦାୟିକ ଦଙ୍ଗା, ଉଦ୍‌ବାସ୍ତୁ ଓ ବେକାରସମସ୍ୟା ଏବଂ ତୀବ୍ର ଅର୍ଥନୈତିକ ଅନିଶ୍ଚୟତା—ସେଇ ଝଡ଼ ମଧ୍ୟରେ ଯେଉଁମାନଙ୍କର ଶୈଶବ-କୈଶୋର କଟିଛି ସେମାନେ ଏବଂ ସେମାନଙ୍କ ଉତ୍ତରକାଳର ଲୋକମାନେ କ୍ରମେ ପୁରୁଣା ଜୀବନର ସାମାଜିକ-ନୈତିକ ମୂଲ୍ୟ ଚେତନାଠାରୁ ବିଚ୍ଛିନ୍ନ ହୋଇପଡ଼ିଛନ୍ତି । ଆଜିକାର ଏଇ କିଛି ପରିମାଣର 'Allianated' ଓ 'angry' ଯୁବ ସମାଜର ଚକ୍ଷୁରେ କାହ୍ନୁଚରଣଙ୍କ ଉପନ୍ୟାସ ଜଗତକୁ ଅନେକଟା ଦୂରଦେଶରେ ଏବଂ ତାର କାହାଣୀ—ବିଧବା ବିବାହ, ଅସବର୍ଣ୍ଣ ବିବାହ, ପ୍ରେମ ବିବାହ କିମ୍ବା ସତୀତ୍ୱ ବନାମ ନାରୀତ୍ୱ ସମସ୍ୟା ସମ୍ପୃକ୍ତକୁ ବିଗତକାଳର ଅନୁକୂଳ ଶିଳ୍ପ ସାମଗ୍ରୀ ବୋଲି କହିବା ଆଦୌ ଅପ୍ରମାଣିତ ନୁହେଁ । ଅର୍ଥାତ୍‌, ଗୋଟିଏ କଥାରେ କହିଲେ କାହ୍ନୁଚରଣଙ୍କ ଉପନ୍ୟାସରେ ସମକାଳ ଓ ବର୍ତ୍ତମାନକାଳର ଏକ ଦୁସ୍ତର କ୍ରମବର୍ଦ୍ଧମାନ ବ୍ୟବଧାନ ଗଢି ଉଠିଛି । ଆଉ ମଧ୍ୟ ଆଜି କିମ୍ବା ଭବିଷ୍ୟତରେ ଯଦି କାହ୍ନୁଚରଣଙ୍କ ଜନପ୍ରିୟତାରେ ଭଟ୍ଟାପଡେ, ତେବେ ତାକୁ କେବଳ ନିଷ୍ଠୁର ସମୟର ଅନିବାର୍ଯ୍ୟ ଅମୋଘ ବିଧାନବୋଲି ସହଜରେ ମାନିନେବାକୁ ହେବ ।



ଭକ୍ତମଧୁ ବିଦ୍ୟାପୀଠ

କାଜିବଜାର, କଟକ-୧

# କହିବାକୁ ଲାଜ

ଜୟନ୍ତ କୁମାର ପଟ୍ଟନାୟକ

କହିବାକୁ ଲାଜ । କହିବା ପାଇଁ ଲାଜ କଥାଟିଏ । ହଁ ସେପରି କିଛି କଥା ହୋଇଥିବ ନା, ନଚେତ୍ କହିବା ପାଇଁ ଲାଜ ଲାଗିବ କାହିଁକି ? ଅପ୍ରୀତିକର, ଅସୌଜନ୍ୟ, ଅସାମାଜିକ, ଅସାଂସ୍କୃତିକ, ଅପ୍ରାସଙ୍ଗିକ, ଶାଳୀନତାହୀନ ସେମିତି କିଛି କଥା ହୋଇଥିବ । କାନକୁ ସେଭଳି ଖରାପ ନ ଶୁଭିଲେ କିମ୍ବା ଆଖିକୁ ସେଭଳି ଅସୁନ୍ଦର ନ ଦିଶିଲେ କିଏ କାହିଁକି ଲାଜ କରିବ ସେ କଥା ମୁଣ୍ଡରେ ଧରିବାକୁ ।

କିନ୍ତୁ·· ନାଁ·· ସେମିତି କିଛି ଲାଜ କଥା ନୁହେଁ । ସେମିତି କିଛି ଖରାପ ବା ଅସାମାଜିକ ବିଷୟବସ୍ତୁ ମଧ୍ୟ ନାହିଁ ସେଥିରେ । ନୁହେଁ ଅସତ୍ୟ, ନୁହେଁ ଅଶିବ, ନୁହେଁ ଅସୁନ୍ଦର । ଆମର ଏଇ ଜଗତନିଆ ଚଳଣିର ସହସ୍ର ସହସ୍ର ଅନେକତନ୍ତ୍ରିକା ମଧ୍ୟରୁ ଧାରେ ଆଲୁଅ ମାତ୍ର । ମୋଟ ଉପରେ କୌଣସି ପ୍ରକାର ଲଜ୍ଜାକର କଥା ନାହିଁ ସେଥିରେ । ନାଁଟି କେବଳ 'କହିବାକୁ ଲାଜ' । ଏକଦା ଗୋଟିଏ ବହି ଆସିଥିଲା । ଜଣେ ବନ୍ଧୁଙ୍କୁ କହିଲି, "ସେ ବହିଟାକୁ ଘରେ ରଖିବ କେମିତି, ଏତେ ବଡ଼ଟେ, ନାଁ । ପୁଣି 'କହିବାକୁ ଲାଜ' । ବହିଟା ଦେଖି ବନ୍ଧୁ ମତ ଦେଲେ ମଲାଟଟିଏ ପକାଇ ଉପରେ ନାଁଟା ଲେଖିଦିଅ । କହିଲି, ଉପରେ ତ ସେଇ କହିବାକୁ ଲାଜ ରହିଲା, ପରିବର୍ତ୍ତନ ହେଲା କଣ ? ସେ କହିଲେ ନାଁଟା ତଳକୁ ଲେଖକର ନାଁଟା ଲେଖିଦେବ ! ଅତଏବ କିଛି ଭାବିବାକୁ ନ ଥିବ । ଲେଖକର ନାଁରେ ସବୁ ଚଳିଯିବ ।

ଏଭଳି ଜଣେ ଲେଖକ, ଯାହାଙ୍କ ନାଁ ଦେଖିଲେ ଭୁଲରେ ବି କେହି ଚିନ୍ତା କରିବ ନାହିଁ ଯେ ସିଏ ଖରାପ କିଛି ଲେଖିପାରନ୍ତି । ସିଏ ହେଲେ ପ୍ରାତଃସ୍ମରଣୀୟ । ପ୍ରଖ୍ୟାତଯଶା ଔପନ୍ୟାସିକ କାହ୍ନୁଚରଣ ମହାନ୍ତି । 'କାହ୍ନୁଚରଣ' ଭାବେ ଓଡ଼ିଶାର ଘରେ ଘରେ ସେ ସୁପରିଚିତ । କାହ୍ନୁଚରଣଙ୍କ ସମ୍ବନ୍ଧେ 'ଓଡ଼ିଆ ସାହିତ୍ୟର ଇତିହାସ'ରେ ଡଃ ବୃନ୍ଦାବନ ଆଚାର୍ଯ୍ୟ ଲେଖିଛନ୍ତି "ଯଥାର୍ଥରେ କାହ୍ନୁଚରଣଙ୍କ ବିନା ଓଡ଼ିଆ ଉପନ୍ୟାସ ଶ୍ରୀମଣ୍ଡିତ ହୋଇପାରି ନଥାନ୍ତା । ଓଡ଼ିଆ ଉପନ୍ୟାସରେ ଏକ

Digitized by srujanika@gmail.com

ବିରାଟ ଶୂନ୍ୟତା ପୂରଣ କରିଛନ୍ତି କାହ୍ନୁଚରଣ ।" ଓଡ଼ିଆ ଉପନ୍ୟାସର କୌଣସି ବିଭାଗ ଉପରେ ଯେ ଲେଖକ ଦୃଷ୍ଟି ନ ଦେଇଛନ୍ତି ଏମିତି ନୁହେଁ । ସାମାଜିକ, ରାଜନୈତିକ ଅର୍ଥନୈତିକ ସଙ୍ଗେ ସଙ୍ଗେ ହାସ୍ୟ ପରିହାସ, ବ୍ୟଙ୍ଗ, ସମାଲୋଚନା, ଚରିତ୍ରଚିତ୍ରଣ, ନାଟକୀୟତା, କଥାବସ୍ତୁ ସବୁଗୁଡ଼ିକ ତାଙ୍କ ଉପନ୍ୟାସର ଛତ୍ରେ ଛତ୍ରେ ପରିସ୍ଫୁଟିତ । ଓଡ଼ିଆ ଘରର ଚାଲିଚଳଣି, ରୀତିନୀତି, ହସକାନ୍ଦ, ଦୁଃଖ ସୁଖ, ସ୍ନେହ ମମତା, ବନ୍ଧନ, ଗର୍ବ ଅହଂକାର, ଅସ୍ମିତା, ଓଡ଼ିଆର ଐତିହ୍ୟ, ନିଜତ୍ୱ, ଗୌରବ, ଓଡ଼ିଆର ଚିନ୍ତା, ରାଜାରାଜୁଡ଼ା ଶାସନଠୁ ଆରମ୍ଭ କରି ଅତ୍ୟାଧୁନିକ ଯୁଗ ପର୍ଯ୍ୟନ୍ତ ପ୍ରତ୍ୟେକଥିରେ ଲେଖକ ଯେପରି ବ୍ୟକ୍ତିଗତ ଏବଂ ଓତଃପ୍ରୋତ ଭାବେ ଜଡ଼ିତ ।

ଦୁର୍ଦ୍ଧର୍ଷ ଓଡ଼ିଆ ସାଧବ ପୁଅର ଗୌରବୋଜ୍ଜ୍ୱଳ ଅତୀତର କଥା ଯେପରି ବର୍ଣ୍ଣନା କରିଛନ୍ତି କାହ୍ନୁଚରଣ 'ବାଲିରାଜା'ରେ; ନଅଙ୍କ ଦୁର୍ଭିକ୍ଷର ଅଳ୍ପକଳ ଚିତ୍ର ଦେଇଛନ୍ତି ସେହିପରି 'ହା-ଅନ୍ନ'ରେ । ଛତ୍ରପୁରରେ ଅବସ୍ଥାନ କାଳରେ ଚିଲିକା ତଥା ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳ ଗୁଡ଼ିକରେ ୧୯୪୨ ମସିହାରେ ହୋଇଥିବା ବନ୍ୟାର ଭୟାବହ କାହାଣୀ—ପରିଣତି ସଙ୍ଗେ ତତ୍କାଳୀନ ଉତ୍କଳୀୟ ନୌବାଣିଜ୍ୟର ଏକ ପ୍ରଧାନ କେନ୍ଦ୍ର ପାଲୁର ବନ୍ଦର ବିଷୟ ଉଲ୍ଲେଖ କରିଛନ୍ତି 'ଇତିହ' ଉପନ୍ୟାସରେ । ଦଣ୍ଡକାରଣ୍ୟ ପୁନର୍ବସତି ଯୋଜନାରେ ଅବସ୍ଥାନ କାଳରେ ଦରିଦ୍ର ବାସହୀନ ରିଫ୍ୟୁଜି ପରିବାରର ଦୁଃଖ ଦୈନ୍ୟ ବର୍ଣ୍ଣନା କରି ପାଠକ ଚକ୍ଷୁରୁ ଲୁହ ଯେପରି ନିଗାଡ଼ି ପାରିଛନ୍ତି "ଚମ୍ପା ଫୁଟରେ"ରେ, "ଏପାରି ସେପାରି"ରେ ସେପରି ଦୁଃଖୀ, ନିରାଶ୍ରୀ ପେଟ ସପକ୍ଷରେ ସମସ୍ତଙ୍କର ସମବେଦନା ଆଦାୟ କରି ପାରିଛନ୍ତି । ଗୋଟିଏ କେନ୍ଦ୍ରର ଦୁଇ ପାଖରେ ଏକ ସରଳରେଖାରେ ଅବସ୍ଥାନ କରୁଥିବା ଦୁଇଟି ବିନ୍ଦୁ ଯେ କେବେ ମିଶି ପାରନ୍ତିନି, ଯଦିବା ମିଶନ୍ତି ସେମିତି ବିଶେଷ ପରିସ୍ଥିତିରେ ସେକଥା ଲେଖକ ଦର୍ଶାଇଛନ୍ତି ରାଷ୍ଟ୍ରପତି ପୁରସ୍କାରପ୍ରାପ୍ତ ଓଡ଼ିଆ ଚଳଚ୍ଚିତ୍ର-ଉପନ୍ୟାସ 'କା'ରେ । ଗାଁ ଗଣ୍ଡାରେ ଧନୀ ଜମିଦାର ସାହୁକାର-ମାନଙ୍କ ଅତ୍ୟାଚାର, ଶୋଷଣ ବିରୁଦ୍ଧରେ ତୀବ୍ର ସ୍ୱର ଉତ୍ତୋଳନ କରିଛନ୍ତି ଲେଖକ 'ଶାସ୍ତି'ର ସନେଇ ମୁହଁରେ । ପୁରପଲ୍ଲୀର ସାଧାରଣ ଜନତାର ମାନୋନ୍ନତି ନିମନ୍ତେ ଶିକ୍ଷିତ ଯୁବକ ଯୁବତୀଙ୍କ ଅନ୍ତର୍ନିହିତ ଶକ୍ତିର ସୁବିନିଯୋଗ ପାଇଁ ମାର୍ଗ ନିର୍ଦ୍ଦେଶ କରିଛନ୍ତି 'ଝଞ୍ଜା' ଏବଂ 'ବଜ୍ରବାହୁ' ଉପନ୍ୟାସରେ । ଅତି ନିମ୍ନର ମଜୁରିଆ, ହଳିଆଙ୍କୁ ଯେପରି ଚିହ୍ନିଛନ୍ତି ଲେଖକ, ଅତି ବଡ଼ଲୋକ, ସହରୀ ବାବୁ, ବ୍ୟବସାୟୀ, ରାଜନୀତିଆମାନଙ୍କର ମର୍ମପରଦା ସେପରି ଖୋଲି ଦେଇଛନ୍ତି, ସ୍ୱରୂପ ଉଦ୍‌ଘାଟନ କରିଛନ୍ତି କାହ୍ନୁଚରଣ । ଯଥାର୍ଥରେ ଓଡ଼ିଆ ଉପନ୍ୟାସର ଏ ବିରାଟ ମହାସାଗରକୁ ଦେଖିଲେ ଭକ୍ତିରେ ମୁଣ୍ଡ ନଇଁ ଆସେ । ବାଲିଗରଡ଼ା ବି ନୁହେଁ,

Digitized by srujanika@gmail.com

ପାଠକ ଝୁଡ଼ାଝୁଡ଼ି ବାଲିରେଣୁ ଏ ବିଶାଳ ସାଗର ତଟରେ । ଲେଖକଙ୍କର ଅନ୍ୟତମ ଶ୍ରେଷ୍ଠ କୃତି "କହିବାକୁ କିଛି" ସମ୍ବନ୍ଧରେ ଆଲୋଚନା କରାଯାଉ ।

## କଥାବସ୍ତୁ—

ହଷ୍ଟେଲରେ ରହି ପାଠ ପଢ଼ିବାର ସାମର୍ଥ୍ୟ ନ ଥିବାରୁ ଗରିବ ମାମୁଁଙ୍କ ପରିବାରରେ ରହି କଷ୍ଟରେ ପାଠ ପଢ଼େ ଦୁଃସ୍ଥ ବାଳକ ବିକ୍ରମ । ଅତି ଛୋଟ ଦିନୁ, ଏପରିକି ଗୁହ-ମୂତ ଦିନୁ ମାମୁଁ ପୁଅ ଝିଅ, ଭାଇଭଉଣୀମାନଙ୍କୁ ନିଜ ହାତରେ ଲାଳନ ପାଳନ କରେ ବିକ୍ରମ, ମା'ଙ୍କର ଅତି ଆଦରର 'ବିକି' । ବ୍ୟବସାୟିକ ପଶାଖେଳର ଗୋଟିକୁ ଚତୁରତାର ସହିତ ଚଳାଇ ମାମୁଁ ଆନନ୍ଦ ବଡ଼ଲୋକ ହୁଅନ୍ତି । କିଛିଟା ନିଜର ଅଧ୍ୟବସାୟ ଏବଂ କିଛିଟା ନେଇ ଆଣି ଯୋଗ ପାଣିବାର ବିଦ୍ୟା ବଳରେ ସାମାନ୍ୟ ବ୍ୟବସାୟୀ ଗୁମାସ୍ତାରୁ ଉନ୍ନତିର ଚରମ ସୋପାନରେ ପହଞ୍ଚନ୍ତି ଆନନ୍ଦ । ଏ ଉନ୍ନତିର ପ୍ରତି ସୋପାନରେ ବିକିର ସାହାଯ୍ୟର ପଦଚିହ୍ନ ଯେ ଅତି ସୁସ୍ପଷ୍ଟ ସେକଥା ଭୁଲିଯାଆନ୍ତି କୃତଘ୍ନ ମାମୁଁ ମାଇଁ । କିନ୍ତୁ ନିଜ ପରିବାର ପ୍ରତି ଏ ଅତୁଳନୀୟ ଦାନର ପ୍ରତିଦାନ ଦେବାକୁ ଭୁଲେ ନାହିଁ ଆନନ୍ଦଙ୍କର ଜ୍ୟେଷ୍ଠା କନ୍ୟା ଅନୁ-ଅନୁପା । ପିଲାଟି ଦିନରୁ ବିକି ଭାଇ ପାଖେ ଗପ ଶୁଣି, ଅନ୍ୟଙ୍କର ରାଜାପୁଅ (ବିକିଭାଇ)ର ପକ୍ଷୀରାଜଘୋଡ଼ାରେ ରାଜକୁମାରୀ ହୋଇ କପିର ଏକ ସ୍ୱତଃସ୍ଫୂର୍ତ୍ତ ଭଲ ପାଇବା ସୃଷ୍ଟି ହୁଏ ଅନୁର ବିକିଭାଇ ପ୍ରତି । ସେଇ ସ୍ନେହ, ମମତା ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ପରିଣତ ହୁଏ ଅନୁରାଗ ଏବଂ ପ୍ରେମରେ ଓ ପରିଶେଷରେ ପ୍ରଣୟ ଏବଂ ପରିଣୟରେ । ଦିନେ ପିଠି ନ ଲୁଚୁଥିବା ବସ୍ତ୍ରଧାରୀ ଅଧୁନା ଅତ୍ୟାଧୁନିକ ଫେସନର ଚଳନ୍ତିପ୍ରତିମା ମାତା ଇନ୍ଦିରା ଅଳ୍ପଅଳୀ ଜ୍ୟେଷ୍ଠା କନ୍ୟା ଅନୁପାଇଁ ଠିକ୍ କରନ୍ତି ଧନୀ ମାନ୍ୟଗଣ୍ୟ ଉଚ୍ଚ ହାକିମଙ୍କ ମଦ୍ୟପ, ଚରିତ୍ରହୀନ ପୁତ୍ର ସନ୍ତୋଷକୁ । ସନ୍ତୋଷ ଚରିତ୍ରହୀନ ଏ କଥାର ପ୍ରମାଣ ସଂଗ୍ରହ କରିଥିଲି ଅନୁ ତଥା ସେ ପ୍ରତ୍ୟକ୍ଷଦ୍ରଷ୍ଟା । ବିବାହ ପ୍ରସ୍ତାବ ଆସିବାରେ ସେ ପ୍ରତ୍ୟାଖ୍ୟାନ କରେ ଉଚିତର ପଥର ଦୁହାଇ ଦେଇ ।

ନିଜ ପିତାଙ୍କ ଦ୍ୱାରା ପ୍ରାୟତଃ କନ୍ୟା-ଉଲୁପୀର ପିତାଙ୍କ ନିକଟରେ ବିକ୍ରୀ ହୋଇଯାଇଥିବା ବିକ୍ରମ କନ୍ୟା-ପିତାଙ୍କୁ ଟଙ୍କା ଫେରାଇ ଦେବା ଦ୍ୱାରା ନିଜର ବିବାହ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରିଦେଇଛୁ ଉଚିତର ସ୍ୱକୀୟର ସନ୍ଧାନ ଛଳରେ । ସ୍ୱା' ପରେ ଦୁଇ ପରିବାରରେ ନିଜ ନିଜର ପୁତ୍ର କନ୍ୟାଙ୍କ ଉପରେ ସନ୍ଦେହର ସୂତ୍ରପାତ ହୁଏ । ମାତ୍ର ବିକି-ଅନୁର ପ୍ରେମରେ କୌଣସି ପ୍ରକାର ଅବିଳତା ନ ଥିଲା ।

Digitized by srujanika@gmail.com

ପରନ୍ତୁ ତାହା ଥିଲା ପ୍ରାଣ ତଥା ଆତ୍ମା ନିକଟରେ ଆତ୍ମାର ମିଳନ ଉକ୍ତି ସ୍ନିଗ୍ଧ,
ପବିତ୍ର, ଶାଶ୍ୱତ ତଥା ଚିର ଜାଜ୍ୱଲ୍ୟମାନ, ଦିବାଲୋକ ପରି ସ୍ପଷ୍ଟ ।
ପରିଶେଷରେ ଯାତ୍ରା ହେବାର ହେଲା । କନିଷ୍ଠା ଝିଅର ବାହାଘର, ନିଜ ବାହାଘର
ଢଙ୍ଗରେ ନିଜର ସବୁ ସାଜସଜା ଦେଇ କରିଦେଇ ବିକର ନିର୍ଦ୍ଦେଶରେ ଅନୁ
ଚାଲିଯାଇଛି । ଏ ମଧ୍ୟରେ ବିକ ଦମ୍ପତି ହୋଇସାରିଥିଲେ ମଧ୍ୟ ମାମୁଁ ମାଇଁଙ୍କର
କୁ ନଜରରେ । ବାସ, ଗ୍ରାସ ତଥା ଯାବତୀୟ ସୁବିଧା ସୁଯୋଗର କେନ୍ଦ୍ରସ୍ଥଳୀ,
କଳିଙ୍ଗ ହୋଟେଲରେ ଅନୁଷ୍ଠିତ ହୋଇଛି ଶ୍ରୀମାନ ବିଜୟକେଶରୀ ଏବଂ
କୁମାରୀ ଅନୁପମାର ଶୁଭ ପରିଣୟ । ଶାଶ୍ୱତ ପ୍ରେମର, ସତ୍ୟର ବିଜୟ ହୋଇଛି ।
ବହୁପୂର୍ବରୁ ଶ୍ରୀମନ୍ଦିରରେ ଜଗତର ନାଥ ଚକାଆଖିଆଙ୍କ ସମ୍ମୁଖରେ ଆତ୍ମାର ମିଳନ
ହୋଇ ସାରିଥିଲା । ବିବାହ ନ ହୋଇପାରିବାର ଆଶଙ୍କା ଯୋଗୁ ବିଳମ୍ବରେ
ସମ୍ବାଦପ୍ରାପ୍ତ ବିଜୟର ପିତା ବୀରକେଶରୀ ଅଭ୍ରଷାନରେ ପୁତ୍ର ଓ ପୁତ୍ରବଧୂକୁ ଦୂରରୁ
ଆଶୀର୍ବାଦ ଦେଇ ଚାଲିଯାଇଛନ୍ତି ।

ଆଜିକାଲିର ବ୍ୟବସାୟ ବାଣିଜ୍ୟ ତଥା ସ୍ୱାର୍ଥନୀତି କପଟ ଏକବାର ଅସତ୍ୟ
ଉପରେ ପର୍ଯ୍ୟବସିତ ସେକଥା ଦର୍ଶାଇବାକୁ ଯାଇ ଲେଖକ ଲେଖିଛନ୍ତି, 'କୁଆଡ଼େ
ବ୍ୟବସାୟ ବାଣିଜ୍ୟ ସତ୍ୟ ଡଙ୍ଗା ପରି, ସତ୍ୟ ହୁଡ଼ିଲେ ସେ ଡଙ୍ଗା ମଝି ନଈରେ
ବୁଡ଼େ । ··· ସତ୍ୟଯୁଗ କେତେ ପଛରେ ପଡ଼ିଲାଣି । ମିଛରେ ଦୁନିଆ ଏବେ
ଚାଲିଛି । ମିଛ କହି ପାଣିରେ ସରୁପକାଇ ସମସ୍ତେ ନିଜ ନିଜ କାମ କରିଯାଉଛନ୍ତି ।
ନୈତିକତାକୁ ବଳି ଦେବାପରେ ଯାଇ ସେଥାନେ ବ୍ୟବସାୟ ଆରମ୍ଭ କରନ୍ତି ।
ବଢ଼ିଆର କୋଉ ଶିରରେ ପାଣି ପଶେ ସେମାନେ ଜାଣିଥାନ୍ତି । ଝୋକଣିଆଲ ତା
ଗାତରେ ବହୁତ ମୁହଁ ରହିଥାଏ । ଗୋଟିଏ ପାଖରୁ ବିପଦର ସୂଚନା ପାଇଲେ
ସୁବିଧା ବାଟରେ ଖସି ପଳାଏ । ଉନ୍ନତିର ସୋପାନରେ ଚଢ଼ିବା ନିମନ୍ତେ ଆବଦ
ବା ସେଥିରୁ ବାଦଯାଉନ୍ତି କପଟ । ବ୍ୟବସାୟର ଶ୍ରୀବୃଦ୍ଧି ନିମନ୍ତେ କେଉଣ୍ଡି ଗୁଣ୍ଡି
ବାଳିଆ ଧରିବା ଉଦ୍ଦେଶ୍ୟରେ ନିଜର କନ୍ୟା ଏବଂ ପତ୍ନୀଙ୍କୁ ମଧ୍ୟ ଯାବତ ସ୍ୱାନ
କାର୍ଯ୍ୟରେ ନିଯୁକ୍ତ କରିବା ନିମନ୍ତେ ପଛାଇ ନାହାନ୍ତି । ଆଧୁନିକତାର
ଘୋଡ଼ାଦୌଡ଼ରେ ପ୍ରତିଯୋଗୀ ହୋଇ କୁଳବଧୂ ଛଦ୍ମ ଔଷଧ ନାମରେ ମଦ୍ୟପାନ
କରିଛନ୍ତି । ଅନୁ କିନ୍ତୁ ଏ ସବୁକୁ ସହ୍ୟ କରିପାରିନି ।

ଆଜିକାର ଦୁର୍ନୀତି ପରିପୂର୍ଣ୍ଣ ଯୁଗରେ କେବଳ ସ୍ୱୀୟ ବିଦ୍ୟା ବୁଦ୍ଧି ବଳରେ
ଚାକିରି ପ୍ରତିଯୋଗୀତାରେ ପାରିଉଠିପାରିନି ବିଜୟ । ତା ପଛରେ ଥିବା ପ୍ରତିଯୋଗୀ
ମାନେ ଆଗେଇ ଯାଇଛନ୍ତି । ଏ ସମ୍ବନ୍ଧେ ବିଜୟ ମୁହଁରେ ଲେଖକ କହିଛନ୍ତି "ଯୁଗକୁ

Digitized by srujanika@gmail.com

ନିନ୍ଦିବା ଛଡ଼ା ଆଉ କାହାକୁ ସେ ନିନ୍ଦି ପାରିବ ? ଚଳନ୍ତି ଠାକୁର ମାନଙ୍କର ପୂଜା କରିବା ବୁଦ୍ଧିମାନ, ଉନ୍ନତକାମୀମାନଙ୍କର କର୍ତ୍ତବ୍ୟ । ସେମାନେ ହେଲେ ଦେବତା । ବୋଇଲେ ଆଗ ଦେ ପଛେ ବତା…ଦାରିଦ୍ର୍ୟ ଓ ଅସହାୟତା ମଣିଷର ଅଧର୍ମକାରି ମୁଣ୍ଡି ନୁଆଁଏ । ଅଳ୍ପ ତାରି ବିଦ୍ୟା, ବୁଦ୍ଧି, ଦକ୍ଷତା ଓ ସାହସର ଗୋଡ଼ରେ ବେଡ଼ି ପିନ୍ଧାଏ ।"

ଆଧୁନିକ ଗ୍ରାମ୍ୟ ଜୀବନ କିପରି କଦର୍ଯ୍ୟ ରାଜନୀତି ଦ୍ୱାରା କଳୁଷିତ, ତାର ଏକ କରୁଣ ଚିତ୍ର ଦେବାକୁ ଯାଇ ଲେଖିଛନ୍ତି, "ଜଘନ୍ୟ ରାଜନୀତି ରାକ୍ଷସ କେବଳ ସହରକୁ ନୁହେଁ, ମୋଫସଲକୁ ମଧ୍ୟ ଗ୍ରାସ କରିଛି । ଆଗେ ବେଲ ଡେଣରେ ବଦଳୁ ଥିଲା, ଏବେ ସହଳ ସହଳ ବଦଳୁଛି । …ସେମାନେ ଜନତାକୁ ସ୍ୱପ୍ନରେ ଆଶା ଦେଇ ଦେଇ ନିଜ ପାଇଁ ଖାସା ଉପାୟ କରିନେଲେ ।

ନେଇ ଆଣି ଥୋଇ ପାରିବାର ବିଦ୍ୟା ମାଲୁମ ନ ଥିଲେ ଦୁର୍ନୀତି କିପରି କଷ୍ଟସାଧ୍ୟ ସେ କଥା କହିବାକୁ ଯାଇ କାହ୍ନୁଚରଣ ଲେଖିଛନ୍ତି, ଏ ଦୁନିଆରେ ଯିଏ ନିଜେ ନାଟ କରି ନ ଜାଣେ ସେ ଅନ୍ୟମାନଙ୍କୁ ନଚାଇବ କିପରି ? ଲୋକଙ୍କୁ ନ ନଚାଇଲେ ପଇସା ଝଡ଼ିବ କିପରି ?

ବଡ଼ ହାକିମଙ୍କ ଚରିତ୍ରହୀନ ପୁତ୍ର ସତ୍ତ୍ୱେ ଯୋଗ୍ୟତା ନ ଥାଇ ମଧ୍ୟ ଅଗ୍ରି ଡିପୋଟି ହେବା ନେଇ ଲେଖକ ଲେଖିଛନ୍ତି, "ସମସ୍ତେ ଆକାଶରେ ଗୁଡ଼ି ଉଡ଼ାଇଥାନ୍ତି । ଯାହାର ସୂତା ଯେତିକି ଲମ୍ବ, ତା ଗୁଡ଼ି ସେତେ ଉଚ୍ଚକୁ ଉଠେ ।

ଗାଁରେ ଏପଟ ସେପଟ କରି ଝିଅଲୀ କାଢ଼ିଏ, ଶାଗ କେରାଏ, ବାଇଗଣ ପୁଞ୍ଜାଏ ଆଣିଥିବା ପିତା ବୀରକେଶରୀ ଓ ପୁତ୍ର ବନମ୍ବରର ମତଭେଦ ନେଇ ଲେଖିଛନ୍ତି, "ପୂର୍ବ ପଶ୍ଚିମର ଭେଟ ନ ହେଲା ପରି ସେକାଳିଆ ବୁଢ଼ା ଓ ଏକାଳିଆ ଟୋକାଙ୍କର ଚିନ୍ତାଧାରାର ଭେଟ ହେବନାହିଁ ।"

ଚରିତ୍ରକୁ ନିର୍ମଳ ନିଷ୍କଳଙ୍କ ରଖିବାକୁ ଲେଖକ ଉପଦେଶ ଦେଇଛନ୍ତି, "ନାରୀ ଜନମର ଯେତିକି ସୌରଭ, ଯେତିକି ଗୌରବ, ସ୍ନେହ ସୋହାଗର ଯେତିକି ମହକ, ସେତିକି କୁହୁକ । ଖଣ୍ଡାଧାର ଉପରେ ସାବଧାନ ହୋଇ ନ ଚାଲିଲେ ଗୋଡ଼ର ଗୋଛ କଟିଯିବ । ସମସ୍ତେ ଠାଉରିଆ, ମୁହଁରେ ମହୁ, ପେଟରେ ବିଷ । …କଳଙ୍କ ନାଆଁ ଦୂରରୁ ସୁନ୍ଦର ଦିଶେ, ନାଆଁରେ ଅଦ୍ଭୁତ ଦେବାକୁ ବି ଅଳକ୍ଷଣାଙ୍କର ଅଭାବ ନାହିଁ ।

Digitized by srujanika@gmail.com

ଅଳ୍ପୁଆଁ ଦେଲ୍ ଯାହାକୁ ଆମେ ଅଜସ୍ର ଦୂରରେ ରଖିଛେ ସେଇମାନଙ୍କ ଭିତରୁ ନେତା ଭଳି ଗୋଟିଏ ପିଲା ବାହାରି, ବହୁତ ପାଠପଢ଼ି ବଡ ଚାକିରି କରିବାର ଦୃଷ୍ଟାନ୍ତ ବଢ଼ିଲା କ୍ଷେତ୍ରର ପୁଅ ଦେବଲା ।

ଅପରାର୍ଥି, ମାଇଚଥା ନାଟ୍ୟ ଅ ଶିବ ତଥା ଏମ୍. ଏଲ ଏ, ଶିବଚରଣଙ୍କର ସଫଳ ବ୍ୟବସାୟ ତଥା ନେତାର ଭୂମିକା ହାସ୍ୟରସ ପାଇଁ ଏକ ଅନବଦ୍ୟ ସୃଷ୍ଟି ।

ସର୍ବଧର୍ମର ସମନ୍ୱୟର ମୂର୍ତ୍ତିମନ୍ତ ଅବତାର, କଳିଙ୍ଗ ହୋଟେଲର ମାଲିକ ନିଗୁଣା ବାବୁ, ଜୀବନର ବିଭିନ୍ନ ପରିସ୍ଥିତରେ କେତେ କାହାକୁ ସିଏ ଯେ ସାହାଯ୍ୟ ନ କରିଛନ୍ତି ଏପର ନୁହେଁ । ଖାଲି ବ୍ୟବସାୟୀ ନୁହଁ, ଜଣେ ହଠା ମଣିଷରୂପେ ନିଗୁଣା ବାବୁ ବନ୍ଧମର ବାହାଘରରେ ଅନୁପା' ଗଳାରେ ହାରଟିଏ ଉପହାର ଦେଇ କହୁଛନ୍ତି, "ଜୀବନରେ ସୁଖୀ ହୁଅ ରେ ପିଲାଦୁହେଁ । ପିତ ମାତାଙ୍କ ଦୋଷ ଧରବ ନାହିଁ । ପ୍ରତିଦାନରେ ମୁଁ ବନ୍ଧମକୁ ଉତ୍ତମ ଚରିତ୍ରବାନ ଅଫିସର ଚାହେ ଁ ।"

ଅବଶ୍ୟ ବୀରକେଶରୀ କଟ୍ଟର ଧୂର୍ତ୍ତ, ଫନ୍ଦିବାଜ । କିନ୍ତୁ ଦୁଃଖିନୀ ଜନନୀ ଯେତେ କଷ୍ଟରେ ଏକୋଇରବଳା ବନ୍ଧମକୁ ମଣିଷ କରିଛନ୍ତି, ଭଲ ପାଇବାର ସୂତ୍ରାପାଠରେ ପଡ଼ି ବନ୍ଧମ ତାର ପ୍ରତିଦାନ ଠିକ୍ ରୂପେ ଦେଇ ପାରିଥିବାଭଳି ମନେ ହୁଏ ନାହିଁ । ଉପନ୍ୟାସର ଏ ଦିଗଟା ଟିକେ ଦୁର୍ବଳ ଜଣାପଡ଼େ ।

ମୁଖ୍ୟ ନାୟିକା ଅନୁର ଚରିତ୍ର ଯେ ଆଦର୍ଶସ୍ଥ ନୀୟ, ଅନୁକରଣୀୟ ଏଥିରେ ବିନ୍ଦୁମାତ୍ର ସନ୍ଦେହ ନାହିଁ । ଅନୁଜା ପ୍ରତି ସ୍ନେହ ମମତା ସଙ୍ଗେ ସଂଗେ ପ୍ରତି ମୁହୂର୍ତ୍ତରେ ନୀରୁର ଚରିତ୍ରପ୍ରତି ଆଶୁ ବିପଦ ନମନ୍ତେ ସତର୍କ କ ଇ ଦେଇଛି । ଧନ ସମ୍ପତ୍ତି ପ୍ରତି ପିତାଙ୍କର ଅନ୍ଧ ଆସକ୍ତ ମାତାଙ୍କର ଆଧୁନିକତାର ମରୀଚିକା ପଛରେ ଦୌଡ଼ ତଥା ଠାକୁର ଘରେ ମଧ୍ୟ ଭଣ୍ଡାମୀର ନୀରବ ପ୍ରତିବାଦ କରିଛି ଅନୁ ଦୈନନ୍ଦିନ କାର୍ଯ୍ୟାବଳୀରେ । ସବୋପରି ନିଜର ଐଶ୍ୱର୍ଯ୍ୟର ମୂଳଦୁଆ ବଜ ଭାଇକୁ ପ୍ରେମ କରିବା ସଂଗେ ସଂଗେ ସାହାଯ୍ୟ କରିବାକୁ ମଧ୍ୟ ପଛେଇ ଯାଇନ ।

ଶେଷରେ ସେମାନଙ୍କର ଅତ୍ୟାବଶ୍ୟକ ମୁହୂର୍ତ୍ତରେ ଗୀତା ବହିରୁ ବନ୍ଧମ ଆବିଷ୍କାର କରିଛି ଟଙ୍କା ସହିତ ଏକ ଲିପି । "ଦାନ ନୁହେଁ ପାଉଣାର ଜାଣିଶୁଏ ବ ନୁହେଁ । କେଉଁଠୁ ଆସିଲ, କପର ଆସିଲ, କିଏ ଦେଲ ଏ ସବୁ ପ୍ରଶ୍ନ ଅବାନ୍ତର । କୌଣସି ସର୍ତ୍ତ ନାହିଁ । ତମର କାମରେ ଲାଗୁ । ପ୍ରାପ୍ତି ସ୍ୱୀକ ର ଅନାବଶ୍ୟକ ।"

Digitized by srujanika@gmail.com

